





# ଉତ୍ସବ - ସ୍ୱାଧୀନତା ସାମ୍ବତ୍ସରିକ

ରାଜକିଶୋର ମିଶ୍ର

**ରା**ଜତନ୍ତ୍ର - ବିଦେଶୀ ଶାସନ ତନ୍ତ୍ର - ଗଣତନ୍ତ୍ରର ପରିବ୍ୟାପ୍ତ ବ୍ୟୂହ ଭିତରେ ସାଗର ବେଷ୍ଟିତ ତଥା ଉତ୍ତର ସୀମାଦ୍ରି ସୁରକ୍ଷିତ ଭାରତବର୍ଷ, ଅପୌରୁଷେୟ ବେଦର ଉତ୍ପତ୍ତି କାଳରୁ ଏପର୍ଯ୍ୟନ୍ତ ଭୂପୃଷ୍ଠରେ ନିଜର ସ୍ଥିତି ଜାହିର କରିଆସିଛି । ବିଭାଜକ ଭୌଗୋଳିକ ସୀମାରେଖାଗୁଡ଼ିକ କେତେବେଳେ ଅପେକ୍ଷାକୃତ ସଂକୁଚିତ ହୋଇଯାଇଛି ତ କେତେବେଳେ ଅଯଥା ବିକୃତ ହୋଇଯାଇଛି । ଏଇ ଆମର ଭାରତ ଯେଉଁଠି ଅଜସ୍ର ନଦନଦୀ ପାହାଡ଼ ପର୍ବତ, ବୃକ୍ଷ, ଗୁଳ୍ମରାଜି ଆପେ ଆପେ ଦେବତା ପାଲଟି ଯାଇଥିଲେ କାହିଁ କେଉଁ ଅସ୍ପଷ୍ଟ ଅତୀତରେ । ପରେ ଲୋକେ ଗଢ଼ିଲେ ମନ୍ଦିର-ମସଜିଦ୍-ଚର୍ଚ୍ଚ-ତୀର୍ଥ-ପୁଷ୍କରିଣୀ-ସାଗର ସବୁ ନିଜର ପାର୍ଥିବ ସାମର୍ଥ୍ୟ ଏବଂ ଧାର୍ମିକ ବିଶ୍ୱସ୍ତତା ଅହମିକାରେ ଏବଂ ସେଗୁଡ଼ିକର ସ୍ଥିତି ସ୍ଥାପକତା, ବିକାଶ ଓ ପ୍ରଚାର-ପ୍ରସାର ପାଇଁ ସେମାନେ ଜନମାନସରେ ବିଶ୍ୱାସର ହୁରିଖେଳ ଖେଳିଲେ । ପୂର୍ବ ସାଗର, ଭାରତ ମହାସାଗର ଓ ଆରବ ସାଗରର ତ୍ରିବେଣୀ ଧାରରୁ ଉତ୍ତରରେ ହିମାଦ୍ରି ପର୍ଯ୍ୟନ୍ତ ଏବଂ ସେଇଭଳି ପଶ୍ଚିମରୁ ପୂର୍ବ ଦିଗ୍‌ବଳୟ ପର୍ଯ୍ୟନ୍ତ ଧାର୍ମିକ ନିରୀହ ଜନତା ଶତାବ୍ଦୀ ଶତାବ୍ଦୀ ଧରି ପଦବ୍ରଜରେ ବା କୃତ୍ରିମ ଯାନରେ ଗତିଶୀଳ ହେଲେ, ମାପି ଚାଲିଲେ ଆସ୍ଥା ଓ ବିଶ୍ୱାସର ତୁଙ୍ଗିମାକୁ ଓ ଥାପି ଚାଲିଲେ ସୌହାର୍ଦ୍ଦ୍ୟର ସେତୁକୁ । ଏସବୁ, ସମୟର କାନଭାସ୍ ଉପରେ ରଙ୍ଗବେରଙ୍ଗରେ ଉକୁଟି ଉଠିଛି ଯାହାକୁ ଆମେ ଭାରତର ସାଂସ୍କୃତିକ ଇତିହାସର ସାଙ୍କେତିକ ଆଲେଖ୍ୟ ଭାବରେ ଗ୍ରହଣ କରିଛେ ।

ଭାରତବାସୀ ଅତିଷ୍ଠ ହୋଇପଡ଼ିଲେ ରାଜତନ୍ତ୍ର ଓ ବିଦେଶୀତନ୍ତ୍ରର ଶୋଷଣ ଜାଲରେ । ସେମାନେ ମାନସିକ ଶୃଙ୍ଖଳରୁ ମୁକ୍ତ ହେବାକୁ ଚାହିଁଲେ । ଏହି ଚାହିଁବା ପଣିଆଟା କାଁ ଭାଁ ମୁଣ୍ଡଟେକି ଥିଲେ ବି ଏହା କ୍ରମଶଃ ପ୍ରସାରିତ ହେଲା । ଏପରିକି ଏହା ସମଗ୍ର ଭାରତବର୍ଷକୁ ବ୍ୟାପିଗଲା । ଭାବନାର ସମୁଦ୍ର ଉଚ୍ଛୁଳି ଉଠିଲା । ଫଳରେ ଭାରତ ଭୂଇଁରୁ ବିଦେଶୀମାନେ ହଟିଗଲେ ଦୂରକୁ ଦୂରକୁ ।

ଏହି ଅପସରି ଯିବା କାହାଣୀ ମାତ୍ର ଛପନ-ସତାବନ ବର୍ଷର । ଆମେ ହେଲୁ ସ୍ୱାଧୀନ, ଦେଶ ହେଲା ସ୍ୱାଧୀନ, ଭାରତବର୍ଷର ପାଣି, ପବନ, ଆକାଶ, ନଦନଦୀ, ପାହାଡ଼-ପର୍ବତ, ଦାରିଦ୍ର୍ୟ, ବୁଭୁକ୍ଷା, ଅସୂୟା, ଆଳସ୍ୟ, ପୀଡ଼ନ, ଆସ୍ପର୍ଦ୍ଧା, ଔଦ୍ଧତ୍ୟ, ବିଭ୍ରାନ୍ତି ଓ ବ୍ୟଭିଚାର ସବୁକିଛି ବି ଆସ୍ତେ ଆସ୍ତେ ସ୍ୱାଧୀନ ହୋଇଉଠିଲେ । ଗୋଟିକ ପରେ ଗୋଟିଏ ଶୃଙ୍ଖଳ ଅପସରିଗଲା ।

ଅବଶ୍ୟ ଏଇ ସତାବନ ବର୍ଷର ଭାରତର ଦେହରେ ମୁକ୍ତି ସଂଗ୍ରାମର ଆଉ ସେଇ ଉଷ୍ମ ରକ୍ତର ଚିହ୍ନବର୍ଣ୍ଣ ନାହିଁ, ଯେଉଁ ରକ୍ତ ଦିନେ ଲାଲ ଗୋଲାପ ହୋଇ ଭାରତସାରା ଫୁଟି ଉଠିଥିଲା ସ୍ୱାଧୀନତା ସଂଗ୍ରାମର ରଣ ହିଲ୍ଲୋଳରେ । ଏହି ଉତ୍ତର - ସ୍ୱାଧୀନତାର ଛ-ଦଶନ୍ଧିରେ ଆମେ ଅନେକ ଦିଗନ୍ତକୁ ସ୍ପର୍ଶ କରିଛୁ । ଭୌତିକ ବୈଭବରେ, ବୈଜ୍ଞାନିକ ଉଦ୍ଭାବନରେ, ରାଜନୈତିକ ଆଦର୍ଶରେ, ପ୍ରକୃତିକୁ ଲୋକାଭିମୁଖୀ କରିବାରେ ଓ ବାଗ୍‌ବିଳାସରେ ଆମେ ଆଶାତୀତ ପ୍ରଗତି ହାସଲ କରିଛୁ । ଆଗଭଳି ଆମେ ଆଉ ପାଶ୍ଚାତ୍ୟ ସଭ୍ୟତାକୁ ଆଦର୍ଶ କରୁ ନାହୁଁ, ବରଂ ଆମ ତଥାକଥିତ ଆଦର୍ଶ ଓ ଅପସଂସ୍କୃତିର ବିଷଜ୍ୱାଳା ଅନ୍ୟମାନଙ୍କୁ ବୋଧହୁଏ ଆକୃଷ୍ଟ କରିବାକୁ ବସିଲାଣି ।

ପ୍ରାକ୍ ସ୍ୱାଧୀନତା ଯୁଗରେ ଯେଭଳି ସତ୍ୟାଗ୍ରହ, ଅନଶନ, ଗଣଧାରଣା ହୋ-ହଲ୍ଲା ସଂଘଟିତ ହେଉଥିଲା, ଏବେ ବି ବ୍ୟକ୍ତିଗତ ତଥା ଗୋଷ୍ଠୀଗତ ସ୍ୱାର୍ଥସାଧନ ପାଇଁ ଅନୁରୂପ ସଂଗଠନମାନ ମୁଣ୍ଡଟେକି ଉଠିଲାଣି । ଗଣତନ୍ତ୍ରର ଉଚ୍ଚ ଆଦର୍ଶକୁ ଗୋଷ୍ଠିଭୁକ୍ତ ବ୍ୟକ୍ତି ବିଶେଷର ଘୁଣପୋକ ଅହରହ ଦଂଶନ କରି ଚାଲିଛି । 'ବର୍ଷାଣାଂ ଭାରତଃବର୍ଷଃ' ଏବଂ 'ଦେଶାନାଂ ଉତ୍କଳଃ ସ୍ମୃତଃ' - ଏହି ପାରମ୍ପରିକ ଐଶ୍ୱର୍ଯ୍ୟ ଏବେ ଏକ ଶାବ୍ଦିକ ପ୍ରତିଧ୍ୱନି ମାତ୍ର । ଆନ୍ତର୍ଜାତିକ ସ୍ଥିତାବସ୍ଥା ମଧ୍ୟ ଏଭଳି ବିବର୍ତ୍ତିତ ।

ଗଣତନ୍ତ୍ରର ମୁଖ୍ୟ ବିଭବ ହେଉଛି ସମ୍ବାଦ ପରିବେଷଣ ଓ ଗଣମାଧ୍ୟମ ସଂସ୍ଥା ଯାହା ଜାଗ୍ରତ ପ୍ରହରୀ ଭଳି କାର୍ଯ୍ୟ କରିବା କଥା । ଏହି ଦାୟିତ୍ୱବୋଧର ଉପଯୁକ୍ତ ରୂପାୟନ ହୋଇପାରିଲେ, ଦେଶର

ମହତ୍ତ୍ୱ ଓ ଜନସାଧାରଣଙ୍କର ଉତ୍କ୍ରମଣ ସମ୍ଭବ ହୋଇପାରନ୍ତା । ସ୍ୱାଧୀନ ଭାରତରେ ନାରୀ ନିର୍ଯ୍ୟାତନା, ଆତ୍ମହତ୍ୟା ଓ ବିତ୍ତ ଲୁଣ୍ଠନର କାହାଣୀ ବୋଧହୁଏ ପରାଧୀନ ଭାରତର ସମଗ୍ରୀକୃତ ଯନ୍ତ୍ରଣାଠାରୁ ଅଧିକ ଭୀତିପ୍ରଦ ।

ଯୁବ ସମାଜ ଏକ ସାମୂହିକ ବିଭ୍ରାନ୍ତି ଭିତରେ ଗତି କରୁଛି । ବୟୋବୃଦ୍ଧ ବ୍ୟକ୍ତିମାନେ ପାରିବାରିକ ତଥା ସାମାଜିକ ମୂଲ୍ୟବୋଧର ବିବର୍ତ୍ତନରେ ଅତିଷ୍ଠ । ଏସବୁର ସମାଧାନ ସୁସ୍ଥ ଚିନ୍ତନରେ ହିଁ ସମ୍ଭବ । ପ୍ରବହମାନ ଓ କ୍ରମ ପରିବର୍ତ୍ତିତ ସଂସ୍କୃତିର ଅଭିଭାବକତ୍ୱ ବୟସ୍କ ବ୍ୟକ୍ତିମାନଙ୍କଠାରୁ ଖସି ଆସି ତାରୁଣ୍ୟର ପ୍ରବାହରେ ମିଶି ଯାଇ ବର୍ତ୍ତମାନ ଏକପ୍ରକାର ବିଚିତ୍ର ବିଲୋଳ ସଂସ୍କୃତିରେ ପ୍ରଦୂଷିତ ହେବାକୁ ବସିଲାଣି ।

ଗଣତନ୍ତ୍ରର ମଙ୍ଗୁଆଳ ଆମେ, ଜନସାଧାରଣ । ଲୋକେ ସ୍ୱାଧୀନ ଚିନ୍ତନକୁ ଦେବତା ଭଳି ଗ୍ରହଣ କରିବା ଉଚିତ । ମଠ ମନ୍ଦିର ନେଇ କନ୍ଦଳ ନକରି ନିଜେ କ'ଣ କରିବା ଉଚିତ, ସେ ବିଷୟରେ ନିଜ ସହିତ ତର୍କବିତର୍କ କଲେ ସୁସ୍ଥ ଚିନ୍ତା ଉଦ୍ରେକ ହେବ । ଏଭଳି ଚିନ୍ତନ ପାଇଁ ନିରାମୟ ଜୀବନଚର୍ଯ୍ୟା ଆବଶ୍ୟକ । ଜନସାଧାରଣଙ୍କର ପ୍ରତିନିଧିଗଣ ତ ଦେଶ ଓ ଜନତାର ସେବାପାଇଁ ସଂକଳ୍ପବଦ୍ଧ । ଗୋଟିଏ ଲକ୍ଷ୍ୟ ଓ ଆଦର୍ଶରେ ଅନୁପ୍ରାଣିତ ହୋଇଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ପୁଣି ଏତେ ବିଭିନ୍ନତା କାହିଁକି ? ବୋଧହୁଏ ଏହି ଆଦର୍ଶବୋଧରେ ଦୁର୍ବଳ ମାନସିକତା ଅନୁପ୍ରବେଶ କରି ଏହାକୁ ଜଟିଳ କରି ଦେଉଛି ।

ପ୍ରତିବର୍ଷ ଆମେ ସ୍ୱାଧୀନତା - ଉତ୍ସବ ପାଳନ କରୁଛୁ । ସଂକଳ୍ପିତ ଆଦର୍ଶକୁ ଦୋହରାଉଛୁ । ଉଚ୍ଚାରଣ ଓ ବ୍ୟଂଜିତ ଅର୍ଥ (ବାଗର୍ଥ) ଯଦି ପରସ୍ପର ପୂରକ ନହୁଏ ଏବଂ ସବୁକିଛି ଉତ୍ସବାୟିତ ହୋଇପଡ଼େ, ତେବେ ଆମ ସଂକଳ୍ପଗୁଡ଼ିକ କ୍ରମଶଃ ଦୁର୍ବଳ ଓ ଧୂସର ହୋଇପଡ଼ିବ ଓ ଆଦର୍ଶବାଦର ମୋହର ଧୀରେ ଧୀରେ ନିଷ୍ପ୍ରଭ ଦେଖାଯିବ ।

ମନକୁ ଟାଣ କରି, ନିର୍ଭୀକ କରି, ସଦ୍‌ର ଆଲୋକରେ ଆଲୋକିତ କରି, ପୂର୍ବଜମାନଙ୍କର ସ୍ମୃତି ସୁରଭିରେ ସୁରଭିତ କରି - ଜନତା ଜନାର୍ଦ୍ଦନଙ୍କର ମୁକ୍ତ ମନ୍ଦିରରେ ମାନବବାଦର ନିରାଜନା କଲେ, ଆମେ ବୋଧହୁଏ ଅପସୃତ ଐତିହ୍ୟ ସହିତ ସାଂପ୍ରତିକତା ଓ ଉଜ୍ଜ୍ୱଳ ଭବିଷ୍ୟକୁ ଯୋଡ଼ି, ଦେଶର, ଜାତିର ତଥା ଏହାର ଗଣ୍ଡି ଭିତରେ ରହି ଆତ୍ମ ପରିଚିତି ହରାଉଥିବା କୋଟି କୋଟି ମୂକ, ଅମୃତର ସନ୍ତାନମାନଙ୍କୁ ଆମ ଯାତ୍ରାପଥରେ ସାମିଲ କରିପାରିବା । ତା'ନହେଲେ ଦେଶର ଉଭା-ପୋତା-ଉଡ଼ାର ଅନାବିଷ୍କୃତ ପ୍ରାଚୁର୍ଯ୍ୟର ମଥା ଉପରେ ପାଦ ଥାପି ଆମେ ମହାଶୂନ୍ୟକୁ ହାତଟେକି କିଭଳି 'ଦୟାର ପାତ୍ର, ହେବୁ ସେଇଭଳି ଊର୍ଦ୍ଧ୍ୱବାହୁ ମୁଦ୍ରାରେ ପରସ୍ପର ସହିତ ସଂଗ୍ରାମ-ଅଭିନୟ କରୁଥିବା । ପ୍ରଭୁ କରନ୍ତୁ ଆଜି ଏହି ପବିତ୍ର ସ୍ୱାଧୀନତା ଦିବସ ପାଳନ ଅବସରରେ ସେଇ ମହାଶୂନ୍ୟଟିରେ ଭରି ଉଠୁ ମୈତ୍ରୀ ସଂହତି, ସୌହାର୍ଦ୍ଦ୍ୟ ଓ ମାନବାଦର ବର୍ଷଣୋନ୍ମୁଖ ଘନ ବାଦଲ ଓ ସେଠୁ ଝରିବାକୁ ଥିବା ଅସରନ୍ତି ବାରି-ବିଭୂତିକୁ ଆମନ୍ତ୍ରଣ କରୁ ଏ ଜାତିର ସ୍ୱର୍ଦ୍ଧିତ ତ୍ରିରଙ୍ଗା ।

ସମ୍ପାଦକ
ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର

---

## ବିଦେଶରୁ ଆମଦାନୀ ହେଉଥିବା ତୈଳଜାତ ଦ୍ରବ୍ୟ ଉପରେ ସତର୍କ ରହିବାକୁ ସରକାରଙ୍କ ପରାମର୍ଶ

ଗୁଜୁରାଟର ମୁନ୍ଦ୍ରା ଓ କାଣ୍ଡଲା ବନ୍ଦର ଦେଇ ବିଦେଶରୁ ପ୍ରାୟ ୧୩,୪୬୭.୬୧୨ ମେଟ୍ରିକ୍ ଟନ୍ ପରିମାଣର ଏକ ପ୍ରକାର ପେଟ୍ରୋଲିୟମ୍‌ଜାତ ତୈଳ କୌଣସି କଂପାନୀ ତରଫରୁ ଆମଦାନୀ କରାଯାଇଛି, ଯାହାର ବୈଷୟିକ ଗୁଣାତ୍ମକମାନ ବା ବ୍ୟବହାର ଉପଯୋଗୀ ସମ୍ବନ୍ଧରେ କୌଣସି ତଥ୍ୟ କେନ୍ଦ୍ର ସରକାରଙ୍କ ହସ୍ତଗତ ହୋଇ ନାହିଁ ଏବଂ ଏହା ଉପରେ ଅନୁସନ୍ଧାନ ଜାରି ରହିଛି ବୋଲି ରାଜ୍ୟ ଖାଦ୍ୟ ଯୋଗାଣ ଓ ଖାଉଟି କଲ୍ୟାଣ ବିଭାଗ ପ୍ରମୁଖ ଶାସନ ସଚିବ ଶ୍ରୀ ତରୁଣକାନ୍ତି ମିଶ୍ର ଜଣାଇଛନ୍ତି । ମିଳିଥିବା ଖବର ଅନୁଯାୟୀ ଉକ୍ତ ତେଲ କଣ୍ଡେନସେଟ୍ ଓ ସଲଭେଣ୍ଟ ତେଲ ନାଁରେ ଦେଶ ତଥା ଓଡ଼ିଶାର ବିଭିନ୍ନ ସ୍ଥାନରେ ପ୍ରବେଶ କରି ଟ୍ୟାଙ୍କରମାନଙ୍କରେ ପରିବହନ ହୋଇ ପେଟ୍ରୋଲ୍ ପମ୍ପମାନଙ୍କରେ ଅପମିଶ୍ରିତ ହେବାର ସମ୍ଭାବନା ରହିଛି ।

ସମସ୍ତ ଜିଲ୍ଲାର ଜିଲ୍ଲାପାଳ ଓ ଏସ୍.ପି.ମାନଙ୍କୁ ସତର୍କ ରହି ଏହା ଉପରେ କାର୍ଯ୍ୟାନୁଷ୍ଠାନ ନିମନ୍ତେ ବିଭାଗ ପକ୍ଷରୁ ନିର୍ଦ୍ଦେଶ ଦିଆଯାଇଛି । ଯାନବାହନରେ ଇନ୍ଧନ ପକାଇବା ସମୟରେ ଏଥିପ୍ରତି ସଜାଗ ଦୃଷ୍ଟି ଦେବା ସହିତ କୌଣସି ସନ୍ଦେହ ବା ଅଭିଯୋଗ ଥିଲେ, ତୁରନ୍ତ ସରକାରଙ୍କ ଦୃଷ୍ଟିକୁ ଆଣିବାକୁ ପ୍ରମୁଖ ଶାସନ ସଚିବ ଜନସାଧାରଣଙ୍କୁ ଅନୁରୋଧ କରିଛନ୍ତି ।

# ମୁକ୍ତି ସଂଗ୍ରାମରେ ଓଡ଼ିଶା (୧୯୨୨-୩୦)

ସୋମା ଚାନ୍ଦ

ଭାରତର ମୁକ୍ତି ସଂଗ୍ରାମର ଇତିହାସକୁ ଆମେ ବିଭିନ୍ନ ଅଧ୍ୟାୟ ମଧ୍ୟଦେଇ ଗ୍ରହଣ କରିଥାଉ । ୧୮୮୫ ମସିହାରେ ଭାରତୀୟ ଜାତୀୟ କଂଗ୍ରେସର ସୃଷ୍ଟି ପରଠାରୁ ଦେଶର ସ୍ୱାଧୀନତା ସଂଗ୍ରାମ ଏକ ନିର୍ଦ୍ଦିଷ୍ଟ କର୍ମସୂଚୀ ମାଧ୍ୟମରେ ନିଜର ଲକ୍ଷ୍ୟପଥରେ ଆଗେଇ ଚାଲିଥିଲା । ୧୯୧୯ ମସିହାରେ ମହାତ୍ମା ଗାନ୍ଧୀଙ୍କ ଉପସ୍ଥିତି ସଂଗ୍ରାମକୁ ଏକ ଭିନ୍ନ ରୂପରେଖ ଦେଇଥିଲା । ତେଣୁ ୧୯୧୯ ମସିହାଠାରୁ ସ୍ୱାଧୀନତା ପ୍ରାପ୍ତି ପର୍ଯ୍ୟନ୍ତ ସମୟକୁ ସାଧାରଣ ଭାବରେ ଗାନ୍ଧୀଯୁଗ ନାମରେ ଅଭିହିତ କରାଯାଏ ।



ଗାନ୍ଧୀଯୁଗର ବୈଶିଷ୍ଟ୍ୟ ଥିଲା ଅହିଂସା ଓ ଅସହଯୋଗ ମାଧ୍ୟମରେ ବ୍ରିଟିଶ ଶାସନର ବିରୁଦ୍ଧାଚରଣ କରିବା । ଗାନ୍ଧୀଙ୍କ ନିଜ ଭାଷାରେ ତାଙ୍କର ଦୁଇଟି ନାସ୍ତିବାଚକ ଅସ୍ତ୍ରରୁ (ଅହିଂସା ଓ ଅସହଯୋଗ) ନିଶ୍ଚୟ ଆସ୍ତିବାଚକ ଫଳପ୍ରାପ୍ତି ଅର୍ଥାତ୍ ସ୍ୱାଧୀନତା ହାସଲ ହୋଇପାରିବ । ତେଣୁ ତାଙ୍କର ପ୍ରଥମ ପ୍ରଚେଷ୍ଟାକୁ ସେ ଅସହଯୋଗ ଆନ୍ଦୋଳନ ମଧ୍ୟଦେଇ ପରୀକ୍ଷା କରିବାକୁ ଚାହିଁଲେ । ୧୯୨୦ ମସିହାରେ ଅସହଯୋଗ ଆନ୍ଦୋଳନର ଉତ୍ପତ୍ତି ପାଇଁ ପୃଷ୍ଠଭୂମି ଯାହା ଥାଉନା କାହିଁକି, ଏହି ଆନ୍ଦୋଳନରେ ଅହିଂସା ଓ ଅସହଯୋଗକୁ ମୁଖ୍ୟ ଆୟୁଧ ହିସାବରେ ଗ୍ରହଣ କରାଯାଇଥିଲା ।

ଆନ୍ଦୋଳନ ପୂର୍ଣ୍ଣମାତ୍ରାରେ ସଫଳତାର ସହ ଆଗେଇ ଚାଲିଥିଲା ବେଳେ ୧୯୨୨ ମସିହା ଫେବୃଆରୀ ୨୨ ତାରିଖ ଦିନ ଉତ୍ତର ପ୍ରଦେଶର ଗୋରଖପୁର ଜିଲ୍ଲା ଚୌରୀଚୌରାଠାରେ ଉତ୍ତ୍ୟକ୍ତ ଜନତା ଗୋଟିଏ ଥାନାରେ ଅଗ୍ନି ସଂଯୋଗ କରି ୨୦ ଜଣ ପୋଲିସ କର୍ମଚାରୀଙ୍କୁ ଜୀବନ୍ତ ଦଗ୍ଧ କରିଥିଲେ । ଅହିଂସା ମାର୍ଗରେ ଆନ୍ଦୋଳନ ଗତି କରୁଥିବା ବେଳେ ଅଚାନକ ହିଂସାର ବହିଃପ୍ରକାଶ ଗାନ୍ଧିଜୀଙ୍କୁ ବ୍ୟଥିତ କରିଥିଲା । ତେଣୁ ସେ ଆନ୍ଦୋଳନକୁ ହଠାତ୍ ସ୍ଥଗିତ ରଖି ଭାରତୀୟମାନଙ୍କୁ ଅହିଂସା ମାର୍ଗରେ ପରିଚାଳିତ ହେବା ପାଇଁ ନିବେଦନ କରିଥିଲେ ।

ଗାନ୍ଧିଜୀଙ୍କର ଏପ୍ରକାରର ଏକତରଫା ନିଷ୍ପତ୍ତିରେ କତିପୟ କଂଗ୍ରେସ ନେତା ଅତ୍ୟନ୍ତ ବୀତସ୍ପୃହ ହୋଇ ଗାନ୍ଧୀଙ୍କୁ ସମାଲୋଚନା ମଧ୍ୟ କରିଥିଲେ । ୧୯୨୨ ମସିହା ମାର୍ଚ୍ଚ ଚାରି ତାରିଖ ଦିନ ଗାନ୍ଧିଜୀ ବନ୍ଦୀ ହେଲେ ଓ ଛଅ ବର୍ଷ ପାଇଁ ସଶ୍ରମ କାରାଦଣ୍ଡର ଆଦେଶ ପାଇଥିଲେ ।

ଗାନ୍ଧୀଙ୍କ ଅନୁପସ୍ଥିତିରେ କଂଗ୍ରେସ ଆହୁଲାହୀନ ନୌକା ପରି ମଝି ଦରିଆରେ ଭାସିବାକୁ ଲାଗିଲା । ଘରର ମୁଖିଆଙ୍କ ଅନୁପସ୍ଥିତିରେ ଘର ଯେମିତି ଅସଜଡ଼ା ପଡ଼ି ରହେ ଏମନ୍ତ ଅବସ୍ଥା ।

ଅସହଯୋଗ ଆନ୍ଦୋଳନର ଅଚାନକ ସ୍ଥଗିତାବସ୍ଥା ହେତୁ ଅନେକ ଅସନ୍ତୁଷ୍ଟ କଂଗ୍ରେସ ନେତା (ବିଠଲଭାଇ ପଟେଲ, ଚିତ୍ତରଞ୍ଜନ ଦାସ ପ୍ରମୁଖ) କଂଗ୍ରେସରେ ରହି ଭିନ୍ନ କର୍ମପନ୍ଥାରେ ଚାଲିବାକୁ ଆରମ୍ଭ କଲେ । ଏହି ପୃଷ୍ଠଭୂମିରେ କଂଗ୍ରେସରେ ଦୁଇଟି ଦଳର ସୃଷ୍ଟି ହୋଇଥିଲା ।

୧୯୨୨ ମସିହା ଡିସେମ୍ବର ମାସରେ ଭାରତୀୟ ଜାତୀୟ କଂଗ୍ରେସର ଗୟା ଅଧିବେଶନରେ ତୁମୁଳ ହଟ୍ଟଗୋଳ ମଧ୍ୟରେ ଦୁଇଟି ଦଳ ନିଜର ଆଭିମୁଖ୍ୟ ଉପସ୍ଥାପିତ କରିଥିଲେ । ଚିତ୍ତରଞ୍ଜନ ଦାସ, ମୋତିଲାଲ ନେହେରୁଙ୍କୁ ଯେଉଁମାନେ ନେତା ହିସାବରେ ଗ୍ରହଣ କଲେ, ସେମାନେ ନିଜକୁ ପରିବର୍ତ୍ତନବାଦୀ ବୋଲାଇଲେ । ଅନ୍ୟ ସଦସ୍ୟମାନେ ଗାନ୍ଧୀଙ୍କ ଆଦର୍ଶ ଅନୁସାରେ ରଚନାତ୍ମକ କାର୍ଯ୍ୟରେ ନିଜକୁ ନିୟୋଜିତ ରଖି ଅପରିବର୍ତ୍ତନବାଦୀ ବା ସ୍ଥାଣୁବାଦୀ ହିସାବରେ ପରିଚିତ ହେଲେ । ଏହି ଦଳ ସୂତାକଟା, ଖଦୀବୁଣା ଆଦି ବିଭିନ୍ନ କାର୍ଯ୍ୟରେ ନିଜକୁ ସଂପୃକ୍ତ ରଖିଥିବାରୁ ଏହା କଂଗ୍ରେସ ଚରଖାଦଳ ହିସାବରେ ନାମିତ ହେଲା ଓ ଅପରଟି କଂଗ୍ରେସ ସ୍ୱରାଜ ଦଳର ଖ୍ୟାତିଲାଭ କଲା ।

ଜାତୀୟ ରାଜନୀତିର ଏହି ପ୍ରଭାବ ଓଡ଼ିଶାର ପ୍ରାଦେଶିକ ରାଜନୀତିରେ ମଧ୍ଯ ଅନୁଭୂତ ହେଲା । ପରିବର୍ତ୍ତନବାଦୀମାନେ ୧୯୨୩ ମସିହା ନିର୍ବାଚନରେ ପ୍ରତିଦ୍ୱନ୍ଦିତା କରି ମ୍ୟୁନିସିପାଲଟି, ଜିଲ୍ଲାବୋର୍ଡ଼, ବିଧାନସଭା, ବିଧାନ ପରିଷଦ ଇତ୍ୟାଦିର ସଭ୍ୟ ହୋଇ ସରକାରଙ୍କ ସହ ଲଢ଼ିବାକୁ ଆଗେଇ ଆସିଲେ । ଓଡ଼ିଶାରେ ମଧ୍ୟ ଏହି ବର୍ଷ ବିହାର-ଓଡ଼ିଶା ବିଧାନ ପରିଷଦକୁ ଗୋଦାବରୀଶ ମିଶ୍ର, ଜଗବନ୍ଧୁ ସିଂହ ଓ ରାଧାରଞ୍ଜନ ନିର୍ବାଚିତ ହୋଇଥିବାବେଳେ କେନ୍ଦ୍ରୀୟ ବିଧାନସଭାକୁ ନୀଳକଣ୍ଠ ଦାସ ନିର୍ବାଚିତ ହୋଇଥିଲେ । ଅପରିବର୍ତ୍ତନବାଦୀଙ୍କ ମଧ୍ୟରେ ଥିଲେ ହରେକୃଷ୍ଣ ମହତାବ ଓ ଗୋପବନ୍ଧୁ ଦାସ ।

ଏହି ବର୍ଷ ଅର୍ଥାତ୍ ୧୯୨୩ ମସିହାରେ ଓଡ଼ିଶାର ତାତ୍ତ୍ୱିକ ଜଗତରେ ଏକ ସମ୍ବାଦପତ୍ରର ଜନ୍ମ ହୋଇଥିଲା ଓ ପରବର୍ତ୍ତୀ ସମୟରେ ଏହି ସମ୍ବାଦପତ୍ର ଜନମାନସକୁ ବେଶ ପ୍ରଭାବିତ କରିଥିଲା । ସଚ୍ଚା ଗାନ୍ଧୀବାଦୀ ମହତାବ ବହୁଦିନରୁ କଂଗ୍ରେସର ବାର୍ତ୍ତା ଓ ନୀତିକୁ ସାଧାରଣ ଜନତାଙ୍କ ମଧ୍ୟରେ ପରିଚିତ କରାଇବା ପାଇଁ ଗୋଟିଏ ସମ୍ବାଦପତ୍ରର ଆବଶ୍ୟକତା ଅନୁଭବ କରିଥିଲେ । ତେଣୁ ୧୯୨୩ ମସିହା ଅକ୍ଟୋବର ୨ ତାରିଖ ଗାନ୍ଧୀ ଜୟନ୍ତୀରେ କଟକର ମୁକୁର ପ୍ରେସ୍‌ରୁ ଜନ୍ମ ନେଇଥିଲା ତାଙ୍କର ମାନସ ସନ୍ତାନ 'ସାପ୍ତାହିକ ପ୍ରଜାତନ୍ତ୍ର' । ଏହାର ମୁଦ୍ରାକର ଓ ପ୍ରକାଶକ ଥିଲେ ବୀରକିଶୋର ଦାସ । କିନ୍ତୁ ପୋଲିସର ସଜାଗ ଦୃଷ୍ଟିରୁ ରକ୍ଷା ପାଇବା ପାଇଁ ଛଅ ସପ୍ତାହ ପରେ ମହତାବ ସମ୍ବାଦପତ୍ରଟିକୁ ବାଲେଶ୍ୱରକୁ ସ୍ଥାନାନ୍ତରିତ କଲେ ଓ ସେଠାକାର ଟାଉନ ପ୍ରେସ୍‌ରେ ଏହା ଛପା ହେଲା । ଗାନ୍ଧୀ ଆଦର୍ଶ ଓ କଂଗ୍ରେସ ଦର୍ଶନ ଜନସାଧାରଣଙ୍କ ମଧ୍ୟରେ ପ୍ରଚାର କରିବା ଥିଲା ଏହାର ମୁଖ୍ୟ ଉଦ୍ଦେଶ୍ୟ ।



ଅବଶ୍ୟ ଏହା ପୂର୍ବରୁ ବାଲେଶ୍ୱର କଂଗ୍ରେସ କର୍ମୀମାନେ 'ସ୍ୱରାଜ୍ୟ - ସମାଚାର' ନାମକ ଏକ ସାପ୍ତାହିକ ପତ୍ରିକାକୁ ଲିଥୋରେ ଛପାଇ ବାଣ୍ଟୁଥିଲେ । କିନ୍ତୁ ପ୍ରଜାତନ୍ତ୍ର ପରି ଏହା ଏତେ ଜନପ୍ରିୟ ନଥିଲା । ଏହି ଅବସ୍ଥା ୧୯୩୦ ମସିହା ପର୍ଯ୍ୟନ୍ତ ଚାଲିଲା ।

ଏହି ସମୟରେ ସମାଜର ପ୍ରତିଷ୍ଠାତା ପଣ୍ଡିତ ଗୋପବନ୍ଧୁ ଓଡ଼ିଆ ଜାତିକୁ ଜାତୀୟତାର ଆବେଗରେ ଉତ୍ସାହିତ କରିବା ପାଇଁ 'ବନ୍ଦୀର ଆତ୍ମକଥା' ପ୍ରକାଶ କରିଥିଲେ । ସେଥିରେ ସେ କାଳଜୟୀ ରଚନା ସୃଷ୍ଟି କରି ଲୋକଙ୍କ ଅନ୍ତରାତ୍ମାରେ ଜାଗରଣ ଆଣିଥିଲେ । ଉଦାହରଣ ସ୍ୱରୂପ -

ମୋ ଭାଇଭଉଣୀ ହେ ଉତ୍କଳବାସୀ
ସ୍ୱରାଜ୍ୟ-ସାଧନେ ନହୁଅ ଉଦାସୀ,
ଯେ ଦୀକ୍ଷାରେ ଥରେ କରିଛ ବିଶ୍ୱାସ
ନ ଛାଡ଼ ତାହା ଥିବା ଯାଏଁଟି ନିଃଶ୍ୱାସ ।

x x x x

କାତରତା ସିନା କାପୁରୁଷ ପଣ
ବୀର ମାରେ ଅବା ମରେ କରି ରଣ,
ପଛ ଘୁଞ୍ଚା ନାହିଁ ବୀରର ଜାତକେ
ନ ମରେ ସେ କେବେ ପରାଣ ଆତଙ୍କେ ।

୧୯୨୪ ମସିହା ଜୁନ୍ ୨୮ ଓ ୨୯ ତାରିଖରେ ନିଖିଳ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ପ୍ରଥମ ଅଧିବେଶନ କଟକରେ ଅନୁଷ୍ଠିତ ହୋଇଥିଲା । ଏଥିରେ ପୌରହିତ୍ୟ କରିଥିଲେ ବଙ୍ଗଳାର ଲବ୍‌ଧ ପ୍ରତିଷ୍ଠିତ କଂଗ୍ରେସ ନେତା ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ର ରାୟ । ଓଡ଼ିଶାର ଅନ୍ୟତମ ବରିଷ୍ଠ ନେତା ତଥା ଉତ୍କଳ ସମ୍ମିଳନୀର ପୁରୋଧା ମଧୁସୂଦନ ଦାସ ମଧ୍ୟ ଏହି ଅଧିବେଶନରେ ଯୋଗଦାନ କରିଥିଲେ । ସେହି ସମୟରେ ସରକାରଙ୍କ ସହ ବିରୋଧ ହେବାରୁ ମଧୁବାବୁ ମନ୍ତ୍ରୀପଦରୁ ଇସ୍ତଫା ଦେଇ ସ୍ୱତନ୍ତ୍ର ଉତ୍କଳ ଗଠନରେ ବ୍ୟସ୍ତ ରହୁଥିଲେ । ଏହି ଅଧିବେଶନରେ ସଭାପତି ପ୍ରଫୁଲ୍ଲଚନ୍ଦ୍ର ରାୟ ଓଡ଼ିଶାର ଅନ୍ୟତମ ବରପୁତ୍ର ଗୋପବନ୍ଧୁ ଦାସଙ୍କୁ 'ଉତ୍କଳମଣି' ଉପାଧିରେ ଭୂଷିତ କରିଥିଲେ । କଂଗ୍ରେସର ରଚନାତ୍ମକ କାର୍ଯ୍ୟସୂଚୀକୁ ଜନପ୍ରିୟ କରାଇବା ଓ କଂଗ୍ରେସର ବାର୍ତ୍ତାକୁ ପ୍ରଦେଶର କୋଣ ଅନୁକୋଣରେ ପହଞ୍ଚାଇବା ଏହି ଅଧିବେଶନର ଲକ୍ଷ୍ୟ ଥିଲା । ଅଧିକନ୍ତୁ କନିକାର ପ୍ରଜା ଅତ୍ୟାଚାର ଓ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ସମ୍ମିଶ୍ରଣ ପାଇଁ ଅନେକଗୁଡ଼ିଏ ପ୍ରସ୍ତାବ ଏହି ଅଧିବେଶନରେ ଗୃହୀତ ହୋଇଥିଲା ।

୧୯୨୪ ମସିହା ଜୁନ୍ ୩୦ ତାରିଖରେ ବ୍ରହ୍ମପୁର ସ୍ୱରାଜ ଆଶ୍ରମରେ ନିଖିଳ ଓଡ଼ିଶା ମହିଳା ସମ୍ମିଳନୀର ଅଧିବେଶନ ଆହୂତ ହୋଇଥିଲା । ଏଥିରେ ପ୍ରଫୁଲ୍ଲଚନ୍ଦ୍ର ରାୟ ପୌରହିତ୍ୟ କରିଥିଲେ । ଏହି ସମ୍ମିଳନୀର ନେତୃତ୍ୱ ନେଇଥିଲେ ରାସମଣୀ ଦେବୀ ଓ ସ୍ୱର୍ଣ୍ଣଲତା ଦେବୀ । ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ପ୍ରାୟ ୬୦୦ ମହିଳା ଏଥିରେ ଯୋଗଦେଇ ସ୍ୱାଧୀନତା ସଂଗ୍ରାମକୁ ଅଧିକ ତୀବ୍ର କରିବା ପାଇଁ ନିର୍ଦ୍ଦିଷ୍ଟ ଭୂମିକା ପାଳନର ଶପଥ ନେଇଥିଲେ ।

୧୯୨୫ ମସିହା ଅଗଷ୍ଟ ମାସରେ ମଧୁବାବୁଙ୍କର ଆମନ୍ତ୍ରଣକ୍ରମେ ଗାନ୍ଧିଜୀ ଦ୍ୱିତୀୟ ଥର ପାଇଁ ଓଡ଼ିଶା ଆସିଥିଲେ । ଏଥରର ଉପଲକ୍ଷ୍ୟ ଥିଲା - ଉତ୍କଳ ଟେନେରୀ ପରିଦର୍ଶନ କରିବା । ଓଡ଼ିଆ ଜାତିକୁ ସ୍ୱୟଂ ସମ୍ପୂର୍ଣ୍ଣ କରିବା ଉଦ୍ଦେଶ୍ୟରେ ମଧୁବାବୁ କଟକରେ ଉତ୍କଳ ଟେନେରୀ ପ୍ରତିଷ୍ଠା କରିଥିଲେ । ତାଙ୍କର ଇଚ୍ଛାଥିଲା ଆମ ରାଜ୍ୟର ତିଆରି ଜୋତା ଆମ ଲୋକମାନେ ବ୍ୟବହାର କରିବେ କିନ୍ତୁ କ୍ରମେ ଟେନେରୀର ଆର୍ଥିକ ଅବସ୍ଥା ଶୋଚନୀୟ ହୋଇପଡ଼ିଲା । ଗାନ୍ଧୀଙ୍କ ସାଥିରେ ବୈଜ୍ଞାନିକ ସତୀଶଚନ୍ଦ୍ର ଦାସଗୁପ୍ତ ଓ ଅନ୍ୟ କେତେକ ବ୍ୟବସାୟୀ ମଧ୍ୟ ଟେନେରୀ ପରିଦର୍ଶନରେ ଆସିଥିଲେ । ସେମାନେ ସମସ୍ତେ ମଧୁବାବୁଙ୍କ ଅତିଥି ହୋଇଥିଲେ । ଟେନେରୀ ପରିଦର୍ଶନ କରିବା ସଂଗେସଂଗେ ଗାନ୍ଧିଜୀ ମ୍ୟୁନିସିପାଲଟି ହତା ଭିତରେ ଆୟୋଜିତ ଏକ ସଭାରେ ଭାଷଣ ଦେଇଥିଲେ । କିନ୍ତୁ ଜାତୀୟ ତଥା ରାଜ୍ୟସ୍ତରୀୟ ବିଭିନ୍ନ ପ୍ରଚେଷ୍ଟା ସତ୍ତ୍ୱେ ୧୯୨୬ ମସିହା ନଭେମ୍ବର ମାସ ୧୫ ତାରିଖ ଦିନ ଉତ୍କଳ ଟେନେରୀ ନିଲାମ ହୋଇଯାଇଥିଲା । ଏହା ମଧୁବାବୁଙ୍କ 'ଆତ୍ମନିର୍ଭରଶୀଳ ଓଡ଼ିଶା' ସ୍ୱପ୍ନ ପ୍ରତି ଏକ ଗଭୀର ଧକ୍କା ଆଣି ଦେଇଥିଲା ।

୧୯୨୬ ମସିହାରେ ବିଧାନ ପରିଷଦ ଓ ବିଧାନସଭା ପାଇଁ ନିର୍ବାଚନ ହୋଇଥିଲା । ଏଥିରେ ଓଡ଼ିଶାରୁ ଉଭୟକକ୍ଷକୁ ନିମ୍ନଲିଖିତ ସଭ୍ୟଗଣ ନିର୍ବାଚିତ ହୋଇଥିଲେ -

| ବିଧାନ ପରିଷଦ | ବିଧାନସଭା |
|---|---|
| ୧. ଭୁବନାନନ୍ଦ ଦାସ | ୧. ନାରାୟଣ ବୀରବର ସାମନ୍ତ |
| ୨. ନୀଳକଣ୍ଠ ଦାସ | ୨. ନନ୍ଦକିଶୋର ଦାସ |
| | ୩. ଗୋଦାବରୀଶ ମିଶ୍ର |
| | ୪. ଲିଙ୍ଗରାଜ ମିଶ୍ର |
| | ୫. ହରେକୃଷ୍ଣ ମହତାବ |

୧୯୨୭ ମସିହାରେ ନିଖିଳ ଭାରତ ଚରଖା ସଂଘର ସଭାପତି ଯମୁନାଲାଲ ବଜାଜ ପ୍ରାଦେଶିକ ସଞ୍ଚାଳକ ନିରଞ୍ଜନ ପଟ୍ଟନାୟକଙ୍କ ନିମନ୍ତ୍ରଣକ୍ରମେ ଓଡ଼ିଶାରେ ଖଦୀ କାର୍ଯ୍ୟର କର୍ମସୂଚୀ ପରିଦର୍ଶନ ପାଇଁ ଆସିଥିଲେ । ଗୁଆମାଳ, ଭଦ୍ରକ, ସମ୍ବଲପୁର ଆଦି ସ୍ଥାନ ବୁଲିବା ପରେ ସେ ଖଦୀ କାର୍ଯ୍ୟର ଅଗ୍ରଗତି ଦେଖି ସନ୍ତୋଷ ପ୍ରକାଶ କରିଥିଲେ । ଏହି ବର୍ଷ 'ସମାଜ' ସମ୍ବାଦପତ୍ର ସତ୍ୟବାଦୀରୁ କଟକ ସ୍ଥାନାନ୍ତରିତ ହୋଇଥିଲା ।

୧୯୨୭ ମସିହା ବାଲେଶ୍ୱର ଜିଲ୍ଲା ପାଇଁ ଥିଲା ଭୟାବହ ବନ୍ୟାର ବର୍ଷ । କ୍ରମାଗତ ବର୍ଷା ଓ ବନ୍ୟାର ତାଣ୍ଡବରୁ ଲୋକଙ୍କୁ ଉଦ୍ଧାର କରିବା ପାଇଁ ଆଗେଇ ଆସିଥିଲେ କଂଗ୍ରେସ କର୍ମୀଗଣ । ନେତା ଥିଲେ ଗୋପବନ୍ଧୁ ଦାସ । ଚୂଡ଼ା, ଚାଉଳ ଓ ବସ୍ତ୍ର ନିରବଚ୍ଛିନ୍ନ ଭାବରେ ବଣ୍ଟନ କରି ସେ ଓ ତାଙ୍କର ସହକର୍ମୀଗଣ ଲୋକମାନଙ୍କର ଅତ୍ୟନ୍ତ ଶ୍ରଦ୍ଧାଭାଜନ ହୋଇପାରିଥିଲେ । ଏହି ପୃଷ୍ଠଭୂମିରେ ଖ୍ରୀଷ୍ଟିୟାନ ମାନବଧର୍ମୀ ପାଦ୍ରୀ ସି.ଏଫ୍. ଏଣ୍ଡ୍ରୁଜଙ୍କର ଅବଦାନ ନିଶ୍ଚିତ ଭାବରେ ଅବିସ୍ମରଣୀୟ । ତ୍ୟାଗ ଓ ସେବାର ମନୋବୃତ୍ତି ନେଇ ବାଲେଶ୍ୱରବାସୀଙ୍କ ଚରମ ଦୁର୍ଦ୍ଦିନରେ ସେ ଯାହା କରିଥିଲେ, ତାହା ଆଜିସୁଦ୍ଧା କିମ୍ବଦନ୍ତୀ ହୋଇ ରହିଛି ।

ଓଡ଼ିଶାର ଦୁଃଖଦୁର୍ଦ୍ଦଶା କଥା ବିଚାରକୁ ନେଇ ଦରଦୀ ଗାନ୍ଧୀ ଏହି ବର୍ଷ ଅର୍ଥାତ୍ ୧୯୨୭ ମସିହାରେ ତୃତୀୟ ଥର ପାଇଁ ଓଡ଼ିଶା ଆସିଥିଲେ । ରସେଲକୋଣ୍ଡା, ବେଲଗୁଣ୍ଠା, ପୁରୁଷୋତ୍ତମପୁର, ଖଲିକୋଟ ପ୍ରଭୃତି ସ୍ଥାନ ଗସ୍ତ କରି ସେ ଅତ୍ୟନ୍ତ ଅସୁସ୍ଥ ହୋଇ ପଡ଼ିଲେ । ତେଣୁ ତାଙ୍କୁ ଦେଖିବା ପାଇଁ ଡାକ୍ତର ବିଧାନଚନ୍ଦ୍ର ରାୟ ଓ ଏଣ୍ଡ୍ରୁଜ ସାହେବ ଗଞ୍ଜାମ ଯାତ୍ରା କରିଥିଲେ । ସୁସ୍ଥ ହେବା ପରେ ଗାନ୍ଧୀ ଖୋର୍ଦ୍ଧା, କଟକ, ପୁରୀ, ଭଦ୍ରକ ପ୍ରଭୃତି ସ୍ଥାନ ଗସ୍ତ କରି ଓଡ଼ିଶାରେ ଖଦୀ କାର୍ଯ୍ୟର ଅଗ୍ରଗତି ଓ ରିଲିଫ୍ ପ୍ରଦାନର ସନ୍ତୋଷଜନକ ବଣ୍ଟନ ଦେଖି ତୃପ୍ତ ହୋଇଥିଲେ ।

୧୯୨୮ ମସିହା ଜୁନ ୧୭ ତାରିଖରେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ପ୍ରତିଷ୍ଠାତା ତଥା ଦୀନଦୁଃଖୀଙ୍କର ନିୟତ ସାଥୀ ପଣ୍ଡିତ ଉତ୍କଳମଣି ଗୋପବନ୍ଧୁ ଦାସ ଇହଲୀଳା ସମ୍ବରଣ କରିଥିଲେ । ଓଡ଼ିଶାର ରାଜନୈତିକ, ସାମାଜିକ ଓ ନୈତିକ କ୍ଷେତ୍ରରେ ସୃଷ୍ଟି ହୋଇଥିଲା ଏକ ବିରାଟ ଶୂନ୍ୟତା । ଅତ୍ୟନ୍ତ ଦୁଃଖର କଥା ଆଜି ପର୍ଯ୍ୟନ୍ତ ସେହି ଶୂନ୍ୟତା ଅପୂର୍ଣ୍ଣ ହୋଇରହିଛି ।

୧୯୨୮ ମସିହାରେ ସାଇମନ କମିଶନର ଭାରତ ଆଗମନ ଏକ ଉଲ୍ଲେଖନୀୟ ଘଟଣା । ସାରା ଭାରତବର୍ଷ ସାଇମନ କମିଶନକୁ ପ୍ରତ୍ୟାଖ୍ୟାନ କରିଥିଲେ ମଧ୍ୟ ଓଡ଼ିଶାର ରାଜନୈତିକ ଅବସ୍ଥା ଭିନ୍ନ ପ୍ରକାରର ଥିଲା । ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ରିତ କରି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରିବା ବିଷୟରେ କମିଶନକୁ ଅଭିହିତ କରିବା ପାଇଁ ଓଡ଼ିଶାରୁ ୧୧ ଜଣିଆ ପ୍ରତିନିଧି ଦଳ ପାଟନା ଯାଇଥିଲେ । ସେମାନଙ୍କ ମଧ୍ୟରୁ ବ୍ରଜସୁନ୍ଦର ଦାସ, ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ, ଲକ୍ଷ୍ମୀଧର ମହାନ୍ତି, ଭିକାରୀ ଚରଣ ପଟ୍ଟନାୟକ, ବ୍ରଜାନନ୍ଦ ଦାସ, ଭୁବନେଶ୍ୱର ରଥଙ୍କ ନାମ ଉଲ୍ଲେଖଯୋଗ୍ୟ । ସାଇମନ କମିଶନର ସଦସ୍ୟବୃନ୍ଦ ସେମାନଙ୍କଠାରୁ ସବୁ ଶୁଣିବା ପରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ର କରି ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା ଲାଗି ସୁପାରିଶ କରିଥିଲେ ।

ଏହି ବର୍ଷ ଦକ୍ଷିଣ ଓଡ଼ିଶାରେ ଗାନ୍ଧିଜୀଙ୍କ ବାର୍ତ୍ତା ଓ ସନ୍ଦେଶ ପ୍ରଚାର କରିବା ପାଇଁ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ନିରଞ୍ଜନ ପଟ୍ଟନାୟକ 'ଗାନ୍ଧୀ ସମାଚାର' ପତ୍ରିକା ଆରମ୍ଭ କରିଥିଲେ । ଶ୍ରୀଯୁକ୍ତ ଶଶୀଭୂଷଣ ରଥଙ୍କ ସମ୍ପାଦନାରେ ପ୍ରକାଶିତ ସାପ୍ତାହିକ 'ଆଶା' ୧୯୨୮ ମସିହାରେ ଦୈନିକ ସମ୍ବାଦପତ୍ରରେ ରୂପାନ୍ତରିତ ହୋଇଥିଲା ।

୧୯୨୯ ମସିହା ଡିସେମ୍ବର ମାସରେ କଟକରେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ୧୯୩୦ ମସିହା ପାଇଁ କର୍ମକର୍ତ୍ତାବୃନ୍ଦଙ୍କୁ ନିର୍ବାଚିତ କରାଯାଇଥିଲା । ସେଥିରେ ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ ସଭାପତି, ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ ସମ୍ପାଦକ ଓ ଶ୍ରୀଯୁକ୍ତ ରାଜକୃଷ୍ଣ ବୋଷ ସହ-ସମ୍ପାଦକ ରୂପେ ନିର୍ବାଚିତ ହୋଇଥିଲେ ।

୧୯୨୯ ମସିହା ଡିସେମ୍ବର ୩୦ ତାରିଖରେ ନିଖିଳ ଭାରତ ଜାତୀୟ କଂଗ୍ରେସର ଲାହୋର ଅଧିବେଶନରେ 'ପୂର୍ଣ୍ଣ ସ୍ୱରାଜ' ପାଇଁ ପ୍ରସ୍ତାବ ଗୃହୀତ ହୋଇଥିଲା ।

୧୯୩୦ ମସିହା ଜାନୁଆରୀ ୨୬ ତାରିଖରେ କଟକର ସ୍ୱରାଜ ଆଶ୍ରମରେ ଜାତୀୟ ପତାକା ଉତ୍ତୋଳନ କରାଯାଇ ପୂର୍ଣ୍ଣ ସ୍ୱରାଜକୁ ଆବାହନ କରାଯାଇଥିଲା । ଓଡ଼ିଶାର ୫୪ଟି ସ୍ଥାନରେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟି ତରଫରୁ ଘୋଷଣାନାମା ପାଠ କରାଯାଇଥିଲା । କଟକରେ ପ୍ରଦେଶ କଂଗ୍ରେସ କମିଟିର ସମ୍ପାଦକ ଗୋପବନ୍ଧୁ ଚୌଧୁରୀ ଶପଥ ପାଠ କରିଥିଲେ ଓ କଟକର ଲୋକନାଥ ପ୍ରେସ୍‌ରେ ରାଜକୃଷ୍ଣ ବୋଷ ସ୍ୱାଧୀନ ଭାରତର ଘୋଷଣାପାଠ କରିଥିଲେ ।

୧୯୩୦ ମସିହା ମାର୍ଚ୍ଚ ୨୦ ତାରିଖରେ କାଠଯୋଡ଼ି କୂଳରେ ଆୟୋଜିତ ବିରାଟ ସାଧାରଣ ସଭାରେ ଗୋପବନ୍ଧୁ ଚୌଧୁରୀ, ଅଟଳବିହାରୀ ଆଚାର୍ଯ୍ୟ, ପ୍ରାଣକୃଷ୍ଣ ପଡ଼ିଆରୀ, ପୂର୍ଣ୍ଣଚନ୍ଦ୍ର ବୋଷ, ଯଦୁମଣି ମଙ୍ଗରାଜ, ନବକୃଷ୍ଣ ଚୌଧୁରୀ ପ୍ରମୁଖ ଭାଗନେଇ ଜାତୀୟତାର ମନ୍ତ୍ରରେ ଲୋକଙ୍କୁ ଉଦ୍‌ବୁଦ୍ଧ କରାଇ ଥିଲେ । ଓଡ଼ିଶାର ଅନ୍ୟାନ୍ୟ ସ୍ଥାନରେ ମଧ୍ୟ ଅନୁରୂପ ପ୍ରତିକ୍ରିୟା ପ୍ରକାଶ ପାଇଥିଲା ।

ଏହିପରି ଭାବରେ କଂଗ୍ରେସର ପୂର୍ଣ୍ଣ ସ୍ୱରାଜ ପ୍ରସ୍ତାବ ଆଇନ ଅମାନ୍ୟ ଆନ୍ଦୋଳନର ପଥ ପ୍ରଶସ୍ତ କରି ଦେଇଥିଲା । ଏହାପରେ ଲବଣ ସତ୍ୟାଗ୍ରହ ମାଧ୍ୟମରେ ମୁକ୍ତି ସଂଗ୍ରାମର ଅନ୍ୟ ଏକ କର୍ମମୟ ଅଧ୍ୟାୟର ଅୟମାରମ୍ଭ ହୋଇଥିଲା ।

୧୯୨୨ ମସିହାରେ ଅସହଯୋଗ ଆନ୍ଦୋଳନର ସମାପ୍ତି ପରଠାରୁ ଲବଣ ସତ୍ୟାଗ୍ରହ ତଥା ଆଇନ ଅମାନ୍ୟ ଆନ୍ଦୋଳନର ୧୯୩୦ ମସିହାରେ ଆରମ୍ଭ - ଏହି ସମସ୍ତ ସମୟଟି ଓଡ଼ିଶା ପାଇଁ ଏକ ଘଟଣାବହୁଳ ଯୁଗ ଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ସମୟରେ ଓଡ଼ିଶାରେ ଜାତୀୟ କଂଗ୍ରେସର ଜନହିତକର କାର୍ଯ୍ୟସୂଚୀ, ରଚନାମୂଳକ କାର୍ଯ୍ୟକ୍ରମ ସମାଜର ତୃଣମୂଳସ୍ତରକୁ ପ୍ରବେଶ କରି ଲୋକଙ୍କୁ ବହୁ ଭାବରେ ଉପକୃତ କରିଥିଲା । ୧୯୨୨ ମସିହାରୁ ୧୯୩୦ ମସିହା ଭିତରେ ମହାତ୍ମାଗାନ୍ଧୀ ଦୁଇଥର ଓଡ଼ିଶା ଆସି ଜନମାନସରେ ପ୍ରଭାବ ବିସ୍ତାର କରିଥିଲେ । ଏହାଛଡ଼ା ସମ୍ବାଦପତ୍ର କ୍ଷେତ୍ରରେ ପ୍ରଜାତନ୍ତ୍ରର ଜନ୍ମ, ସମାଜର ସ୍ଥାନାନ୍ତର, ଦୈନିକ ଆଶାର ରୂପାନ୍ତର, ଉତ୍କଳ ସମ୍ମିଳନୀର ସ୍ୱତନ୍ତ୍ର ଉତ୍କଳ ଗଠନର ନିରଳସ ପ୍ରଚେଷ୍ଟା, ଓଡ଼ିଶାରେ ଖଦୀ କାର୍ଯ୍ୟର ବହୁଳ ପ୍ରସାର, ଉତ୍କଳମଣିଙ୍କ ଆକସ୍ମିକ ତିରୋଧାନରେ ସୃଷ୍ଟି ହୋଇଥିବା ଅପୂରଣୀୟ ରାଜନୈତିକ ଶୂନ୍ୟତା, ସର୍ବୋପରି ପୂର୍ଣ୍ଣ ସ୍ୱରାଜ ପ୍ରସ୍ତାବର ଉନ୍ମାଦନା ଏମିତି ସବୁକିଛିକୁ ମିଶାଇ ଦେଲେ ଏହି ଅନ୍ତବର୍ତ୍ତୀ ବର୍ଷଗୁଡ଼ିକ ଅତ୍ୟନ୍ତ ଘଟଣାବହୁଳ ଥିଲା ।

ଦୁଇଟି ଆନ୍ଦୋଳନର ମଧ୍ୟବର୍ତ୍ତୀ ସମୟ ସାଧାରଣତଃ ଭବିଷ୍ୟତର କର୍ମପନ୍ଥା ପାଇଁ ମାର୍ଗ ପ୍ରଦର୍ଶନ କରିଥାଏ । ତେଣୁ ୧୯୨୨ ମସିହାରୁ ୧୯୩୦ ମସିହା ପର୍ଯ୍ୟନ୍ତ ସମୟ ଓଡ଼ିଶାର ମୁକ୍ତି ସଂଗ୍ରାମରେ ଭବିଷ୍ୟତ ପନ୍ଥା ନିର୍ଦ୍ଦେଶନରେ ବଳିଷ୍ଠ ଭୂମିକା ଗ୍ରହଣ କରିଥିଲା । ଏହି ବର୍ଷଗୁଡ଼ିକରେ ଘଟି ଯାଇଥିବା ଘଟଣାବଳୀ ଭବିଷ୍ୟତ ଉତ୍କଳର ସମୃଦ୍ଧି ଓ ଉନ୍ନତି ପାଇଁ ପରବର୍ତ୍ତୀ କାଳରେ ବେଶ ସହାୟକ ହୋଇଥିଲା ।

---

## ଚିଲିକା ଉନ୍ନୟନ କର୍ତ୍ତୃପକ୍ଷ ୨୦୦୨ - ଇନ୍ଦିରା ଗାନ୍ଧୀ ପରିବେଶ ପୁରସ୍କାର ପାଇବା ପାଇଁ ମନୋନୀତ

ଭାରତ ସରକାରଙ୍କ ଜଂଗଲ ଓ ପରିବେଶ ମନ୍ତ୍ରଣାଳୟ ପକ୍ଷରୁ ପ୍ରତିବର୍ଷ ପରିବେଶ ସୁରକ୍ଷା ଦିଗରେ ଉଲ୍ଲେଖନୀୟ କାର୍ଯ୍ୟ କରିଥିବା ଜଣେ ବ୍ୟକ୍ତିଙ୍କୁ ଏବଂ ଏକ ଅନୁଷ୍ଠାନକୁ ମର୍ଯ୍ୟାଦାଜନକ ଇନ୍ଦିରା ଗାନ୍ଧୀ ପରିବେଶ ପୁରସ୍କାର ପ୍ରଦାନ କରାଯାଇଥାଏ । ୨୦୦୨ ମସିହା ପାଇଁ ଚିଲିକା ଉନ୍ନୟନ କର୍ତ୍ତୃପକ୍ଷ ଏହି ପୁରସ୍କାର ପାଇବା ପାଇଁ ଯୋଗ୍ୟ ବିବେଚିତ ହୋଇଛନ୍ତି । ପ୍ରଥମ କରି ଚିଲିକା ଉନ୍ନୟନ କର୍ତ୍ତୃପକ୍ଷ ଏହି ପୁରସ୍କାର ପାଉଥିବାରୁ ଏହା ଆମ ରାଜ୍ୟ ପାଇଁ ଏକ ଗୌରବର ବିଷୟ । ପୁରସ୍କାର ବାବଦକୁ ୫ ଲକ୍ଷ ଟଙ୍କା ସହିତ ଏକ ଫଳକ ଓ ମାନପତ୍ର ଚିଲିକା ଉନ୍ନୟନ କର୍ତ୍ତୃପକ୍ଷଙ୍କୁ ପ୍ରଦାନ କରାଯିବ ବୋଲି ଚିଲିକା ଉନ୍ନୟନ କର୍ତ୍ତୃପକ୍ଷଙ୍କ କାର୍ଯ୍ୟାଳୟ ସୂତ୍ରରୁ ପ୍ରକାଶ ।

# ଓଡ଼ିଶା ମୁକ୍ତି ସଂଗ୍ରାମର ପ୍ରଥମ ଶହୀଦ - ଜୟୀ ରାଜଗୁରୁ

ସୁଶାନ୍ତ କୁମାର ସେନାପତି

**ଆ**ମ ଦେଶ ଭାରତବର୍ଷ ବିଭିନ୍ନ ସମୟରେ ବିଭିନ୍ନ ଶାସକବର୍ଗଙ୍କ ଦ୍ୱାରା ଶାସିତ ହୋଇଛି । ମୋଗଲ, ଆଫ୍‌ଗାନ୍ ଏବଂ ମରହଟ୍ଟାମାନେ ହଜାର ହଜାର ବର୍ଷ ଧରି ଶାସନ କରିବା ପରେ ଶେଷରେ ଆମ ଦେଶର ଶାସନ କ୍ଷମତା ପଙ୍ଗପାଳ ବିଲାତି ଦଳଙ୍କ ହାତରେ ପଡ଼ିଥିଲା । ସେମାନେ ସାଜିଥିଲେ ଆମର ଭାଗ୍ୟ ବିଧାତା । ୧୮୦୩ ମସିହାରେ ସେମାନେ ଓଡ଼ିଶା ଅଧିକାର କଲେ । ଦୀର୍ଘକାଳ ବ୍ୟାପୀ ମୋଗଲ, ମରହଟ୍ଟାମାନଙ୍କ ଉତ୍ପୀଡ଼ନର ଶୀକାର ହେଲାପରେ ଲୋକମାନେ ଭାବିଥିଲେ ଇଂରେଜ ସରକାର ସେମାନଙ୍କ କଥା ବୁଝିବେ । ଭଲ ଶାସନ ଦେବେ । କିନ୍ତୁ ତାହା ହେଲା ନାହିଁ ।



ଇଂରେଜ ଶାସକଙ୍କ ଜୁଲମ୍ ଅତିମାତ୍ରାରେ ବୃଦ୍ଧି ପାଇଲା । ଲୋକମାନେ ଅତିଷ୍ଠ ହୋଇ ପଡ଼ିଲେ । ସେମାନଙ୍କର ଅନ୍ୟାୟ, ଅତ୍ୟାଚାର ଏବଂ ଶୋଷଣ ବିରୁଦ୍ଧରେ ଜନଅସନ୍ତୋଷ ଦେଖାଗଲା । ଚାରିଆଡ଼େ ବିଦ୍ରୋହର ନିଆଁ ଜଳି ଉଠିଲା । ରଣ ଦୁନ୍ଦୁଭି ବାଜିଲା । ଇଂରେଜମାନଙ୍କ ବିରୁଦ୍ଧରେ ଲଢ଼େଇ କରି କେତେକ ଲୋକ କାରାବରଣ କଲେ । ଆଉ କେତେକ ଯୁଦ୍ଧ କ୍ଷେତ୍ରରେ ଶତ୍ରୁପକ୍ଷର ଗୁଳିମାଡ଼ରେ ଟଳି ପଡ଼ିଲେ । ଅନେକଙ୍କୁ ମଧ୍ୟ ଫାଶୀ ଦଣ୍ଡରେ ଦଣ୍ଡିତ କରାଗଲା । ଦେଶ ମାତୃକା ବା ମାଟିମାଆକୁ ରକ୍ଷା କରିବାକୁ ଯାଇ ଯେଉଁ କେତେଜଣ ପ୍ରାଣବଳି ଦେଇଥିଲେ, ସେମାନଙ୍କ ମଧ୍ୟରେ ଓଡ଼ିଶାର (ଖୋର୍ଦ୍ଧା) 'ଜୟୀ ରାଜଗୁରୁ' ଅନ୍ୟତମ ।

ଓଡ଼ିଶାର ସ୍ୱାଧୀନତା ଆନ୍ଦୋଳନ ଇତିହାସରେ 'ଜୟୀ ରାଜଗୁରୁ'ଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସେ ଥିଲେ ଓଡ଼ିଶା ମୁକ୍ତି ସଂଗ୍ରାମର ପ୍ରଥମ ଶହୀଦ । ମାତୃଭୂମିର ସୁରକ୍ଷା ପାଇଁ ସେ ନିଜ ଜୀବନକୁ ଉତ୍ସର୍ଗ କରି ଯେଉଁ ପରାକାଷ୍ଠା ଦେଖାଇ ଯାଇଛନ୍ତି, ତାହା ଭାରତ ତଥା ପୃଥିବୀ ଇତିହାସରେ ବିରଳ । ଏହି ମହାନ୍ ଜନନାୟକଙ୍କ ଜନ୍ମ ୧୭୩୯ ମସିହା କାର୍ତ୍ତିକ ୨୪ ଦିନ (ତା.୨୯.୧୦.୧୭୩୯) ଅଁଳା ନବମୀ ତିଥିରେ ପୁରୀ ନିକଟସ୍ଥ ହରେକୃଷ୍ଣପୁର ଶାସନରେ ହୋଇଥିଲା । ତାଙ୍କ ପିତାଙ୍କ ନାମ ଚାନ୍ଦ ରାଜଗୁରୁ ଏବଂ ମାତାଙ୍କ ନାମ ହାରାମଣି ଦେବୀ ଅଟେ । ଜୟୀ ରାଜଗୁରୁଙ୍କର ପିଲାଦିନର ନାମ ଥିଲା 'ଅମୂଲ୍ୟ' ।

ସେ ଜାତିରେ ବ୍ରାହ୍ମଣ ଥିବାରୁ ନଅ ବର୍ଷ ବୟସରେ ବିଧିମୁତାବକ ତାଙ୍କର ବ୍ରତୋପନୟନ କରାଯାଇ ଏକୋଇଶିଆ ସମୟରେ ପ୍ରଦତ୍ତ ନାମ ଅମୂଲ୍ୟକୁ ପରିବର୍ତ୍ତନ କରାଯାଇ 'ଜୟକୃଷ୍ଣ' ରଖାଯାଇଥିଲା । ଏହି ଚାରିଅକ୍ଷରିଆ ନାଆଁଟି ଧରି ଡାକିବାକୁ ମା' ହାରାମଣିଙ୍କୁ ଟିକିଏ ଅଡୁଆ ଅଡୁଆ ଲାଗିଲା । ତେଣୁ ସେ ପୁଅକୁ ଜୟକୃଷ୍ଣ ନ ଡ଼ାକି ଶ୍ରଦ୍ଧାରେ 'ଜୟୀ' ବୋଲି ଡାକିଲେ । ଜୀବନର ଶେଷ ପର୍ଯ୍ୟନ୍ତ ମଧ୍ୟ ତାଙ୍କରି ଏହି ନାଆଁଟି ବଳବତ୍ତର ରହିଥିଲା ।

ସେତେବେଳେ ପାଠପଢ଼ିବା ପାଇଁ ସ୍କୁଲ କଲେଜର ସୁବିଧା ନଥିଲା । ରାଜା ଏବଂ ତାଙ୍କର ପଣ୍ଡିତମଣ୍ଡଳୀଙ୍କ ଦ୍ୱାରା ଶିକ୍ଷାର ମାନ ନିରୂପଣ କରାଯାଉଥିଲା । ଶହେ ଗୋଟି ଶ୍ଳୋକ ଉଚ୍ଚାରଣ କରିପାରୁଥିବା ବ୍ୟକ୍ତିକୁ ପଣ୍ଡିତର ଆଖ୍ୟା ଦିଆଯିବା ସଂଗେସଂଗେ ରାଜଦରବାରରେ ବିଭିନ୍ନ ପଦପଦବୀରେ ଅବସ୍ଥାପିତ କରାଯାଉଥିଲା । ଜୟୀଙ୍କ ପିତା ଏବଂ ତାଙ୍କର ପୂର୍ବ ବଂଶଧରମାନେ କ୍ରମାଗତ ଭାବେ ଖୋର୍ଦ୍ଧା ରାଜାଙ୍କର ରାଜଗୁରୁ ଥିଲେ । ଜୟୀଙ୍କର ବ୍ରତୋପନୟନ ସରିବା ପରେ ସେ ପୁରୀ ଏମାର ମଠ ଏବଂ ପରେ ଗୋବର୍ଦ୍ଧନ ପୀଠ ସଂସ୍କୃତ ଟୋଲରେ ପାଠ ପଢ଼ିଥିଲେ । ସେ ନିଜେ ହଜାର ହଜାର ଶ୍ଳୋକ ରଚନା କରି ବ୍ୟାଖ୍ୟା କରିପାରୁଥିବାରୁ ଏବଂ ଧର୍ମଶାସ୍ତ୍ର ଓ ନୀତିଶାସ୍ତ୍ର ଉପରେ ତାଙ୍କର ଅଗାଧ ଜ୍ଞାନ ଥିବାରୁ ସେତେବେଳେ ଖୋର୍ଦ୍ଧା ରାଜାଙ୍କ ଦରବାରରେ ଜଣେ ଶାସ୍ତ୍ରଜ୍ଞ ପୁରୋଧା ରୂପେ ନିଯୁକ୍ତି ପାଇଥିଲେ ।

ଅସାଧାରଣ ପାଣ୍ଡିତ୍ୟ ସହିତ ଜୟୀ ରାଜଗୁରୁ ଜଣେ ସୁଦକ୍ଷ ଯୋଦ୍ଧା ଥିଲେ । ତୁଳସୀ ଦୁଇପତ୍ରରୁ ବାସିଲା ପରି ଜୟୀ ଯେ ଜଣେ ଦିଗ୍‌ବିଜୟୀ ବୀର ହୋଇପାରିବେ ଏକଥା ତାଙ୍କର ପିଲାଦିନର ଏକ ଘଟଣାବଳୀରୁ ଜଣାପଡ଼େ ।

ରାଜଗୁରୁ ପରିବାରର ସମସ୍ତେ ସେତେବେଳେ ଘୋଡ଼ା ପିଠିରେ ଯିବା ଆସିବା କରନ୍ତି । ଜୟୀଙ୍କର ପିତା ଚାନ୍ଦ ରାଜଗୁରୁଙ୍କର କାଳିଆ ନାମରେ ଘୋଡ଼ାଟିଏ ଥାଏ । ସେଇ ଘୋଡ଼ାଟି ପିଣ୍ଡାଠାରୁ କିଛି ଦୂରରେ ଗୋଟିଏ ନଡ଼ିଆ ଗଛରେ ବନ୍ଧା ହୁଏ । ବୀର ହରେକୃଷ୍ଣପୁର ଗାଁଟି ବନ୍ୟାଜଳ ଦ୍ୱାରା ପ୍ଳାବିତ ହୋଇଯାଉଥିବାରୁ ଘରର ପିଣ୍ଡାଗୁଡ଼ିକ ଉଚ୍ଚ କରାଯାଇଥାଏ । ପିଲାବେଳେ ଦିନେ ଜୟୀ ନିଜ ଘର ଭିତରୁ ଗୁରୁଣ୍ଡି ଗୁରୁଣ୍ଡି ପିଣ୍ଡାର ଦାଢ଼କୁ ଚାଲି ଆସିଥିଲେ । ଆଉ କିଛି ସମୟ ପରେ ତଳକୁ ପଡ଼ି ଯାଇଥାନ୍ତେ, ଏ ଦୃଶ୍ୟ ଦେଖି କାଳିଆ ପ୍ରଥମେ ବହୁ ଜୋର୍‌ରେ ଗର୍ଜନ କଲା । ହୁଏତ, କିଏ ଆସି ପିଲାଟିକୁ ବିପଦ ମୁଖରୁ ରକ୍ଷା କରିବ । କିନ୍ତୁ କେହି ନ ଆସିବାରୁ ସେ ଦଉଡ଼ି ଛିଣ୍ଡାଇ ଧାଇଁ ଆସିଥିଲା ଏବଂ ପିଣ୍ଡାର ଦାଢ଼ରେ ମୁଣ୍ଡଟି ଏପରି ଲଗାଇ ଦେଇଥିଲା ଯେ ଜୟୀ ଘୋଡ଼ାର ବେକରେ ଥିବା ଚମଡ଼ା ଦଉଡ଼ିକୁ ଧରି ଓହଳି ପଡ଼ିଥିଲା । ତା'ପରେ ଧୀରେ ଧୀରେ ଘୋଡ଼ା ପିଠି ଉପରକୁ ଉଠିବାକୁ ଚେଷ୍ଟା କରୁଥିଲା । ଏହି ସମୟରେ ଚାନ୍ଦ ରାଜଗୁରୁ ଲୋକନାଥ ମନ୍ଦିରରୁ ପୂଜା କାର୍ଯ୍ୟ ସମାପନ କରି ଘରକୁ ଫେରୁଥାନ୍ତି । ଘୋଡ଼ା ସାଥିରେ ପୁଅ ନିର୍ଭୟରେ ଖେଳୁ ଥିବାର ଦେଖି ସେ ଆଶ୍ଚର୍ଯ୍ୟ ହୋଇଯାଇଥିଲେ ଏବଂ ଜୟୀ ବଡ଼ ହେଲେ ଜଣେ ଭଲ ଯୋଦ୍ଧା ଏବଂ ବିଚକ୍ଷଣ ମଣିଷ ହେବ ଏକଥା ଅନୁମାନ କରିପାରିଥିଲେ ।

ଜନ୍ମଭୂମିର ସେବା କରି ଇଂରେଜମାନଙ୍କୁ ଦେଶରୁ ବିତାଡ଼ିତ କରିବା ପାଇଁ ଜୟୀ ରାଜଗୁରୁ ସାରା ଜୀବନ ଅବିବାହିତ ରହିଥିଲେ । ଇଂରେଜମାନେ ବାଲେଶ୍ୱର ଏବଂ ଗଞ୍ଜାମକୁ ନିଜ ଅଧୀନକୁ ନେବାପରେ କଟକର ବାରବାଟୀ ଦୁର୍ଗ ଦଖଲ କରିଥିଲେ । ବାରବାଟୀ ଦୁର୍ଗ ଦଖଲ କରି ସାରିବା ପରେ ଗୋରା ସାହେବଙ୍କ ଆଖି ପଡ଼ିଲା ଖୋର୍ଦ୍ଧା ଗଡ଼ ଉପରେ । ସେତେବେଳେ ଖୋର୍ଦ୍ଧାର ରାଜା ଥାଆନ୍ତି ଦ୍ୱିତୀୟ ମୁକୁନ୍ଦ ଦେବ । ରାଜା ମୁକୁନ୍ଦ ଦେବ ନାବାଳକ ଥିବାରୁ ତାଙ୍କର ଅଭିଭାବକ ଭାବେ କାର୍ଯ୍ୟ କରୁଥାଆନ୍ତି ସାମନ୍ତ ଜୟୀ ରାଜଗୁରୁ ।

ମୋଗଲ ଶାସନ ଅମଳରୁ ଖୋର୍ଦ୍ଧା ଥିଲା ଏକ ସ୍ୱାଧୀନ ରାଜ୍ୟ । ଓଡ଼ିଶାର କେନ୍ଦ୍ର ସ୍ଥଳରେ ଏହା ଅବସ୍ଥିତି ହୋଇଥିବାରୁ ଇଂରେଜ ପ୍ରଶାସକ ଖୋର୍ଦ୍ଧା ଉପରେ ସାମରିକ ଅଭିଯାନ ଆରମ୍ଭ କରିବା ପାଇଁ ସ୍ଥିର କଲେ । ଇଂରେଜ ଶାସକ ହାର୍‌କୋର୍ଟ ରାଜା ମୁକୁନ୍ଦ ଦେବଙ୍କ ପାଖକୁ ଏକ ଧମକପୂର୍ଣ୍ଣ ଚିଠି ପଠାଇଲେ । ରାଜା ନାବାଳକ ଥିବାରୁ ସବୁକାର୍ଯ୍ୟ ମନ୍ତ୍ରୀ ଜୟୀ ରାଜଗୁରୁଙ୍କୁ ହିଁ କରିବାକୁ ପଡୁଥିଲା । ତେଣୁ ସେ ଚିଠିଟି ପଢ଼ିବା ପରେ ତାଙ୍କର ରକ୍ତ ତାତି ଉଠିଲା । ସେ ଚିଠିଟିକୁ ପଢ଼ିସାରି ଚିକ୍ ଚିକ୍ କରି ଚିରି ଦେଲେ । ତା'ପରେ ବାଘ ଭଳି ଗର୍ଜି ଉଠି କହିଲେ, 'କିଏ ତୁ ବିଲାତି କୁକୁର । ତୋ'ର ଏତେ ଦିମାକ୍ । ତୁ ମୋ' ରାଜାଙ୍କୁ ଧମକ ଦେଇଛୁ । ଖୋର୍ଦ୍ଧା ଉପରେ ଆଖି ପକାଇଛୁ । ତୋ' ଆଖି ଦି'ଟା ତାଡ଼ି ଆଣିବି । ତୋ' ଜିଭଟା କାଟି ଦେବି ।' ଜୟୀ ରାଜଗୁରୁଙ୍କ କଥାରେ ଚମକି ଉଠିଲା ଓଡ଼ିଶା । ପ୍ରତ୍ୟେକ ଓଡ଼ିଆ ଚେଇଁ ଉଠିଲେ । ରାଜକୁମାର ମୁକୁନ୍ଦ ଦେବ ଜୟୀଙ୍କ କହିବା ମୁତାବକ ଇଂରେଜଙ୍କୁ ଦୁଇଟି ସର୍ତ୍ତ ପୂରଣ ପାଇଁ ପ୍ରସ୍ତାବ ଦେଲେ । ପ୍ରଥମ ସର୍ତ୍ତ ହେଲା, 'ଖୋର୍ଦ୍ଧା ଅଧିକାର ପୂର୍ବରୁ ଇଂରେଜ ସରକାର ଗଜପତିଙ୍କୁ ଲକ୍ଷେ ଟଙ୍କା ଦେବେ ଏବଂ ଦ୍ୱିତୀୟରେ ମରହଟ୍ଟା ଶାସକ ବୀରକିଶୋର ଦେବଙ୍କଠାରୁ ଆଗରୁ ଦଖଲ କରିଥିବା ଲେମ୍ବାଇ, ସିରାଇ, ରାହାଙ୍ଗ ଓ ଚବିଶକୁଦ ନାମକ ଚାରିଗୋଟି ପ୍ରଗଣାକୁ ଫେରାଇ ଦେବେ ।'

ସୁଚତୁର ହାରକୋର୍ଟ ସେତେବେଳକୁ ଓଡ଼ିଆମାନଙ୍କର ମତିଗତି ଭଲଭାବେ ଜାଣି ସାରିଥିଲେ । ତେଣୁ ସେ ଆଗତୁରା ସତୁରୀ ହଜାର ଟଙ୍କା ଖୋର୍ଦ୍ଧା ପଠାଇଦେଲେ । ଏହି ଟଙ୍କା ଜୟୀ ରାଜଗୁରୁଙ୍କ ହାତରେ ପଡ଼ିଲା । ସେ ଟଙ୍କାତକ ରାଜାଙ୍କୁ ନଦେଇ ପାଇକମାନଙ୍କ ବାକିଆ ଥିବା ଦରମା ଦେଇଦେଲେ । ଜୟୀ ଜାଣିଥିଲେ ଯେ ଇଂରେଜମାନଙ୍କୁ ତଡ଼ିବା ପାଇଁ ପାଇକମେଳି ଦରକାର । ପ୍ରକୃତରେ ସେ ପାଇକମାନଙ୍କୁ ଏକାଠି କରି ବିଭିନ୍ନ ରଣକୌଶଳମାନ ଶିକ୍ଷା ଦେଉଥିଲେ । ଫଳରେ ଖୋର୍ଦ୍ଧାରେ ଇଂରେଜ ବିରୋଧୀ ଆନ୍ଦୋଳନ ମୁଣ୍ଡ ଟେକି ଉଠୁଥିଲା । ଏଥିଲାଗି ହାର୍‌କୋର୍ଟ ଗଜପତିଙ୍କୁ ଦୋଷ ଦେଇ ଏକ ଚିଠି ପଠାଇଲେ । କିନ୍ତୁ ଜୟୀ ରାଜଗୁରୁଙ୍କ ଦପ୍ତରରୁ ଉତ୍ତର ମିଳୁଥିଲା, 'ହୁସିଆର୍, ଖୋର୍ଦ୍ଧା ଉପରେ ଆଖି ପକାଅନା । ବରଂ ପାରୁଛ ଯଦି ଅବଶିଷ୍ଟ ୩୦ ହଜାର ଟଙ୍କା ଶୀଘ୍ର ପଠାଅ ଓ ଚାରୋଟି ପ୍ରଗଣା ଫେରାଅ ।' ହାର୍‌କୋର୍ଟ ଉତ୍ତର ଦେଇଥିଲେ ତୁମ ରାଜା ଯଦି ଆମ ହୁକୁମ ମାନି ଯିବେ ତେବେ ଆମେ ତିରିଶ ହଜାର ଟଙ୍କା ଦେବୁ ଓ ପ୍ରଗଣା କଥା ବିଚାର କରିବୁ । ହାର୍‌କୋର୍ଟର ଚିଠି ପଢ଼ି ଜୟୀ ରାଜଗୁରୁ ଟିକେ ଚିନ୍ତା କଲେ ଏବଂ ଉତ୍ତର ପଠାଇଲେ ଯେ ଓଡ଼ିଆ ପୁଅ କାହାରି ହୁକୁମ ମାନେ ନାହିଁ । ମୋ' ଗଜପତି ତୁମ ବୋଲ ମାନିବେ କେମିତି ? ଏପରି ଏକ ଅପମାନଜନକ ଚିଠି ପାଇଲା ପରେ ହାର୍‌କୋର୍ଟ ଏକ ଯୋଜନା ପ୍ରସ୍ତୁତ କଲେ । ଜୟୀ ରାଜଗୁରୁ ଏବଂ ତାଙ୍କର ପାଇକ କୁଳକୁ ଧ୍ୱଂସ କରିବା ପାଇଁ ଷଡ଼ଯନ୍ତ୍ର ଚାଲିଲା । ପାଇକ ଆଖଡ଼ା ବନ୍ଦ କରି ଦିଆଗଲା । ପାଇକମାନଙ୍କ ପରିବର୍ତ୍ତେ ଦାରୋଗାମାନଙ୍କୁ ନିଯୁକ୍ତି ମିଳିଲା । ପାଇକମାନଙ୍କ ଜମି ଉପରେ କର ବସାଗଲା । ତଥାପି ପାଇକକୁଳ ହଟି ନଥିଲେ । ରଣହୁଙ୍କାର ଛାଡ଼ି ଯୁଦ୍ଧକ୍ଷେତ୍ରକୁ ଡେଇଁ ପଡ଼ିଥିଲେ । ଏହି ବିଦ୍ରୋହର ନିଆଁ ଆଳି, କନିକା, କୁଜଙ୍ଗ, ଘୁମୁସର, ଆଠଗଡ଼ ଓ ଶେରଗଡ଼ ପ୍ରଭୃତି ଅଞ୍ଚଳକୁ ବ୍ୟାପୀ ଯାଇଥିଲା । କର୍ଣ୍ଣେଲ ହାର୍‌କୋର୍ଟ ନିଜର ସ୍ଥିତିରକ୍ଷା କରିବାକୁ ଯାଇ ମାନ୍ଦ୍ରାଜର ମୁଖ୍ୟ ମେଜର ଫ୍ଲେଚରଙ୍କ ସାହାଯ୍ୟ ମାଗି ଥିଲେ । କଲିକତାରୁ ଦ୍ୱିତୀୟ ଏବଂ ସପ୍ତମ ସେନାବାହିନୀ

ଡକାଗଲା । ୧୮୦୪ ମସିହା ନଭେମ୍ବର ୨୨ ତାରିଖ ଦିନ ଇଂରେଜମାନେ ଖୋର୍ଦ୍ଧା ଆକ୍ରମଣ କଲେ । ଇଂରେଜ ସୈନ୍ୟମାନଙ୍କର ଏହି ଆକ୍ରମଣରେ ବହୁ କ୍ଷୟକ୍ଷତି ହେଲା । କିନ୍ତୁ ପରବର୍ତ୍ତୀ ଅବସ୍ଥାରେ କେତେକ ସ୍ଥାନୀୟ ଲୋକଙ୍କୁ ପ୍ରଲୋଭିତ କରି ସେହି ବିଶ୍ୱାସଘାତକମାନଙ୍କ ସାହାଯ୍ୟରେ ଗୋଟିଏ ପରେ ଗୋଟିଏ ଗିରଫଦାରୀ କରି ଚାଲିଲେ ।

ଲୋକ ମୁଖରୁ ଶୁଣାଯାଏ ଯେ, ଜୟୀ ରାଜଗୁରୁ ଜଣେ ତନ୍ତ୍ର ସାଧକ ଥିଲେ । ସେ ନିଜର ସାଧନାବଳରେ ବରୁଣେଇ ଦୁର୍ଗର ଦୁଇ ଦେବୀ ବରୁଣେଇ ଓ ଅରୁଣେଇଙ୍କୁ ପୂଜା କରି ସିଦ୍ଧିଲାଭ କରିଥିଲେ । ଯାହାଦ୍ୱାରା ଶୂନ୍ୟରୁ ଶର ସବୁ ଆସି ଶତ୍ରୁ ଦେହରେ ବିଦ୍ଧ ହେଉଥିଲା । କିନ୍ତୁ କାଞ୍ଚବେଓ୍ୱା ନାମ୍ନୀ ଜଣେ ବିଶ୍ୱାସଘାତକିନୀ ଯୋଗୁଁ ସବୁ ଓଲଟ ପାଲଟ ହୋଇଯାଇଥିଲା । ତା' କଥାରେ ଇଂରେଜମାନେ କମାଣ ଭିତରେ ଗୋରୁ ଓ ଘୁଷୁରି ମାଂସ ପୂରାଇ ଠାକୁରାଣୀଙ୍କ ଉପରକୁ ଫିଙ୍ଗିଲେ । ଫଳରେ ମାଆଙ୍କ ପୂଜାରେ ବାଧା ଉପୁଜିଲା । ବରୁଣେଇ ଦୁର୍ଗର ପତନ ଘଟିଲା । ଜୟୀ ରାଜଗୁରୁ ଓ ଦିଗମ୍ବର ଭୂୟାଁ ଦୁଇ ବୀର ଶତ୍ରୁ ହାତରେ ଧରା ପଡ଼ିଲେ । ଜୟୀ ରାଜଗୁରୁ ଯଦି ଭୁଲ ମାନିବେ ତେବେ ତାଙ୍କୁ ମୁକ୍ତି ମିଳିବ ବୋଲି କର୍ଣ୍ଣେଲ ହାର୍‌କୋର୍ଟ ଏକ ପ୍ରସ୍ତାବ ଦେଲେ ।

କିନ୍ତୁ ଏ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଥିଲେ ଜୟୀ ରାଜଗୁରୁ । ସେ ଅତି ଦାମ୍ଭିକତାପୂର୍ଣ୍ଣ ସ୍ୱରରେ କହିଥିଲେ, ସାହେବ, ସୂର୍ଯ୍ୟ ପଶ୍ଚିମ ଦିଗରେ ଉଇଁ ପାରେ, ପଦ୍ମଫୁଲ ପାହାଡ଼ ଉପରେ ଫୁଟିଲେ ମଧ୍ୟ ଓଡ଼ିଆ ପୁଅ କାହା ପାଖେ ମୁଣ୍ଡ ନୁଆଁଇବା ଶିଖି ନାହିଁ । ହାର୍‌କୋର୍ଟ ଆହୁରି ରାଗି ଗଲେ । ସିପାହୀମାନେ ରାଜଗୁରୁଙ୍କ ମୁଣ୍ଡ ତଳକୁ କରି ଛାତରେ ଲଟକାଇ ତଳେ ନିଆଁ ଜାଳିଲେ । ଚାବୁକ୍‌ରେ ପ୍ରହାର କଲେ । ଜୟୀ ରାଜଗୁରୁ ମୂର୍ଚ୍ଛା ଗଲେ । ତଥାପି ପାଇକମେଳିର ସୂତ୍ର କହିଲେ ନାହିଁ କି ଭୁଲ୍ ସ୍ୱୀକାର କଲେ ନାହିଁ । ତା'ପରେ ତାଙ୍କୁ ମେଦିନାପୁରର ବାଘି ତୋଟାକୁ ନିଆଗଲା ।

ଶେଷରେ ୧୮୦୬ ମସିହା ଡିସେମ୍ବର ୬ ତାରିଖରେ ତାଙ୍କୁ ଇଂରେଜମାନେ ଅତି ନୃଶଂସ ଭାବେ ହତ୍ୟା କଲେ । ଗୋଟିଏ ବରଗଛର ଦୁଇଟି ଡାଳ ଟାଣି ଆଣି ତାଙ୍କର ଦୁଇଗୋଡ଼ରେ ବାନ୍ଧି ଡାଳ ଦୁଇଟିକୁ ଛାଡ଼ି ଦେଇଥିଲେ । ରାଜଗୁରୁଙ୍କର ଶରୀର ନିମିଷକ ମଧ୍ୟରେ ଦୁଇଫାଳ ହୋଇଗଲା । ସେଇ ମହାନ୍ ପଣ୍ଡିତ, ସୁଦକ୍ଷ ପ୍ରଶାସକ, ନିର୍ଭୀକ ବୀର ଜୟୀ ରାଜଗୁରୁଙ୍କ କଥା ଆଜି ମଧ୍ୟ ପ୍ରତ୍ୟେକ ଓଡ଼ିଆ ପ୍ରାଣରେ ଉଜ୍ଜୀବିତ ହୋଇ ରହିଛି । କବିଙ୍କ ଭାଷାରେ -

କୁଆଡ଼େ ବହି ଯାଉଛି କାଳ
ଗଲାଣି କେତେଶ' ସାଲ
ରହିଛି ଏବେ କଥା
ଜଇଆ ପଛେ ଜୀବନ ଦେଲା
ନୁଆଁଇ ନାହିଁ ମଥା ।

**ସହାୟକ ଗ୍ରନ୍ଥସୂଚୀ**


୧. ଓଡ଼ିଶାର ପ୍ରଥମ ଶହୀଦ - ଜୟୀ ରାଜଗୁରୁ, ଲେଖକ- ଶ୍ରୀ ଜଟାଧାରୀ ମିଶ୍ର ।

୨. ରକ୍ତତୀର୍ଥ ଓଡ଼ିଶା - ଲେଖକ- କାର୍ତ୍ତିକ ଦାଶ ।

୩. ସପ୍ତମ ଶ୍ରେଣୀରେ ପ୍ରଚଳିତ ପାଠ୍ୟପୁସ୍ତକ ସାହିତ୍ୟ ବହି ।

୪. ବିଭିନ୍ନ ସମ୍ବାଦସୂତ୍ରରୁ ସଂଗୃହୀତ ତଥ୍ୟ ।



ଡେମୋନ୍‌ଷ୍ଟ୍ରେଟର
ମହର୍ଷି ମହାବିଦ୍ୟାଳୟ, ଶହୀଦ ନଗର
ଭୁବନେଶ୍ୱର-୭




ରାବଣଛାୟା, ସୀତାବାଞ୍ଜି


ସରୋଜିନୀ ନାଇଡୁ

# ଭାରତର ସ୍ୱାଧୀନତା ପ୍ରାପ୍ତିରେ ମହିଳାମାନଙ୍କର ଭୂମିକା

ନିର୍ମଳା କୁମାରୀ ମହାପାତ୍ର

**ସ**ନ ୧୯୨୧, ନଭେମ୍ବର ୧୬ ତାରିଖ । ବମ୍ବେ ମହାନଗରର ମାରଓ୍ୱାଡ଼ି ବିଦ୍ୟାଳୟର ହଲ୍‌ରେ ମହିଳାମାନଙ୍କର ସମ୍ମେଳନ ଥିଲା ବେଶ୍ ଗୁରୁତ୍ୱପୂର୍ଣ୍ଣ । ଆଗକୁ ଥାଏ ବ୍ରିଟେନ୍‌ର ରାଜକୁମାର ଓ୍ୱେଲସ୍‌ଙ୍କର ଆଗମନ ଉତ୍ସବ । ଜାଲିଆନାଓ୍ୱାଗର ହତ୍ୟାକାଣ୍ଡ ଦେଶରେ ହଇଚଇ ସୃଷ୍ଟି କରିଥାଏ । ସ୍ୱାଧୀନତା ଆନ୍ଦୋଳନର ସରଗରମ ହାଓ୍ୱା ସାରା ଦେଶର ପରିବେଶ-ପରିସ୍ଥିତିକୁ କରି ଦେଇଥାଏ ଗୁରୁଗମ୍ଭୀର । ଏହିଭଳି ପରିସ୍ଥିତିରେ ରାଜକୁମାର ଓ୍ୱେଲସ୍‌ଙ୍କର ଆଗମନ (Arrival of Prince Wales) ଉତ୍ସବକୁ ବର୍ଜନ କରିବା ପାଇଁ ମହିଳା ସମ୍ମେଳନରେ ନିଷ୍ପତ୍ତି ନିଆଗଲା । ଉଚ୍ଚକୁଳର ଝିଅବୋହୂମାନେ ଘରୁ ପାଦକାଢ଼ି ଶୋଭାଯାତ୍ରାରେ ଚାଲିଲେ । ସମସ୍ତଙ୍କ ଦେହରେ ଥିଲା ସ୍ୱଦେଶୀ ବସ୍ତ୍ର, ଖଦଡ଼ । କଣ୍ଠରେ ଥିଲା ବିପ୍ଳବର ସଂଗୀତ । ସ୍ୱାଧୀନତା ହାସଲ କରିବାର ପଣ, ଉଚ୍ଚ କଣ୍ଠରେ ସ୍ଲୋଗାନ - ଭାରତ ମାତା କି ଜୟ ... । କ୍ରମେ ଶୋଭାଯାତ୍ରା ଆଗେଇ ଚାଲିଲା ବମ୍ବେର ପ୍ରସିଦ୍ଧ ମାଧବବାଗ ମନ୍ଦିରକୁ ଯଦିଓ ସେହି ଶୋଭାଯାତ୍ରାରେ ହିନ୍ଦୁ-ମୁସଲମାନ-ପାର୍ଶୀ ରମଣୀମାନେ ଥିଲେ । ସମସ୍ତଙ୍କର ପ୍ରାର୍ଥନା ଥିଲା ଏକ ଓ ଅଭିନ୍ନ । ତାହା ହେଲା - ସ୍ୱଦେଶପ୍ରାପ୍ତି, ସ୍ୱରାଜ୍ୟ ପ୍ରାପ୍ତି ଆଉ ସ୍ୱାଧୀନତା ।


ରମା ଦେବୀ


କୃଷ୍ଣକାମିନୀ ଦେବୀ

ବମ୍ବେର ମାରଓ୍ୱାଡ଼ି ବିଦ୍ୟାଳୟ ହଲ୍‌ରେ ରାଷ୍ଟ୍ରୀୟ ସ୍ତ୍ରୀସଭା ଆନୁକୂଲ୍ୟରେ ଏକ ବିରାଟ ସାଧାରଣ ସଭା ଅନୁଷ୍ଠିତ ହୋଇଥିଲା । ସେଥିରେ ସଭାପତିତ୍ୱ କରିଥିଲେ ଶ୍ରୀମତୀ ସରୋଜିନୀ ନାଇଡୁ । ଏଥିରେ ଶ୍ରୀମତୀ ତୋମିନା ଯୋଷୀ ଇଂରେଜ ସରକାରଙ୍କ ଅତ୍ୟାଚାର-ଅବିଚାର ବିରୋଧରେ ବିକ୍ଷୋଦ୍‌ଗାର କରିଥିଲେ । ଜାତି-ଧର୍ମ-ବର୍ଣ୍ଣ ନିର୍ବିଶେଷରେ ସମସ୍ତ ମହିଳାଙ୍କୁ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେବା ପାଇଁ ଆହ୍ୱାନ କରାଯାଇଥିଲା । ପରବର୍ତ୍ତୀ କାଳରେ ଅନେକ ମହିଳା ସେମାନଙ୍କର ହାଣ୍ଡିଚୁଲା ଛାଡ଼ି ପ୍ରସିଦ୍ଧ ଆଇନ ଅମାନ୍ୟ ଆନ୍ଦୋଳନରେ ଯୋଗ ଦେଇଥିଲେ । ସେମାନଙ୍କ ମଧ୍ୟରୁ କେତେଜଣଙ୍କର ନାମ ଉଲ୍ଲେଖ କରିବା ଉଚିତ ମନେହୁଏ । ଯଥା- ସତ୍ୟବତୀ ଦେବୀ (ଦିଲ୍ଲୀ), ଆଶାଲତା ସେନ୍ (ପଶ୍ଚିମବଙ୍ଗ), ନବଶଶୀ ଦେବୀ (ପଶ୍ଚିମବଙ୍ଗ), ରାଣୀ ଗୌଡ଼ିଲୁ, ବି. ଆମ୍ମା, ବାସନ୍ତୀ ଦେବୀ, ପଦ୍ମାସିନୀ ଅମ୍ମଲ, ସ୍ୱର୍ଣ୍ଣକୁମାରୀ ଦେବୀ, ଶକୁନ୍ତଳା ଦେବୀ (ଗୋଣ୍ଡା), ସୁଶୀଳା ଦେବୀ (ଲାହୋର), ବୀଣାଦାସ, ଭିକାଜୀ କାମା, ରକ୍ମିଣୀ ଲକ୍ଷ୍ମୀପତି, ଆମ୍ମୁ ସ୍ୱାମୀନାଥନ୍, ହାନ୍‌ସା ମେହେଟ୍ଟା, ପଣ୍ଡିତ ବିଜୟଲକ୍ଷ୍ମୀ ନେହେରୁ (ଉତ୍ତରପ୍ରଦେଶ), ମୁଥୁ ଲକ୍ଷ୍ମୀ ରେଡ୍‌ଡୀ, ସରଳା ଦେବୀ (ଓଡ଼ିଶା), ରମାଦେବୀ (ଓଡ଼ିଶା), ମାଳତୀ ଚୌଧୁରୀ (ଓଡ଼ିଶା) ଆଦି ।

ଓଡ଼ିଶାରୁ ଶ୍ରୀମତୀ ସରଳା ଦେବୀ ୧୯୩୦ ମସିହାରେ ବ୍ରହ୍ମପୁରଠାରେ 'ଉଦ୍‌ଯୋଗ ମନ୍ଦିର' ନାମକ ଅନୁଷ୍ଠାନ ସ୍ଥାପନ କରି ବହୁ ପୁରୁଷ ଓ ମହିଳା କର୍ମୀଙ୍କୁ ସ୍ୱାଧୀନତାର ତତ୍ତ୍ୱ ବୁଝାଇ ଆନ୍ଦୋଳନରେ ଯୋଗ ଦେବା ପାଇଁ ପ୍ରବର୍ତ୍ତାଇ ଥିଲେ । ଶ୍ରୀମତୀ ରମାଦେବୀ (ଚୌଧୁରୀ) ଓ ଶ୍ରୀମତୀ ମାଳତୀ ଚୌଧୁରୀ ଥିଲେ ଗୋଟିଏ ଘରର ଦୁଇଜଣ ବୋହୂ । ଉଭୟ ସତ୍ୟାଗ୍ରହୀ ଭାବେ ଲାଠିମାଡ଼କୁ ଭ୍ରୂକ୍ଷେପ ନକରି ବାରବାର ଗିରଫ ହୋଇ ଜେଲଦଣ୍ଡ ଭୋଗି ସ୍ୱାଧୀନତା ଆନ୍ଦୋଳନକୁ ବଳବତ୍ତର କରାଇଥିଲେ । ଶ୍ରୀମତୀ ସୁଭଦ୍ରା ମହତାବ, ପ୍ରଭାବତୀ ଦେବୀ, ପ୍ରିୟମ୍ବଦା ଦେବୀ, କୃଷ୍ଣକାମିନୀ ଦେବୀ, ଗୋଦାବରୀ ଦେବୀ, ଶଶୀବାଳା କାନୁନ୍‌ଗୋ, ଅନ୍ନପୂର୍ଣ୍ଣା ମହାରଣା, କୁମାରୀ ପାର୍ବତୀ ଗିରି, ଶକୁନ୍ତଳା ଦେବୀ, କିରଣଲେଖା ମହାନ୍ତି ଆଦି ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ ।

ଭାରତଛାଡ଼ ଆନ୍ଦୋଳନ (Quit India Movement)ରେ ଆସାମର ମହିଳାମାନେ ଅଭୂତପୂର୍ବ ବୀରତ୍ୱ ପ୍ରଦର୍ଶନ କରିଥିଲେ । ସେମାନଙ୍କର କାର୍ଯ୍ୟଧାରାରେ ସଂପୂର୍ଣ୍ଣ ସତ୍ୟ ଓ ଅହିଂସା ପ୍ରତିଫଳିତ ହେଉଥିଲା । ସବୁଠାରେ ପୁରୁଷମାନଙ୍କ କାନ୍ଧ ସାଥେ କାନ୍ଧ ମିଳାଇ ସ୍ତ୍ରୀମାନେ ସ୍ୱାଧୀନତା ପାଇଁ ଯୁଝୁଥିଲେ । ଅନେକ କ୍ଷେତ୍ରରେ ମହିଳାମାନେ ଆଗୁଆ ଚାଲି ମିଲିଟାରୀ ବଳ (Military Force)ର ସମ୍ମୁଖୀନ ହୋଇ ସଫଳତା ହାସଲ କରୁଥିଲେ । ଯଥା- ବ୍ରହ୍ମପୁର, ଗୋହପୁର, ବରପୂଜିଆ ଆଦି ସ୍ଥାନରେ ପ୍ରଥମେ ସଶସ୍ତ୍ର ପୋଲିସ ବାହିନୀର ମୁକାବିଲା କରି ମହିଳାମାନେ ଶୋଭାଯାତ୍ରା ଆଗେଇ ନେଇଥିଲେ । ସେଠାରେ ମହିଳାମାନଙ୍କ ଅଭିଯାନର ନେତୃତ୍ୱ ନେଇଥିଲେ ଶ୍ରୀମତୀ ଅମଳପ୍ରଭା ଦାସ । ସେ ଏକ ମହିଳାଦଳ ସହାୟତାରେ ଗ୍ରାମେ ଗ୍ରାମେ ବୁଲି ସଭାସମିତି ଜରିଆରେ ଇଂରେଜ ସରକାରଙ୍କର ଅତ୍ୟାଚାର ବିରୋଧରେ ଲୋକମାନଙ୍କୁ ବୁଝାଉଥିଲେ । ତାଙ୍କର ଅନ୍ୟତମା ସହଯୋଗିନୀ ଥିଲେ ପୁଷ୍ପଲତା ଦାସ ।

ମହିଳାମାନଙ୍କର ଅଭିଯାନକୁ ଭଣ୍ଡୁର କରିବା ପାଇଁ ପୋଲିସ୍ ଲାଠି ଚାଳନା କରିଥିଲା । ଉତ୍ତର ଆସାମରେ ଏଥିପାଇଁ ତୀବ୍ର ଆନ୍ଦୋଳନ ତେଜି ଉଠିଲା । ଏଥିରେ ନେତୃତ୍ୱ ନେଲେ ଶ୍ରୀମତୀ ଅନ୍ନପ୍ରଭା ବଡ଼ୁଆ ଓ ସୁଧାଲତା ଦତ୍ତ । ଆସାମର ବଜାଲିଠାରେ ପ୍ରାୟତଃ ୩୦୦୦ (ତିନି ହଜାର) ମହିଳାଙ୍କର ସମାବେଶରେ ନେତ୍ରୀ ଚନ୍ଦ୍ରପ୍ରଭା ସାଇକିଆ ସଭାପତିତ୍ୱ କରିଥିବା ବେଳେ ପୋଲିସ ଦମନଲୀଳା ଆରମ୍ଭ କଲେ, ମାତ୍ର ଶ୍ରୀମତୀ ସାଇକିଆ ପୋଲିସକୁ ତିଳେମାତ୍ର ଖାତର ନକରି ଯଥାବିଧି ସଭାକାର୍ଯ୍ୟ ପରିଚାଳନା କରିଥିଲେ । ଏହାପରେ ଆରମ୍ଭ ହେଲା ଖୋଲା ବିପ୍ଳବ । ମହିଳାମାନଙ୍କର ସରକାରକୁ ସାମନା ସାମ୍ନି ବିରୋଧ କରିବା ସାହସର କଥା ସମସ୍ତେ ଅନୁଭବ କଲେ । ପୋଲିସ୍ର କାର୍ଯ୍ୟାନୁଷ୍ଠାନରେ ବଳି ପଡ଼ିଲେ କୁମାରୀ କନକଲତା ଓ କୁମାରୀ ତୁଲେଶ୍ୱରୀ । ସେମାନେ ଦେଶ ପାଇଁ ଶହୀଦ ହେଲେ ।

ଚମ୍ପାରନ (Champaron)ରେ ଶ୍ରୀମତୀ ଅବନ୍ତିକା ଗୋଖେଲ ନାମ୍ନୀ ଜଣେ ସ୍ୱାଧୀନତା ସଂଗ୍ରାମୀ ସତ୍ୟାଗ୍ରହ ଚଳାଇ ରଖିଲେ । ଅଧିକ ସଂଖ୍ୟକ ମହିଳାକର୍ମୀ ସଂଗ୍ରହ ପାଇଁ ସେ ଦେଶ ସେବିକାଦଳ ଗଠନ କରିଥିଲେ । ଆଇନ ଅମାନ୍ୟ ଆନ୍ଦୋଳନ ଚାଲୁ ରହିଥିବା ବେଳେ ବମ୍ବେରେ ତାଙ୍କର ଭୂମିକା ଥିଲା ବେଶ ଗୁରୁତ୍ୱପୂର୍ଣ୍ଣ । ବାମପନ୍ଥୀ ଦଳରେ ସାମିଲ ହୋଇଥିବା ମହିଳାମାନେ ଥିଲେ ଶ୍ରୀମତୀ କମଳାଦେବୀ ଚଟ୍ଟୋପାଧାୟ, ଭାରତୀରଙ୍ଗା, ସୁବାସିନୀ ଜାମ୍ବେକର ଆଦି । ସେମାନଙ୍କର ଦଳ ଏପରି ସକ୍ରିୟ ହୋଇପଡ଼ିଥିଲା ଯେ ବଙ୍ଗର ଗଭର୍ଣ୍ଣରଙ୍କୁ ଗୁଳି କରି ହତ୍ୟା କରିଥିବା ଅପରାଧରେ ଗିରଫ ହୋଇଥିଲେ ଜଣେ ଛାତ୍ରୀ ।

ସନ ୧୯୪୩, ଜୁଲାଇ ୧୨ ବେଳକୁ ସୁଭାଷଚନ୍ଦ୍ର ବୋଷଙ୍କର ଭାରତୀୟ ଜାତୀୟ ସେନାନୀ (Indian National Army - INA)ର ରାଣୀ ଝାନ୍ସୀ ରେଜିମେଣ୍ଟ ପୂର୍ଣ୍ଣ ସକ୍ରିୟତା ଲାଭ କରି ସାରିଥିଲା । ତାହା ସହିତ ମହିଳାମାନଙ୍କର ଏକ ରେଡ଼କ୍ରସ୍ ୟୁନିଟ୍ (Red Cross Unit) ମଧ୍ୟ କାମ କରୁଥିଲା । ପ୍ରାୟ ୬୦୦ (ଛଅ ଶହ)ରୁ ଊର୍ଦ୍ଧ୍ୱ ସଂଖ୍ୟକ ହିନ୍ଦୁ-ମୁସଲମାନ-ଶିଖ୍ ସ୍ୱେଚ୍ଛାସେବୀ ମହିଳା ସିଂଘାପୁର କ୍ୟାମ୍ପରେ ଯୋଗ ଦେଇଥିଲେ ।

ସନ ୧୯୪୪ ବେଳକୁ ଆଜାଦ୍-ହିନ୍ଦ-ଫୌଜ ବର୍ମାରେ କାମ କରିବା ପାଇଁ ଆଗୁସାର ହୋଇଥାଏ । ରାଣୀ ଝାନ୍ସୀ ରେଜିମେଣ୍ଟର ବାଳିକାମାନେ ନିଜ ରକ୍ତରେ ସ୍ୱାକ୍ଷର କରି ନେତାଜୀଙ୍କୁ ଦରଖାସ୍ତ କରିଥିଲେ । ଅଭିପ୍ରାୟ ଥିଲା ଆଜାଦ୍-ହିନ୍ଦ୍-ଫୌଜ ସହ ସମତାଳ ଦେଇ ରାଣୀ ଝାନ୍ସୀ ରେଜିମେଣ୍ଟକୁ ବର୍ମାରେ କାମ କରିବାର ଅନୁମତି ମିଳୁ । ନେତାଜୀ ତହିଁରେ ସହମତି ପ୍ରକାଶ କରି ସ୍ୱୀକୃତି ଦେଇଥିଲେ । ସେହି ବର୍ଷ ଅକ୍ଟୋବର ୧୨ ତାରିଖରେ ରେଙ୍ଗୁନ ସହରର ଏକ ବିରାଟ ମଇଦାନରେ ରାଣୀ ଝାନ୍ସୀ ରେଜିମେଣ୍ଟ ଅଗ୍ରଗାମୀ ଦଳ ଭାବେ କାର୍ଯ୍ୟ କରି ପ୍ରଶଂସାଭାଜନ ହୋଇପାରିଥିଲା । ସେ'ଦିନର ପ୍ୟାରେଡ଼ ସରିବା ଉପରେ । ସହସା ବ୍ରିଟିଶ୍ ବାହିନୀର ଆକ୍ରମଣ ହେଲା । ମାତ୍ର ପ୍ରୋକ୍ତ ରେଜିମେଣ୍ଟ ସୁରୁଖୁରୁରେ ତା'ର କାର୍ଯ୍ୟ ସଂପାଦନ କରି ପାରିଥିଲା ।

ଅରୁଣା ଆସଫ୍ ଅଲ୍ଲୀ ଓ ଉଷା ମେହେଟ୍ଟାଙ୍କ ପରି ନେତ୍ରୀଗଣ ବର୍ଷ ବର୍ଷ ଧରି ବଙ୍କର ଭିତରେ (Underground)ରେ ଆତ୍ମଗୋପନ କରି ସଂଗ୍ରାମ ଚଳାଇ ରଖିଥିଲେ । ଅରୁଣା ଆସଫ୍ ଅଲ୍ଲୀଙ୍କ ନେତୃତ୍ୱରେ ୧୯୪୬ର ଆନ୍ଦୋଳନ ପୂର୍ଣ୍ଣ ସଫଳତା ଲାଭ କରିଥିଲା । ତାଙ୍କ ଯୋଗୁଁ ଗୋଓ୍ୱାଲିୟର୍ର ସର୍ବଭାରତୀୟ ଜନସମାବେଶରେ ମହିଳାମାନଙ୍କର ଅବଦାନ ଓ କୃତିତ୍ୱକୁ ବହୁ ଭାବେ ସ୍ୱୀକାର କରାଯାଇଥିଲା ।

ବିଶିଷ୍ଟ ମନିଷୀ ଆନି ବେସାନ୍ତଙ୍କର ଉଦାରତା ଯୋଗୁ ମାନ୍ଦ୍ରାଜଠାରେ ୧୯୨୬-୨୭ରେ ମହିଳାମାନେ ଭୋଟ ଦେବାର ଅଧିକାର ପାଇବା ପାଇଁ ବାରମ୍ବାର ଏକତ୍ରିତ ହୋଇଥିଲେ । ସେ' କାଳରେ ପ୍ରବଳ ପ୍ରତାପୀ ଇଂରେଜ ସରକାର ଓ କୁସଂସ୍କାର ଆଚ୍ଛନ୍ନ ସମାଜ ବିରୋଧରେ - ଉଭୟପକ୍ଷ ବିରୋଧରେ ସ୍ୱର ଉତ୍ତୋଳନ କରିବା ଏତେ ସହଜ ବ୍ୟାପାର ନଥିଲା ।

ପାଇକ ବିଦ୍ରୋହକୁ ସ୍ୱାଧୀନତା ସଂଗ୍ରାମର ଆଦ୍ୟ ଶଙ୍ଖଧ୍ୱନି ବୋଲି ଧରି ନିଆଯାଇଛି ଓ ଏଥିରେ ମହିଳାମାନଙ୍କର ଅବଦାନକୁ ସ୍ୱୀକାର କରାଯାଏ । ସିପାହୀ ବିଦ୍ରୋହ (୧୮୫୭)ରେ ଝାନ୍ସୀରାଣୀ ଲକ୍ଷ୍ମୀବାଈଙ୍କ ବୀରତ୍ୱ ବ୍ରିଟିଶ୍ ସାମ୍ରାଜ୍ୟକୁ ପ୍ରକମ୍ପିତ କରିଥିଲା । ମହିଳାମାନଙ୍କର ଜାଗରଣ ପାଇଁ 'ସଖୀ ସମାଜ' ନାମରେ ଏକ ସାମାଜିକ - ସାଂସ୍କୃତିକ ସଂଗଠନ କଲିକତାରେ ସନ ୧୮୮୬ରେ ଗଠନ କରାଯାଇଥିଲା । ଏହାର ପ୍ରାଣ ପ୍ରତିଷ୍ଠାତ୍ରୀ ଥିଲେ - ସ୍ୱର୍ଣ୍ଣ କୁମାରୀ

ଦେବୀ । ସେତେବେଳର ପ୍ରଖ୍ୟାତ ପତ୍ରିକା - 'ଭାରତୀ'ର ସଂପାଦନା କାର୍ଯ୍ୟ ସେ ପରିଚାଳନା କରୁଥିଲେ । ସନ ୧୮୮୯ରେ କାଦମ୍ବିନୀ ଗାଙ୍ଗୁଲିଙ୍କୁ କଂଗ୍ରେସ ଦଳ ବିଶିଷ୍ଟ କର୍ମକର୍ତ୍ତାଭାବେ ଗ୍ରହଣ କରି ନେଇଥିଲା । ଶ୍ରୀମତୀ ଗାଙ୍ଗୁଲୀ ଥିଲେ ଜଣେ ଡାକ୍ତରାଣୀ, ଭାରତରେ ଚିକିତ୍ସା ବିଜ୍ଞାନର ପ୍ରଥମ ଗ୍ରାଜୁଏଟ୍ । ସନ ୧୯୨୫ରେ ଶ୍ରୀମତୀ ସରୋଜିନୀ ନାଇଡୁ କଂଗ୍ରେସ ଅଧିବେଶନର ସଭାପତିପଦ ଅଳଂକୃତ କରିଥିଲେ । ସନ ୧୮୮୯ରେ ଡାକ୍ତର କାଦମ୍ବିନୀ ଗାଙ୍ଗୁଲୀଙ୍କର କଂଗ୍ରେସର କର୍ମକର୍ତ୍ତାଭାବେ ଯୋଗଦାନ ଦିନରୁ ହିଁ ମହିଳାମାନଙ୍କର ସକ୍ରିୟ ଭୂମିକା ସ୍ପଷ୍ଟତର ହୋଇ ଉଠିଲା । ଜବାହରଲାଲ ନେହେରୁଙ୍କ କନ୍ୟା ଇନ୍ଦିରା ପ୍ରିୟଦର୍ଶନୀ ବାନର ସେନାରେ ସାମିଲ ହୋଇ ସ୍ୱାଧୀନତା - ସେତୁବନ୍ଧ ନିର୍ମାଣରେ ଗୁଣ୍ଡୁଚି ମୂଷା ପରି ବାଲୁକାରେଣୁ ଦାନ ପ୍ରକ୍ରିୟା ଜାରି ରଖିଥିଲେ । ସ୍ୱାଧୀନତା ପାଇଁ କନକଲତା ବରୁଆ ଓ ମାତାଗ୍ନି ହାଜରା ଶହୀଦ ହୋଇଥିଲେ ।

ସନ ୧୮୮୯ରୁ ୧୯୪୭ - ପାଖାପାଖି ୫୯ ବର୍ଷର ତୀବ୍ର ସଂଗ୍ରାମ ଇତିହାସର ଲିଖିତ ଫର୍ଦ୍ଦମାନଙ୍କରେ ଉପରଲିଖିତ ମୁଖ୍ୟ ବ୍ୟକ୍ତିତ୍ୱମାନଙ୍କୁ ଦେଖିବାକୁ ମିଳେ । ଅଲିଖିତ ଇତିହାସ ତ ଅନେକ ଅଛି । ମୂକ କରି ରଖା ଯାଇଥିବା ମହିଳାମାନେ ସ୍ୱାଧୀନତାର ସ୍ୱାଦ ପାଇବା ପାଇଁ ପ୍ରଗଳ୍ଭ ହୋଇ ଉଠିଥିଲେ ଯେପରି । ଶିକ୍ଷାର ଆଲୋକକ୍ରମେ ମହିଳାମାନଙ୍କର ସ୍ୱର ହୋଇ ଉଠିଥିଲା ସ୍ୱଷ୍ଟ - ମାର୍ଜିତ ଓ ଆବେଦନଶୀଳ । ମହିଳାମାନେ ନିଜ ନିଜର ଅଜାଣତରେ ଇତିହାସ ପୃଷ୍ଠାରେ ନିଜ ପାଇଁ ସ୍ଥାନ ସ୍ଥିର କରିଯାଇଛନ୍ତି । ସ୍ୱାଧୀନତା ପ୍ରାପ୍ତିରେ ସେମାନଙ୍କର ଭୂମିକାକୁ ଅସ୍ୱୀକାର କରିବା ଅର୍ଥ ସ୍ୱାଧୀନତା ଆନ୍ଦୋଳନକୁ ଅସ୍ୱୀକାର କରିବା । ଅତଏବ ମହିଳାମାନଙ୍କର ଭୂମିକା ସର୍ବସ୍ୱୀକାର୍ଯ୍ୟ ।

ଟିଚର ଏଡୁକେଟର
ଡି.ଆଇ.ଇ.ଟି., ଟୀକାବାଲି
କନ୍ଧମାଳ

---

# ଆମ ଦେଶ ଭାରତ

କାଞ୍ଚନ ମିଶ୍ର

ଆମ ଜନ୍ମଭୂମି ସୁନାର ଭାରତ
ଅତୀତରେ ଏହି ଦେଶ
ଲଭିଥିଲା ଖ୍ୟାତି ସମଗ୍ର ବିଶ୍ୱରେ
ସାକ୍ଷୀତାର ଇତିହାସ ।

ସୁନାର ଭାରତ ଦେଖି ଆମ ଦେଶ
ସାତ ସମୁଦର ଡେଇଁ
ବିଦେଶୀ ଆସିଲେ ବେପାର କରିଲେ
ଧନ, ରତ୍ନ ନେଲେ ବୋହି ।

ଫିରିଙ୍ଗ ଶାସନ ଚାଲିଲା ଦେଶରେ
ନପାରିଲେ କେହି ସହି,
ଗରଜି ଉଠିଲେ ଦେଶର ଜନତା
ସ୍ୱାଧୀନତା ଲାଭ ପାଇଁ ।

ଜନ୍ମ ମାଟି ଡାକେ ଉଠରେ ସନ୍ତାନ
ଭାରତର ବୀରପୁଅ
ମିଳିମିଶି ରକ୍ଷା କରିବା ଦେଶକୁ
ନକରି ମନରେ ଭୟ ।

ଇଂରେଜ ଗୁଳିରେ କେତେ ନରନାରୀ
ଭୂଇଁରେ ପଡ଼ିଲେ ଶୋଇ,
ଭାରତ ମାତାର ନାଆଁ ରଖିଗଲେ
ରହିଲେ ଅମର ହୋଇ ।

ଭାରତ ଆମର ଜୀବନର ଧନ,
ଏ ଦେଶ ଆମର ଗର୍ବ,
ମରିଯିବା ପଛେ ଡରିଯିବା ନାହିଁ,
ଦେଖିବା ତା'ପାଇଁ ସ୍ୱର୍ଗ ।

ଉଣେଇଶ ଶହ ସତଚାଳିଶରେ
ଅଗଷ୍ଟ ପନ୍ଦର ଦିନ
ଇଂରେଜ ହଟିଲେ ଏ ଦେଶ ମାଟିରୁ
ଭାରତ ହେଲା ସ୍ୱାଧୀନ ।

ଦେଶବାସୀମାନେ ଆନନ୍ଦ ହୋଇଲେ,
ବଜାଇ ବିବିଧ ବାଜା
ସ୍ୱାଧୀନ ଦେଶରେ ଭାରତ ମାତାର
ଉଡ଼ିଲା ତ୍ରିରଙ୍ଗା ଧ୍ୱଜା ।

ୟୁନିଟ୍-୯
ଭୁବନେଶ୍ୱର-୨୨

# ଭାରତର ମୁକ୍ତି ସଂଗ୍ରାମରେ ଦାଣ୍ଡିଯାତ୍ରା

ବିଜୟ କୁମାର ଦାଶ

**ଭା**ରତର ସ୍ୱାଧୀନତା ସଂଗ୍ରାମରେ ଜାତିର ପିତା ମହାତ୍ମା ଗାନ୍ଧୀ ଜଣେ ଅନନ୍ୟ ଅଗ୍ରଦୂତ ଥିଲେ । ଏହି ମହାସମରରେ ସେ ସତ୍ୟ ଏବଂ ଅହିଂସାର ବ୍ରହ୍ମାସ୍ତ୍ର ପ୍ରୟୋଗ କରି ବିଜୟ ହାସଲ କରିଥିଲେ ଏବଂ ତମସାଚ୍ଛନ୍ନ ପରାଧୀନ ଭାରତ ପାଇଁ ମୁକ୍ତିର ସୂର୍ଯ୍ୟୋଦୟ ଆଣିଥିଲେ । ଭାରତର ସ୍ୱାଧୀନତା ଆନ୍ଦୋଳନ କାଳରେ ମହାତ୍ମା ଗାନ୍ଧୀ ଅନେକ ଆନ୍ଦୋଳନର ନେତୃତ୍ୱ ନେଇଥିଲେ । ତନ୍ମଧ୍ୟରୁ ତାଙ୍କର ଐତିହାସିକ ଦାଣ୍ଡିଯାତ୍ରା ଏକ ପ୍ରମୁଖ ଘଟଣା ଅଟେ । ଲୁଣ ଏକ ନିତ୍ୟ ବ୍ୟବହାର୍ଯ୍ୟ ଅତ୍ୟାବଶ୍ୟକୀୟ ପଦାର୍ଥ ହୋଇଥିଲେ ହେଁ ତାହା ଜନସାଧାରଣ ପ୍ରସ୍ତୁତ କରିବା ଆଇନ ବିରୁଦ୍ଧ ବୋଲି ତତ୍କାଳୀନ ବ୍ରିଟିଶ୍ ସରକାର ଘୋଷଣା କରିଥିଲେ । ତେଣୁ ଗାନ୍ଧିଜୀ ଆରବସାଗର ଉପକୂଳରେ ଦାଣ୍ଡି ନାମକ ସ୍ଥାନରେ ଲବଣ ପ୍ରସ୍ତୁତ କରି ବ୍ରିଟିଶ ସରକାରଙ୍କର ଲବଣ ଆଇନକୁ ଅମାନ୍ୟ କରିବା ପାଇଁ ସ୍ଥିର କରିଥିଲେ । ୧୯୨୮ରେ ଗାନ୍ଧିଜୀ ଯେତେବେଳେ ଭାରତର ପ୍ରତ୍ୟକ୍ଷ ରାଜନୀତିରେ ପୁନଃପ୍ରବେଶ କଲେ, ସେତେବେଳେ ୧୯୩୦ ମସିହାରେ ସେ ଆଇନ ଅମାନ୍ୟ ଆନ୍ଦୋଳନ ପାଇଁ ଡାକରା ଦେଇଥିଲେ । ଗାନ୍ଧିଜୀଙ୍କର ଏହି ଦାଣ୍ଡିଯାତ୍ରାକୁ ସୁଭାଷ ବୋଷ ନେପୋଲିଅନଙ୍କର ଏଲ୍‌ବା ପ୍ରତ୍ୟାବର୍ତ୍ତନ ପରେ ପ୍ୟାରିସ୍ ଅଭିଯାନ ସହ ତୁଳନା କରିଥିଲେ । ମାର୍ଚ୍ଚ ୧୨, ୧୯୩୦ରେ ଐତିହାସିକ ଦାଣ୍ଡିଯାତ୍ରାରୁ ହିଁ ଗାନ୍ଧିଜୀଙ୍କର ଆଇନ ଅମାନ୍ୟ ଆନ୍ଦୋଳନ ଆରମ୍ଭ ହୋଇଥିଲା । ମାର୍ଚ୍ଚ ୧୧ ତାରିଖ ୧୯୩୦ରେ ଅହମଦାବାଦ୍‌ର ସାବରମତୀ ନଦୀକୂଳରେ ଦଶ ହଜାର ଜନତା ସନ୍ଧ୍ୟା ପ୍ରାର୍ଥନା ନିମିତ୍ତ ସମବେତ ହୋଇଥିଲେ । ପ୍ରାର୍ଥନା ସଭା ପରେ ସମବେତ ଜନତାଙ୍କୁ ମହାତ୍ମା ଗାନ୍ଧୀ ତାଙ୍କର ଦାଣ୍ଡିଯାତ୍ରା ସଂପର୍କରେ ସତ୍ୟାଗ୍ରହ ଓ ଅହିଂସାର ମନ୍ତ୍ର ସହ ଯେଉଁ ପ୍ରଭାବଶାଳୀ, ଗାମ୍ଭୀର୍ଯ୍ୟପୂର୍ଣ୍ଣ, ଭାବପ୍ରବଣ, କାଳଜୟୀ ସମ୍ବୋଧନ କରିଥିଲେ, ତାହା ନିମ୍ନରେ ବର୍ଣ୍ଣନା କରାଗଲା । ଏହି ଭାଷଣରେ ଗାନ୍ଧିଜୀ ସମାଜରେ ଗୋଟିଏ ଅହିଂସା ଆନ୍ଦୋଳନର ପ୍ରକୃତ ରୂପରେଖ ସଂପର୍କରେ ଚିତ୍ର ପ୍ରଦାନ କରିଛନ୍ତି ।

"ଏହା ହୁଏତ ଆପଣମାନଙ୍କୁ ମୋର ଶେଷ ସମ୍ବୋଧନ, ଯଦିବା ସରକାର ଆସନ୍ତା କାଲି ପ୍ରଭାତରେ ମୋତେ ପଦଯାତ୍ରା ପାଇଁ ଅନୁମତି ଦିଅନ୍ତି, ତଥାପି ଏହା ହିଁ ମୋର ପବିତ୍ର ସାବରମତୀ ନଦୀ କୂଳରେ ଶେଷ ସମ୍ବୋଧନ ହେବ । ସମ୍ଭବତଃ, ଏହା ହିଁ ମୋ ଜୀବନର ଶେଷ ଶବ୍ଦ ।



ଗତକାଲି ମୁଁ ଆପଣମାନଙ୍କୁ ମୋର ଯାହା କହିବାର ଥିଲା ସବୁ କହିଥିଲି । ଆଜି କେବଳ ମୁଁ ଏତିକି କହିବି ଯେ, ମୁଁ ଏବଂ ମୋର ସାଥୀମାନେ ଗିରଫ ହେବା ପରେ ଆପଣମାନେ କ'ଣ କରିବା ଉଚିତ । ଜଲାଲପୁରକୁ ଯାତ୍ରା କରିବାର ପୂର୍ବ ଯୋଜନାକୁ ନିଶ୍ଚିତ ଭାବରେ ସାକାର କରାଯିବ । ଏଥିପାଇଁ ସ୍ୱେଚ୍ଛାସେବୀମାନଙ୍କର ଚିଠା ପ୍ରସ୍ତୁତି କେବଳ ଗୁଜରାଟ ମଧ୍ୟରେ ସୀମିତ ରହିବ । ଗତ ପନ୍ଦରଦିନ ମଧ୍ୟରେ ମୁଁ ଯାହା ଦେଖିଛି ଆଉ ଶୁଣିଛି ମୁଁ ବିଶ୍ୱାସ କରିବାକୁ ବାଧ୍ୟ ହେଉଛି ଯେ ଆଇନ ଅମାନ୍ୟକାରୀଙ୍କର ସ୍ରୋତ ଅବ୍ୟାହତ ରହିବ । କିନ୍ତୁ ଆମେ ସମସ୍ତେ ଗିରଫ ହେବା ପରେ ମଧ୍ୟ ଶାନ୍ତି ଶୃଙ୍ଖଳା ଭଂଗ ହେବା ଉଚିତ ନୁହେଁ । ଗୋଟିଏ ସଂପୂର୍ଣ୍ଣ ଅହିଂସ ସଂଘର୍ଷ ପାଇଁ ଆମେ ଆମର ସମସ୍ତ ସମ୍ବଳର ସୁବିନିଯୋଗ କରିବା । ଆମ ଭିତରୁ କେହି କ୍ରୋଧବଶତଃ କିଛି ଭୁଲ୍ କରିବା ଉଚିତ୍ ନୁହେଁ । ଏହା ହେଉଛି ମୋର ଆଶା ଓ ପ୍ରାର୍ଥନା । ମୁଁ ଆଶା କରୁଛି ମୋର ଏହି ବାର୍ତ୍ତା ପ୍ରତିଟି କୋଣ, ଅନୁକୋଣରେ ପହଞ୍ଚିବ । ମୁଁ ଆଉ ମୋର ବନ୍ଧୁମାନେ କେହି ନ ରହିଲେ ବି ମୋର ଦାୟିତ୍ୱ ସଂପନ୍ନ କରିବାକୁ ହେବ । ଏହା ପରେ କଂଗ୍ରେସ କାର୍ଯ୍ୟକାରୀ କମିଟି ଆପଣଙ୍କୁ ବାଟ ଦେଖାଇବ ଏବଂ ଏହାର ନେତୃତ୍ୱକୁ ଅନୁସରଣ କରିବା ଆପଣମାନଙ୍କ ଉପରେ ନିର୍ଭର କରୁଛି । ଯେପର୍ଯ୍ୟନ୍ତ ମୁଁ ଜଲାଲ୍‌ପୁରରେ ପହଞ୍ଚି ନାହିଁ, ସେ ପର୍ଯ୍ୟନ୍ତ କଂଗ୍ରେସ

ମୋ' ଉପରେ ନ୍ୟସ୍ତ କରିଥିବା ଦାୟିତ୍ୱର ବିରୋଧରେ କିଛି କରାଯିବା ଉଚିତ ନୁହେଁ । କିନ୍ତୁ ମୁଁ ଥରେ ଗିରଫ୍ ହୋଇଗଲେ ସଂପୂର୍ଣ୍ଣ ଦାୟିତ୍ୱ କଂଗ୍ରେସକୁ ଚାଲିଯିବ । ମୁଁ ଗିରଫ ହେବା ମାତ୍ରେ ମୋର କଂଗ୍ରେସ ସହ ସଂପର୍କର ପରିସମାପ୍ତି ଘଟିବ । ସେ ସମୟରେ ସ୍ୱେଚ୍ଛାସେବୀମାନଙ୍କର ପଂଜିକରଣ କୋହଳ ହେବା ଉଚିତ ନୁହେଁ । ଯେଉଁଠାରେ ସମ୍ଭବ ସେହିଠାରେ ଲବଣ ଆଇନ ଅମାନ୍ୟ କାର୍ଯ୍ୟକ୍ରମ ଆରମ୍ଭ ହେବା ଉଚିତ । ଏହି ଆଇନକୁ ତିନୋଟି ଉପାୟରେ ବିରୋଧ କରାଯାଇପାରିବ । ଯେଉଁଠାରେ ଲୁଣ ପ୍ରସ୍ତୁତ କରିବାର ସୁବିଧା ରହିଛି, ସେଠାରେ ଲୁଣ ପ୍ରସ୍ତୁତ କରିବା ଦୋଷାବହ ଅଟେ । ଚୋରାରେ ଲୁଣ ଗଚ୍ଛିତ କରି ରଖିବା ଏବଂ ବିକ୍ରି କରିବା ମଧ୍ୟ ଦୋଷାବହ ଅଟେ ଯଦିଓ ତାହା ପ୍ରାକୃତିକ ଲୁଣ ଅଟେ । ଏହି ଲୁଣ କିଣୁଥିବା କ୍ରେତା ମଧ୍ୟ ସମାନ ପରିମାଣରେ ଦୋଷୀ ଅଟନ୍ତି । ସଂକ୍ଷେପରେ କହିବାକୁ ଗଲେ, ଲୁଣର ଏକଚାଟିଆ କାରବାର ଭାଙ୍ଗିବା ପାଇଁ ଆପଣମାନେ ଏ ସବୁରୁ ଯେକୌଣସି ଗୋଟିଏ ବା ସମସ୍ତ ପଦକ୍ଷେପ ନେଇପାରନ୍ତି ।

ଆମେ କେବଳ ଏତିକିରେ ସନ୍ତୁଷ୍ଟ ହେବା ଉଚିତ ନୁହେଁ । କଂଗ୍ରେସର କୌଣସି ନିଷେଧାଦେଶ ନାହିଁ ଏବଂ ଯେଉଁଠାରେ ସ୍ଥାନୀୟ କର୍ମୀମାନଙ୍କର ଆତ୍ମ ବିଶ୍ୱାସ ରହିଛି ଅନ୍ୟାନ୍ୟ ଗ୍ରହଣଯୋଗ୍ୟ ପଦକ୍ଷେପ ନିଆଯାଇପାରିବ । ମୁଁ କେବଳ ଗୋଟିଏ ସର୍ତ୍ତରେ ଗୁରୁତ୍ୱ ଦେଉଛି । ମୁଖ୍ୟତଃ, 'ସ୍ୱରାଜ୍ୟ' ହାସଲ କରିବା ପାଇଁ ଆମ ନିକଟରେ କେବଳ ସତ୍ୟ ଏବଂ ଅହିଂସାର ସଂକଳ୍ପର ମାର୍ଗ ରହିଛି । ଅନ୍ୟମାନଙ୍କ ପାଇଁ ସେମାନଙ୍କର ସ୍ୱାଧୀନତା ରହିଛି । କିନ୍ତୁ ଏହାର ଅର୍ଥ ନୁହେଁ ଯେ ଅନ୍ୟମାନେ ନିଜ ଇଚ୍ଛାମୁତାବକ କାର୍ଯ୍ୟ କରିବେ । ଯେଉଁଠାରେ ସ୍ଥାନୀୟ ନେତା ଥିବେ, ସେଠାରେ ଜନସାଧାରଣ ସେମାନଙ୍କ ନିର୍ଦ୍ଦେଶ ମାନିବେ । ଯେଉଁଠାରେ କୌଣସି ନେତା ନଥିବେ ଏବଂ ଯେଉଁଠାରେ ମୁଷ୍ଟିମେୟ ଲୋକଙ୍କର ଏହି ଯୋଜନା ଉପରେ ବିଶ୍ୱାସ ଥିବ ଏବଂ ସେମାନଙ୍କର ପର୍ଯ୍ୟାପ୍ତ ଆତ୍ମବିଶ୍ୱାସ ଥିବ, ସେମାନେ ଯାହା ଚାହିଁବେ ତାହା କରିପାରିବେ । ସେମାନଙ୍କର ଏହା ଅଧିକାର ନୁହେଁ ବରଂ ଏକ କର୍ତ୍ତବ୍ୟ ଅଟେ । ବିଶ୍ୱର ଇତିହାସ କେବଳ ସେସବୁ ବ୍ୟକ୍ତିମାନଙ୍କର ଦୃଷ୍ଟାନ୍ତରେ ପରିପୂର୍ଣ୍ଣ ଯେଉଁମାନେ କେବଳ ଦୃଢ଼ ଆତ୍ମବିଶ୍ୱାସ, ସାହସ ଏବଂ ସଂକଳ୍ପ ବଳରେ ନେତୃତ୍ୱ ହାସଲ କରିଛନ୍ତି । ଆମ୍ଭେମାନେ ମଧ୍ୟ ଯଦି ଆନ୍ତରିକତାର ସହ ସ୍ୱରାଜ୍ୟ ପାଇଁ ଆଗ୍ରହୀ ଏବଂ ଏହାକୁ ହାସଲ କରିବା ପାଇଁ ବାସ୍ତବରେ ଅଧୈର୍ଯ୍ୟ, ତା'ହେଲେ ଆମର ମଧ୍ୟ ସେହିପରି ଆତ୍ମ ବିଶ୍ୱାସ ରହିବା ଉଚିତ । ସରକାର ଆମକୁ ଯେତେ ଅଧିକ ଗିରଫ କରିବେ, ଆମର ହୃଦୟ ମଧ୍ୟ ଅଧିକରୁ ଅଧିକ ଦୃଢ଼ ହେବା ଉଚିତ ।

ଏହାବ୍ୟତୀତ ଅନ୍ୟାନ୍ୟ ବିଭିନ୍ନ ମାର୍ଗରେ ଅନେକ କିଛି କରିହେବ । ମଦ ଏବଂ ବିଦେଶୀ ଲୁଗା ଦୋକାନରେ ପିକେଟିଂ କରି ହେବ । ଯଦି ଆମର ଆବଶ୍ୟକୀୟ ସାମର୍ଥ୍ୟ ଥାଏ, ଆମେ କର ଦେବାକୁ ମନା କରିଦେବା । ଓକିଲମାନେ ତାଙ୍କ ଆଇନ ବ୍ୟବସାୟ ଛାଡ଼ି ଦେବେ । ଜନସାଧାରଣ ଆଇନଗତ ବିବାଦରୁ ଊର୍ଦ୍ଧ୍ୱରେ ରହି ଅଦାଲତ ବର୍ଜନ କରିବେ । ସରକାରୀ ଚାକିରିଆମାନେ ସେମାନଙ୍କ ପଦବୀରୁ ଇସ୍ତଫା ଦେବେ । ଚତୁର୍ଦ୍ଦିଗରେ ବିଷାଦର ରାଜୁତି ମଧ୍ୟରେ ଲୋକମାନେ ନିଯୁକ୍ତି ହରାଇବା ଭୟରେ ଥରି ଉଠିବେ । ଏପରି ଲୋକମାନେ ସ୍ୱରାଜ୍ୟ ପାଇଁ ଅଯୋଗ୍ୟ । କିନ୍ତୁ କାହିଁକି ଏ ବିଷାଦ ? ଦେଶରେ ସରକାରୀ ଚାକିରିଆଙ୍କ ସଂଖ୍ୟା କିଛି ଲକ୍ଷରୁ ଅତିକ୍ରମ କରିବ ନାହିଁ । ଅନ୍ୟମାନଙ୍କ କଥା କ'ଣ କହିବା ? ସେମାନେ କେଉଁଆଡ଼େ ଯିବେ ? ଏପରିକି ସ୍ୱାଧୀନ ଭାରତ ମଧ୍ୟ ଅଧିକ ସଂଖ୍ୟକ ସରକାରୀ ଚାକିରିଆଙ୍କୁ ଗ୍ରହଣ କରିବାକୁ ସକ୍ଷମ ହୋଇପାରିବ ନାହିଁ । ଜଣେ ଜିଲ୍ଲାପାଳଙ୍କର ଏତେ ଭୃତ୍ୟ ଆବଶ୍ୟକ ପଡ଼ିବ ନାହିଁ, ଯାହା ଆଜି ତାଙ୍କର ଆବଶ୍ୟକ ହେଉଛି । ସେ ନିଜେ ନିଜର ଭୃତ୍ୟ ହେବେ । ଆମର ଅୟୁତ ବୁଭୁକ୍ଷୁ ଜନତା ଏପରି ବିପୁଳ ବ୍ୟୟଭାରକୁ କୌଣସି ଉପାୟରେ ବହନ କରିପାରିବେ ନାହିଁ । ତେଣୁ ପ୍ରକୃତରେ ଯଦି ଆମେ ସଚେତନ ତା'ହେଲେ ଆସନ୍ତୁ ସରକାରୀ ନିଯୁକ୍ତିକୁ ବିଦାୟ ଦେବା । ସେ ପଦବୀଟି ଜଜ୍‌ର ହେଉ ବା ପିଅନର । କିଛି ପାର୍ଥକ୍ୟ ନାହିଁ । ଯେଉଁମାନେ ସମସ୍ତେ ସରକାରଙ୍କୁ ବିଭିନ୍ନ ଉପାୟରେ ସହଯୋଗ କରୁଛନ୍ତି, କର ପ୍ରଦାନ କରୁଛନ୍ତି, ଉପାଧି ଗ୍ରହଣ କରୁଛନ୍ତି, ପିଲାମାନଙ୍କୁ ଇଂରାଜୀ ବିଦ୍ୟାଳୟକୁ ପଠାଉଛନ୍ତି, ସେମାନେ ସମସ୍ତେ ସେମାନଙ୍କର ସହଯୋଗ ପ୍ରତ୍ୟାହାର କରି ଆଣନ୍ତୁ । ଏହାପରେ ଏପରି ମହିଳାମାନେ ଅଛନ୍ତି, ଯେଉଁମାନେ ଏହି ସଂଗ୍ରାମରେ ପୁରୁଷ ସହ କାନ୍ଧରେ କାନ୍ଧ ମିଳାଇ ଛିଡ଼ା ହେବେ ।

ଆପଣମାନେ ଏହାକୁ ମୋର ଅଭିଳାଷ ଭାବରେ ଗ୍ରହଣ କରିପାରନ୍ତି । ମୋର ପଦଯାତ୍ରା ବା ଜେଲ୍‌କୁ ଯିବାର ପର୍ବ ଆରମ୍ଭ ହେବା ପୂର୍ବରୁ ମୁଁ ଏହି ବାର୍ତ୍ତା ଦେବାକୁ ଚାହୁଁଥିଲି । ଆସନ୍ତା କାଲି ପ୍ରଭାତରେ ଯେଉଁ ସଂଗ୍ରାମ ଆରମ୍ଭ ହେବାକୁ ଯାଉଛି, ମୁଁ ଯଦି ସେହି ସମୟ ପୂର୍ବରୁ ଗିରଫ ହୋଇଥାଏ, ତାହା ସ୍ଥଗିତ ବା ପ୍ରତ୍ୟାହାର ନ ହେବା ମୁଁ ଆଶା କରେ । ମୁଁ ସେହି ସନ୍ଦେଶକୁ ଆଗ୍ରହର ସହ ଅପେକ୍ଷା କରିବି ଯେ ମୋର ସାଥୀମାନେ ଗିରଫ ହେବା ମାତ୍ରେ ଆହୁରି ଦଶଟି ଦଳ ଗିରଫ ପାଇଁ ପ୍ରସ୍ତୁତ ଥିବେ । ଭାରତରେ ଏପରି ଲୋକ ଅଛନ୍ତି, ଯେଉଁମାନେ ମୋ ଦ୍ୱାରା ଆରମ୍ଭ ହୋଇଥିବା କାର୍ଯ୍ୟକୁ ସେମାନେ ପୂର୍ଣ୍ଣାଙ୍ଗ କରିପାରିବେ । ସେ ବିଶ୍ୱାସ ମୋର ଅଛି । ଆମ ସମସ୍ୟାର ଯଥାର୍ଥତା ଏବଂ ଅସ୍ତ୍ରର ଶୁଦ୍ଧତା ଉପରେ ମୋର ବିଶ୍ୱାସ ଅଛି । ଯେଉଁଠାରେ ମାଧ୍ୟମଗୁଡ଼ିକ ସ୍ୱଚ୍ଛ, ଈଶ୍ୱର ସେଠାରେ ତାଙ୍କର ଆଶୀର୍ବାଦ ସହ ନିଃସନ୍ଦେହରେ ଉପସ୍ଥିତ ଥାଆନ୍ତି । ଯେଉଁଠାରେ ଏହି ତିନୋଟିର ମିଳନ ହୁଏ, ସେଠାରେ ପରାଜୟ ଅସମ୍ଭବ । ଜଣେ ସତ୍ୟାଗ୍ରହୀ ସବୁବେଳେ ବିଜୟୀ ହୋଇଥାଏ ସେ ମୁକ୍ତ ହେଉ ବା ବନ୍ଦୀ । ଯେତେବେଳେ ସେ ସତ୍ୟ ଓ ଅହିଂସାକୁ ପରିହାର କରେ ଏବଂ ନିଜର

ଅନ୍ତଃସ୍ୱରକୁ କର୍ଣ୍ଣପାତ କରେ ନାହିଁ, ସେତେବେଳେ ସେ ପରାଜିତ ହୁଏ । ଜଣେ ସତ୍ୟାଗ୍ରହୀର ପରାଜୟର ସେ ହିଁ ଏକମାତ୍ର କାରଣ । ଈଶ୍ୱର ଆପଣମାନଙ୍କୁ ଆଶୀର୍ବାଦ କରନ୍ତୁ ଏବଂ ଆସନ୍ତା କାଲି ଆରମ୍ଭ ହେବାକୁ ଥିବା ସଂଗ୍ରାମର ପଥରେ ଥିବା ସମସ୍ତ ପ୍ରତିବନ୍ଧକକୁ ଦୂର କରନ୍ତୁ ।''

ମାର୍ଚ୍ଚ ୧୧ ତାରିଖ ୧୯୩୦ର ଏହି ସମ୍ବୋଧନର ପରଦିନ ଅର୍ଥାତ୍ ମାର୍ଚ୍ଚ ୧୨ ତାରିଖ ୧୯୩୦ରେ ଗାନ୍ଧିଜୀ ତାଙ୍କର ୭୮ ଜଣ ସମର୍ଥକଙ୍କ ସହ ସାବରମତୀ ଆଶ୍ରମରୁ ଦାଣ୍ଡି ଗ୍ରାମକୁ ୩୭୫ କି.ମି. ପଦଯାତ୍ରା କରିଥିଲେ । ଏହି ପଦଯାତ୍ରା ସମୟରେ ପ୍ରତିଦିନ ଗାନ୍ଧିଜୀଙ୍କର ଭାଷଣ ସମ୍ବାଦପତ୍ରରେ ପ୍ରକାଶ ପାଇ ଜନସାଧାରଣଙ୍କ ମନରେ ଗଭୀର ପ୍ରଭାବ ସୃଷ୍ଟି କରିଥିଲା । ଶହ ଶହ ଗ୍ରାମ ଅଧିକାରୀ ସେମାନଙ୍କ ଚାକିରିରୁ ଇସ୍ତଫା ଦେଇଥିଲେ । ଏପ୍ରିଲ୍ ୬ ତାରିଖରେ ଗାନ୍ଧିଜୀ ଦାଣ୍ଡିରେ ପହଞ୍ଚି ଲୁଣ ସଂଗ୍ରହ କରି ଲବଣ ଆଇନ ଭଂଗ କରିଥିଲେ । ସେହିଠାରେ ଗାନ୍ଧିଜୀ ଘୋଷଣା କରିଥିଲେ ଯେ 'ବ୍ରିଟିଶ୍ ଶାସନ ଭାରତ ପରି ଏକ ମହାନ୍ ରାଷ୍ଟ୍ରରେ ନୈତିକ, ଭୌତିକ, ସାଂସ୍କୃତିକ ଏବଂ ଆଧ୍ୟାତ୍ମିକ ଧ୍ୱଂସ ଆଣି ଦେଇଛି । ମୁଁ ଏହାକୁ ଏକ ଅଭିଶାପ ଭାବରେ ବିଚାର କରୁଛି । ମୁଁ ଏହିପରି ସରକାରୀ ବ୍ୟବସ୍ଥାକୁ ଧ୍ୱଂସ କରିବାକୁ ଚାହୁଁଛି । ଆନ୍ଦୋଳନ ହିଁ ମୋର ଧର୍ମ ହୋଇଛି । ଏହା ହେଉଛି ଆମର ଅହିଂସାର ଯୁଦ୍ଧ ।''

ଗାନ୍ଧିଜୀଙ୍କର ଏହି ଆଇନ ଅମାନ୍ୟ ଆନ୍ଦୋଳନ ଦ୍ରୁତ ଗତିରେ ଅଗ୍ନିର ସ୍ଫୁଲିଙ୍ଗ ପରି ଚତୁର୍ଦ୍ଦିଗକୁ ବ୍ୟାପି ଯାଇଥିଲା । ଦେଶର କୋଣ ଅନୁକୋଣରୁ ଜନସାଧାରଣ ଏହି ଅହିଂସା ସଂଗ୍ରାମରେ ସ୍ୱେଚ୍ଛାକୃତ ଭାବରେ ଯୋଗ ଦେଇଥିଲେ । ଲକ୍ଷ ଲକ୍ଷ ଜନତା ସତ୍ୟାଗ୍ରହରେ ଅଂଶ ଗ୍ରହଣ କରିଥିଲେ । ଜନସାଧାରଣ ବିଦେଶୀ ଦ୍ରବ୍ୟ ବର୍ଜନ କରିବା ସହ ସରକାରଙ୍କୁ କର ଦେବା ବନ୍ଦ କରିଦେଲେ । ଏହି ଆନ୍ଦୋଳନର ଏକ ଉଲ୍ଲେଖନୀୟ ବିଷୟ ହେଲା ମହିଳାମାନଙ୍କ ବ୍ୟାପକ ଅଂଶ ଗ୍ରହଣ । ହଜାର ହଜାର ମହିଳା ସେମାନଙ୍କର ଘରର ଚାରିକାନ୍ଥରୁ ବାହାରି ଆସି ସତ୍ୟାଗ୍ରହରେ ଯୋଗ ଦେଇଥିଲେ । ବିଦେଶୀ ବସ୍ତ୍ର ଏବଂ ମଦ ଦୋକାନ ସମ୍ମୁଖରେ ସେମାନେ ପିକେଟିଂ କଲେ ଏବଂ ପୁରୁଷମାନଙ୍କ ସହ କାନ୍ଧରେ କାନ୍ଧ ମିଳାଇ ଶୋଭାଯାତ୍ରାରେ ବାହାରିଲେ । ସମଗ୍ର ବିଶ୍ୱ ଭାରତୀୟ ନାରୀର ଅପୂର୍ବ ବୀରତ୍ୱରେ ସ୍ତମ୍ଭୀଭୂତ ହୋଇପଡ଼ିଥିଲା । ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା ହେଉଛି ଯେ ପେଶ୍ୱାରରେ ଦୁଇ ପ୍ଲାଟୁନ୍ ଗଢ଼୍ୱାଲି ସୈନ୍ୟ ଅହିଂସ ଗଣ ଆନ୍ଦୋଳନକାରୀଙ୍କ ଉପରେ ଗୁଳିଚାଳନା କରିବାକୁ ମନା କରି ଦେଲେ । ଯଦିଓ ଏହି ଆଦେଶ ଅବମାନନା ପାଇଁ ସେମାନଙ୍କୁ କଠୋର କାରାଦଣ୍ଡରେ ଦଣ୍ଡିତ ହେବାକୁ ପଡ଼ିପାରେ ବୋଲି ସେମାନେ ଜାଣିଥିଲେ । ଏହି ଆନ୍ଦୋଳନରେ ଭାରତୀୟ ଜନତାର ବ୍ୟାପକ ସକ୍ରିୟ ଓ ସ୍ୱେଚ୍ଛାକୃତ ଅଂଶ ଗ୍ରହଣରେ ବିବ୍ରତ ବ୍ରିଟିଶ ସରକାର ସେମାନଙ୍କ ଉପରେ ଅମାନୁଷିକ ଅତ୍ୟାଚାର ଆରମ୍ଭ କରି ଦେଇଥିଲେ । ଗାନ୍ଧିଜୀ ଏବଂ ଅନ୍ୟାନ୍ୟ କଂଗ୍ରେସ ନେତୃବୃନ୍ଦଙ୍କ ସହ ୯୦,୦୦୦ରୁ ଊର୍ଦ୍ଧ୍ୱ ସତ୍ୟାଗ୍ରହୀ ଗିରଫ ହୋଇ କାରାବରଣ କରିଥିଲେ । ସରକାରୀ ହିସାବ ଅନୁଯାୟୀ ଏକ ଶହରୁ ଊର୍ଦ୍ଧ୍ୱ ପ୍ରାଣ ହରାଇଥିଲେ ଏବଂ ତିନି ଶହରୁ ଊର୍ଦ୍ଧ୍ୱ ଲୋକ ପୋଲିସ୍ ଗୁଳିରେ ଆହତ ହୋଇଥିଲେ । ଯଦିଓ ବେସରକାରୀ ହିସାବ ଏହାଠାରୁ ଯଥେଷ୍ଟ ଅଧିକ ଥିଲା, ପୋଲିସ୍‌ର ଲାଠି ଚାଳନାରେ ହଜାର ହଜାର ଜନତାର ହାତ, ଗୋଡ଼ ଭାଙ୍ଗି ଯାଇଥିଲା ଏବଂ ମୁଣ୍ଡ ଫାଟି ଯାଇଥିଲା । ଦକ୍ଷିଣ ଭାରତରେ ଯେଉଁ ଲୋକମାନେ ଖଦୀ ଏବଂ ଗାନ୍ଧୀ ଟୋପି ପିନ୍ଧୁଥିଲେ ପୋଲିସ୍ ସେମାନଙ୍କୁ ନିର୍ମମ ପ୍ରହାର କରୁଥିଲା ।

ମହାତ୍ମା ଗାନ୍ଧୀଙ୍କର ଲବଣ ସତ୍ୟାଗ୍ରହର ଡାକରା ଓଡ଼ିଶାରେ ମଧ୍ୟ ବ୍ୟାପକ ଜନଜାଗରଣ ସୃଷ୍ଟି କରିଥିଲା । ୧୯୩୦ ମସିହା ମାର୍ଚ୍ଚ ୧୬ ତାରିଖରେ 'ଉତ୍କଳ ପ୍ରଦେଶ କମିଟି'ର ବାଲେଶ୍ୱର ଅଧିବେଶନରେ ଗୋପବନ୍ଧୁ ଚୌଧୁରୀଙ୍କ ନେତୃତ୍ୱରେ ଲବଣ ସତ୍ୟାଗ୍ରହ ଆରମ୍ଭ ନିଷ୍ପତ୍ତି ନିଆଯାଇଥିଲା । ବାଲେଶ୍ୱର ଜିଲ୍ଲାର ରେମୁଣା ବ୍ଲକ୍ ଅନ୍ତର୍ଗତ ଇଞ୍ଚୁଡ଼ି ଗ୍ରାମକୁ ସତ୍ୟାଗ୍ରହ ପାଇଁ ମନୋନୀତ କରାଯାଇଥିଲା । ଗୋପବନ୍ଧୁ ଚୌଧୁରୀ ଓ ଆଚାର୍ଯ୍ୟ ହରିହର ଦାଶଙ୍କ ନେତୃତ୍ୱରେ ୨୧ ଜଣ ସତ୍ୟାଗ୍ରହୀ ପ୍ରଥମ ପର୍ଯ୍ୟାୟରେ ସାତ ଦିନରେ ୧୨୦ ମାଇଲ୍ ଯାତ୍ରା କରି ୧୩।୪।୧୯୩୦ରେ ସେମାନେ ଇଞ୍ଚୁଡ଼ିଠାରେ ପହଞ୍ଚି ଲବଣ ଆଇନ ଭଂଗ କରିଥିଲେ । ସେହିପରି ମହାନ୍ ସର୍ବୋଦୟ ନେତା, ସଂଗ୍ରାମୀ ପୁରୁଷ ମନମୋହନ ଚୌଧୁରୀ ମାତ୍ର ୧୫ ବର୍ଷ ବୟସରେ ଲବଣ ସତ୍ୟାଗ୍ରହରେ ଯୋଗଦାନ କରି ୧୯୩୦ ମସିହା ନଭେମ୍ବର ୧୬ ତାରିଖରେ ପିତା ଗୋପବନ୍ଧୁ ଚୌଧୁରୀ ଏବଂ ମା' ମାଳତୀ ଚୌଧୁରୀଙ୍କ ସହ ଗିରଫ ହୋଇଥିଲେ । କୁଜଂଗ, ଅସ୍ତରଂଗ, ପୁରୀ ଜିଲ୍ଲାର କୁହୁଡ଼ି ଏବଂ ଗଂଜାମର ହୁମାଠାରେ ଏହି ସତ୍ୟାଗ୍ରହ ତୀବ୍ର ଆକାର ଧାରଣ କରିଥିଲା । ବିଭିନ୍ନ ସ୍ଥାନରେ ମରାଯାଉଥିବା ଲୁଣ ଗାନ୍ଧୀ ଲୁଣ ନାମରେ ଲୋକମୁଖରେ ପରିଚିତ ଥିଲା ଏବଂ ଏହି ଲୁଣ ବିକ୍ରି କରାଯାଇ ଚାନ୍ଦା ସଂଗ୍ରହ କରାଯାଉଥିଲା । ବିଦେଶୀ ଲୁଗା ଦୋକାନ ଏବଂ ମଦ ଦୋକାନରେ ପିକେଟିଂ ହେଉଥିଲା । ଓଡ଼ିଶାରେ ରମା ଦେବୀ, ମାଳତୀ ଦେବୀ, ସରଳା ଦେବୀ, ପଦ୍ମାବତୀ ଦେବୀ ଆଦି ଅନେକ ମହୀୟସୀ ନାରୀନେତ୍ରୀ ଲବଣ ସତ୍ୟାଗ୍ରହରେ ନେତୃତ୍ୱ ନେଇ ଲୁଣ ମାରି କାରାବରଣ କରିଥିଲେ । ସରଳାଦେବୀ ହୁମାକୁ ଲୁଣ ମାରିବାକୁ


ମାଳତୀ ଚୌଧୁରୀ

ଯିବା ବାଟରେ ଗିରଫ ହୋଇ କାରାବରଣ କରିଥିଲେ । ସତ୍ୟାଗ୍ରହୀମାନେ ପୋଲିସ୍‌ର ନିଷ୍ଠୁର ଦମନଲୀଳାକୁ ଭ୍ରୂକ୍ଷେପ ନ କରି ଆଇନ ଅମାନ୍ୟ ଆନ୍ଦୋଳନରେ ସକ୍ରିୟ ଅଂଶଗ୍ରହଣ କରିଥିଲେ ।

ଶେଷରେ ଏହି ଆନ୍ଦୋଳନକୁ ପ୍ରଶମିତ କରିବା ପାଇଁ ୧୯୩୧ ମସିହା ମାର୍ଚ୍ଚ ୫ ତାରିଖରେ ଗାନ୍ଧିଜୀ ଓ ଭାଇସ୍‌ରାୟ ଲର୍ଡ଼ ଇର୍‌ୱିନ୍‌ଙ୍କ ମଧ୍ୟରେ ଏକ ଚୁକ୍ତି ସ୍ୱାକ୍ଷରିତ ହୋଇଥିଲା । ଏହାଦ୍ୱାରା ସରକାର ଆଇନ ଅମାନ୍ୟ ଆନ୍ଦୋଳନରେ ସଂଶ୍ଳିଷ୍ଟ ସମସ୍ତ ରାଜନୈତିକ ବନ୍ଦୀଙ୍କୁ ମୁକ୍ତ କରି ଦେବା ପାଇଁ ଏବଂ ସମୁଦ୍ର କୂଳରେ ବାସ କରୁଥିବା ଲୋକମାନଙ୍କୁ ଲବଣ ପ୍ରସ୍ତୁତ କରିବାର ଅଧିକାର ଦେବାକୁ ସମ୍ମତି ପ୍ରଦାନ କଲେ । ଅନ୍ୟପକ୍ଷରେ ଗାନ୍ଧିଜୀ ଆଇନ ଅମାନ୍ୟ ଆନ୍ଦୋଳନ ପ୍ରତ୍ୟାହାର କରି ନେଲେ ଏବଂ ଦ୍ୱିତୀୟ ଗୋଲଟେବୁଲ ବୈଠକରେ କଂଗ୍ରେସର ଯୋଗଦାନ ପାଇଁ ପ୍ରତିଶ୍ରୁତି ଦେଇଥିଲେ । ଭାରତର ମୁକ୍ତି ମହାସମରରେ ଜନସାଧାରଣଙ୍କର ସୁପ୍ତ ଜାତୀୟ ଚେତନାକୁ ଜାଗ୍ରତ କରିବା ସହ ଭାରତୀୟ ନାରୀକୁ ସଶକ୍ତି କରିବାରେ ମହାତ୍ମା ଗାନ୍ଧୀଙ୍କର ଦାଣ୍ଡିଯାତ୍ରା ନିଃସନ୍ଦେହରେ ଏକ ଗୁରୁତ୍ୱପୂର୍ଣ୍ଣ ଏବଂ ଐତିହାସିକ ଘଟଣା ।

**ସହାୟକ ଗ୍ରନ୍ଥସୂଚୀ**


୧. The selected works of Mahatma Gandhi - Vo.V- The voice of Truth - M.K. Gandhi - General Editor - Shriman Narayan - Part-I - Some famous speeches, P.21-24. navjivan Publishing House, Ahmedabad - 14.

୨. A New Look at Modern Indian History - B.L. Grover & S. Grover - S. Chand & Co., Ram Nagar, New Delhi.

୩. Modern India - Bipan Chandra - NCERT Publications.



ଅଧ୍ୟାପକ, ଅର୍ଥନୀତି ବିଭାଗ
ଆଂଚଳିକ ପଂଚାୟତ ମହାବିଦ୍ୟାଳୟ, ସୁଜନପୁର
ଯାଜପୁର - ୭୫୫୦୧୭


# ଭାରତର ସ୍ୱାଧୀନତା

ଦୟାନିଧି ବେହେରା

ଭାରତର ସ୍ୱାଧୀନତା ପାଇଁ
ରକତ ନିଗାଡ଼ି ଦେଇଛନ୍ତି,
ମୋ ଦେଶ ଭାଇ ଭଉଣୀ
ନିଜ ନିଜ ତନୁରୁ ।

କେତେ ନିର୍ଯ୍ୟାତନା ସହିଛନ୍ତି,
ବିଦେଶୀମାନଙ୍କ ଲାଠି
ବନ୍ଧୁକରେ ଫାଟିଛି ତାଙ୍କରି
ପିଠି ଓ ଛାତି ।

ଶପଥ କରୁଛୁ ଆମେ
ଏ ପବିତ୍ର ତ୍ରିରଙ୍ଗା ଛୁଇଁ
ଅକ୍ଷୁଣ୍ଣ ରଖିବୁ ଆମେ
ଏ ଦେଶର କଷ୍ଟଲବ୍ଧ ସ୍ୱାଧୀନତା,
ଏକତା ମନ୍ତ୍ର ଗାଇ ।

ଆମେ ଉଡ଼ାଇବୁ ଶାନ୍ତି କପୋତ
ବିଦେଶେ ଯାଇ କହିବ ସେଇ
ଆମରି ପ୍ରଗତି ଗାଥା,
କଠୋର ହୃଦୟ ତରଳି
ବହିବ ଅମୃତର ଧାରା,
ଆମରି ଆକାଶେ ସୂରୁଯ ହସିବ
ହସିବ ଆମରି ଧରା ।


ବରିଷ୍ଠ ସହାୟକ
ସୂଚନା ଓ ଲୋକ ସଂପର୍କ ବିଭାଗ
ଭୁବନେଶ୍ୱର

# ଭାରତର ପ୍ରଥମ ସଶସ୍ତ୍ର ଆନ୍ଦୋଳନ ଓ ଏହାର ମହାରଥୀ

ଡକ୍ଟର ଜନ୍ମେଜୟ ଚୌଧୁରୀ

**ସା**ରା ଓଡ଼ିଶାରେ ଖୋର୍ଦ୍ଧାର ଏକ ନିଜସ୍ୱ ଐତିହ୍ୟ ଓ ପରମ୍ପରାର ସ୍ୱତନ୍ତ୍ର ସ୍ଥାନ ଥିଲା । ଏହାର ପୃଷ୍ଠଭୂମି ହେଉଛି ଖୋର୍ଦ୍ଧା ଭୋଇ ରାଜବଂଶ କାଳର ସମୃଦ୍ଧ ଇତିହାସ । 'ଔଡ୍ର' ହେଉଛି ଖଣ୍ଡାୟତମାନଙ୍କର ଅନ୍ୟ ଏକ ନାମ । ଏହି ଔଡ୍ର ଶବ୍ଦରୁ ମୁସଲମାନମାନେ ଆମ ଦେଶକୁ 'ଓଡ଼ିଶା' ନାମରେ ନାମିତ କରିଥିଲେ । ଔଡ୍ରମାନଙ୍କର ବସତି ବିଶେଷତଃ ଖୋରଧାରେ ଥିଲା । ସେହି କାରଣରୁ ଅନେକ ଖୋରଧାକୁ 'ଓଡ଼ିଶା' କହିଥାନ୍ତି । ତେଣୁ ଏହି ଦୃଷ୍ଟିରୁ ଓଡ଼ିଶା ରାଜ୍ୟର କେନ୍ଦ୍ରସ୍ଥଳୀ ହେଉଛି ଖୋର୍ଦ୍ଧା । ଖୋର୍ଦ୍ଧା ଇତିହାସ କହିଲେ ମୁଖ୍ୟତଃ ଖୋର୍ଦ୍ଧାର ଭୋଇ ରାଜବଂଶର ରାଜତ୍ୱ କାଳକୁ ହିଁ ବୁଝାଏ ଏବଂ ତାହା ହିଁ ତତ୍କାଳୀନ ଓଡ଼ିଶାର ଇତିହାସ । ଏହାକୁ ମଧ ଦୀର୍ଘ ଅଢ଼େଇ ଶହ ବର୍ଷ ବ୍ୟାପୀ ଓଡ଼ିଶାର ଇତିହାସ ବୋଲି କୁହାଯାଏ । ଓଡ଼ିଆ ଜାତିର ଆରାଧ ଦେବତା ଓ ପ୍ରାଣ ପ୍ରଦୀପ ସ୍ୱୟଂ ଶ୍ରୀଜଗନ୍ନାଥଙ୍କ ଅସ୍ତିତ୍ୱ ସହିତ ସେ ଇତିହାସ ଓତଃପ୍ରୋତଃ ଭାବେ ଜଡ଼ିତ । ତେଣୁ ଖୋର୍ଦ୍ଧାର ସଂସ୍କୃତି ହିଁ ଶ୍ରୀଜଗନ୍ନାଥଙ୍କ ସଂସ୍କୃତି । ଏହି ଖୋର୍ଦ୍ଧା ଏକଦା ଓଡ଼ିଶା ରାଜ୍ୟକୁ ବୁଝାଉଥିଲା । ଯେଉଁ ବୀର ପୁରୁଷମାନଙ୍କର ଗୌରବଗାଥାକୁ ନେଇ ଖୋର୍ଦ୍ଧା ଇତିହାସ ସମୃଦ୍ଧ, ସେମାନଙ୍କ ମଧ୍ୟରେ ଭୋଇ ରାଜବଂଶର ପ୍ରତିଷ୍ଠାତା ଗଜପତି ରାମଚନ୍ଦ୍ର ଦେବ, ସେହି ବଂଶର ଦ୍ୱାଦଶ ରାଜା ମୁକୁନ୍ଦ ଦେବ ଓ ତାଙ୍କ ରାଜଗୁରୁ ଜୟକୃଷ୍ଣ ମହାପାତ୍ର, ସେନାପତି ବକ୍ସି ଜଗବନ୍ଧୁ ବିଦ୍ୟାଧର ଭ୍ରମରବର ମହାପାତ୍ର ଓ ଦେୱାନ କୃଷ୍ଣଚନ୍ଦ୍ର ଭ୍ରମରବର ରାୟଙ୍କ ନାମ ସର୍ବାଗ୍ରେ ଉଲ୍ଲେଖଯୋଗ୍ୟ । ସୂର୍ଯ୍ୟବଂଶ ପରେ ୧୫୪୦ ଖ୍ରୀ:ଅ:ରୁ ୧୫୬୦ ଖ୍ରୀ:ଅ: ପର୍ଯ୍ୟନ୍ତ ଭୋଇ ରାଜବଂଶ ଏବଂ ୧୫୬୦ ଖ୍ରୀ:ଅ:ରୁ ୧୫୬୮ ଖ୍ରୀ:ଅ: ପର୍ଯ୍ୟନ୍ତ ଚାଲୁକ୍ୟ ତେଲେଙ୍ଗା ମୁକୁନ୍ଦ ଦେବ କଟକର ବାରବାଟୀ ଦୁର୍ଗ ଉପରେ ଓଡ଼ିଶାର ସ୍ୱାଧୀନ ଧ୍ୱଜା ଉଡ଼ାଇ ଥିଲେ । ମୁକୁନ୍ଦ ଦେବ ଜଣେ ଅତ୍ୟନ୍ତ ପରାକ୍ରମଶାଳୀ ରାଜା ଓ ବିଚକ୍ଷଣ ଶାସକ ଭାବରେ ମାତ୍ର ୮ ବର୍ଷ ମଧ୍ୟରେ ଓଡ଼ିଶାର ଗୌରବ ବୃଦ୍ଧି କରିଥିଲେ । କିନ୍ତୁ ୧୫୬୮ ଖ୍ରୀ:ରେ ଓଡ଼ିଶାର ଏହି ଶେଷ ସ୍ୱାଧୀନ ରାଜା ମୁକୁନ୍ଦ ଦେବଙ୍କ ମୃତ୍ୟୁପରେ ଓଡ଼ିଶାରେ ରାଜନୈତିକ ଅରାଜକତା ଦେଖାଦେଲା । ତେଣୁ ଏହି ସମୟରେ ବଙ୍ଗଳାର ଆଫ୍‌ଗାନ ସୁଲତାନ ସୁଲେମାନ କରାଣୀ ୧୫୬୮ ଖ୍ରୀ:ଅ:ରେ ଓଡ଼ିଶା ଅଧିକାର କରିଥିଲେ ହେଁ ଦେଶୀୟ ସାମନ୍ତ ରାଜାଗଣ ସ୍ୱାଧୀନ ଥିଲେ । ୧୫୭୨ ଖ୍ରୀ:ଅ:ରେ ସୁଲେମାନ କରାଣୀଙ୍କ ମୃତ୍ୟୁପରେ ତାଙ୍କ ପୁତ୍ର ବାୟାଜିଦ୍ ଓ ତପ୍ରେ ଦାଉଦ୍ ଓଡ଼ିଶାର ଶାସକ ଥିଲେ । ଦିଲ୍ଲୀର ମୋଗଲ ସମ୍ରାଟ ଆକବରଙ୍କ ମନ୍ତ୍ରୀ ତୋଡ଼ରମଲ୍ଲ ଓ ସେନାପତି ମୁନିଫ୍ ଖାଁଙ୍କ ହସ୍ତରେ ୧୫୭୪ ଓ ୧୫୭୬ ଖ୍ରୀ:ଅ:ରେ ପରାସ୍ତ ହୋଇଥିଲେ ଦାଉଦ୍ । ଦିଲ୍ଲୀର ମୋଗଲ ସମ୍ରାଟ ଓ ବଙ୍ଗ ତଥା ଓଡ଼ିଶାର ଆଫ୍‌ଗାନ ଶାସକଙ୍କ ମଧ୍ୟରେ ଦୀର୍ଘ ଦିନ ଧରି କ୍ଷମତା ଯୁଦ୍ଧ ଲାଗିଥିଲା । ମୋଗଲମାନଙ୍କଠାରୁ ପରାଜୟ ବରଣ କରି ସନ୍ଧି ସୂତ୍ରରେ କୁୟା ଖାଁ ଓ କୁତଲୁ ଖାଁ ଲୋହାନୀ ଆଫ୍‌ଗାନ ଶାସକଦ୍ୱୟ ଓଡ଼ିଶାର ଶାସନ କାର୍ଯ୍ୟ ପରିଚାଳନା କରିଥିଲେ । ଏହିପରି ଭାବରେ ପାଞ୍ଚଜଣ ଆଫ୍‌ଗାନ ଶାସକ ଓଡ଼ିଶାକୁ ଶାସନ କରିଥିଲେ । ଏହି ସମୟର ସୁଯୋଗ ନେଇ ଆଫ୍‌ଗାନ ପ୍ରଶାସକ କଳାପାହାଡ଼ ଓଡ଼ିଶାର ବହୁ ହିନ୍ଦୁ ମନ୍ଦିର ସମେତ ଅନେକ ଦେବ ବିଗ୍ରହ ଉପରେ ବାରମ୍ବାର ଅକଥନୀୟ ଆକ୍ରମଣ କରି ଏକ ଆତଙ୍କ ସୃଷ୍ଟି କରିଥିଲା ବୋଲି କଥିତ ଅଛି । ଏହିପରି ବର୍ବରୋଚିତ ମୁହୂର୍ତ୍ତରେ ଓଡ଼ିଶାର ଆରାଧ ଦେବତା ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ କଳାପାହାଡ଼ କବଳରୁ ରକ୍ଷା କରିବା ପାଇଁ ସେବକମାନେ ଶ୍ରୀଜଗନ୍ନାଥଙ୍କୁ ଚିଲିକା ମୁହାଣ ପାରିକରି ଛପଲିହାତୀପଡ଼ାରେ ଗୁପ୍ତରେ ରଖାଇଥିଲେ । ମାତ୍ର ଶ୍ରୀଜଗନ୍ନାଥ ମନ୍ଦିରର ଜନୈକ ରାଜକର୍ମଚାରୀ ତଥା କୋକଳଗଡ଼ର ନାୟକ ଦାନପାତ୍ର କଳାପାହାଡ଼କୁ ଏହି ସନ୍ଧାନ ଦେବାରୁ କଳାପାହାଡ଼



ଏହାର ସୁଯୋଗ ନେଇ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଗଙ୍ଗାକୂଳକୁ ନେଇ ସେଠାରେ ପୋଡ଼ି ଦେଇଥିଲା ଓ ଏହାର ଅର୍ଦ୍ଧଦଗ୍ଧ ବ୍ରହ୍ମାଂଶକୁ ନଦୀରେ ଫିଙ୍ଗି ଦେଇଥିଲା । ଆଫ୍‌ଗାନମାନଙ୍କର ଏହିପରି ଅତ୍ୟାଚାରୀ ମନୋବୃତ୍ତି ଓ ଶ୍ରୀଜଗନ୍ନାଥ ମନ୍ଦିର ଲୁଣ୍ଠନ ଫଳରେ ଓଡ଼ିଶାବାସୀଙ୍କର ସେମାନେ ଅନାଦରର ପାତ୍ର ହୋଇଥିଲେ । ଫଳରେ ରାଜ୍ୟର ସାଧାରଣ ଜନତା ନିଜକୁ ଅସହାୟ ମଣିବା ସହ ଓଡ଼ିଶାର ସାଧାରଣ ଜୀବନ ବିପନ୍ନ ହୋଇଥିଲା । ଦେବାର୍ଶୀବାଦ ସ୍ୱରୂପ ଏହି ଘୋର ଦୁର୍ଦ୍ଦିନ ମୁହୂର୍ତ୍ତରେ ସେହି ଦାରୁଣ ଜାତୀୟ ସଂକଟର ତ୍ରାଣକର୍ତ୍ତା ଭାବେ ଖୋର୍ଦ୍ଧା ମାଟି ଉପରେ ଆବିର୍ଭୂତ ହୋଇଥିଲେ ଓଡ଼ିଶାର ଶେଷ ସ୍ୱାଧୀନ ରାଜା ତେଲେଙ୍ଗା ମୁକୁନ୍ଦ ଦେବଙ୍କ ଦ୍ୱାରା ବନ୍ଦୀ ହୋଇ ବନ୍ଦୀଶାଳାରେ ମୃତ୍ୟୁବରଣ କରିଥିବା ଜନାର୍ଦ୍ଦନ ବିଦ୍ୟାଧରଙ୍କ ଗଞ୍ଜାମ ଜଙ୍ଗଲରେ ଆତ୍ମଗୋପନ କରିଥିବା ପୁତ୍ର ତଥା ଖୋର୍ଦ୍ଧା ଭୋଇ ରାଜବଂଶର ପ୍ରତିଷ୍ଠାତା ପ୍ରତ୍ୟୁତ୍ପନ୍ନମତି ରାମଚନ୍ଦ୍ର ଦେବ ବା ରମେଇ ରାଉତରାୟ । ମୁକୁନ୍ଦ ଦେବଙ୍କ ମୃତ୍ୟୁପରେ ଖୋର୍ଦ୍ଧାର ବୀରପାଇକ ସର୍ଦ୍ଦାରମାନଙ୍କ ସହାୟତାରେ ୧୫୬୨ ଖ୍ରୀ:ଅ:ରେ ଓଡ଼ିଶାର ରାଜଗାଦୀ ଅଧିକାର କରିଥିଲେ ଓ ଖୋର୍ଦ୍ଧାର ବରୁଣେଇ ପାହାଡ଼ ଘାଟି ତଳେ ନିଜ ରାଜଧାନୀ ପ୍ରତିଷ୍ଠା କରି ତାହାର ନାମ ଦେଇଥିଲେ ଜଗନ୍ନାଥପୁର କଟକ । ସେଥିପାଇଁ ଗଜପତି ରାମଚନ୍ଦ୍ର ଦେବ ଖୋର୍ଦ୍ଧା ରାଜବଂଶର ପ୍ରତିଷ୍ଠାତା ଏବଂ ସ୍ୱତନ୍ତ୍ର ଖୋର୍ଦ୍ଧା ଇତିହାସର ସୃଷ୍ଟିକର୍ତ୍ତା ଭାବରେ ଓଡ଼ିଆ ଜାତିର ସ୍ମରଣୀୟ । ମାଦଳାପାଞ୍ଜି ଓ ଚକଡ଼ା ପୋଥିରୁ ଜଣାଯାଏ ଯେ, ରାମଚନ୍ଦ୍ର ଦେବଙ୍କ ନବ ପ୍ରତିଷ୍ଠିତ ରାଜ୍ୟର ରାଜଧାନୀ ସ୍ୱରୂପ କଟକ ଓ ପୁରୀ ଅଞ୍ଚଳ ମଧ୍ୟରେ ବାରୁଣୀ ବା ବରୁଣେଇ ପର୍ବତର ପାଦଦେଶରେ ଖୋଲାପଲା ନିକଟସ୍ଥ ଖୋରଧା ନାମକ ପଲ୍ଲୀ ଗ୍ରାମରେ ଏକ ସୁଦୃଢ଼ ଦୁର୍ଗ ପ୍ରତିଷ୍ଠା କରିଥିଲେ । କାରଣ ଅନଙ୍ଗଭୀମ ଦେବଙ୍କ ସମୟରୁ ମୁକୁନ୍ଦ ଦେବଙ୍କ ମୃତ୍ୟୁ ପର୍ଯ୍ୟନ୍ତ ପ୍ରାୟ ତିନିଶତ ବର୍ଷ କାଳ ଓଡ଼ିଶାର ରାଜଧାନୀ ଥିବା କଟକର ବାରବାଟୀ ଦୁର୍ଗ ମୁସଲମାନ ରାଜତ୍ୱ ଆରମ୍ଭରୁ ସେମାନଙ୍କ ରାଜଧାନୀରେ ପରିଣତ ହେଲା । ତେଣୁ ରାମଚନ୍ଦ୍ର ଦେବ ବାରବାଟୀ ଉଦ୍ଧାରରେ ନିଜର ଶକ୍ତି ବା ସମୟ କ୍ଷୟ ନକରି ପୁରୀ ଜିଲ୍ଲାର ଉଚ୍ଚତମ ବରୁଣେଇ ପର୍ବତର ପାଦ ଦେଶରେ ଘନ ଅରଣ୍ୟାନୀ ପରିବେଷ୍ଟିତ ଓ ଚତୁର୍ଦ୍ଦିଗରେ କ୍ଷୁଦ୍ର କ୍ଷୁଦ୍ର ଦୁର୍ଗ ଦ୍ୱାରା ସୁରକ୍ଷିତ ଖୁରୁଧା ଦୁର୍ଗ ପ୍ରତିଷ୍ଠା କରି ନିଜର ରଣକୌଶଳ ଓ ଦୂରଦୃଷ୍ଟିର ପରିଚୟ ଦେଇଥିଲେ । ଖୋର୍ଦ୍ଧାରେ ନିଜର ରାଜଧାନୀ ପ୍ରତିଷ୍ଠା କରିବାରେ ତାଙ୍କୁ ସାହାଯ୍ୟ କରିଥିବା ବିଶେଷତଃ ତିନିଜଣ ପ୍ରଭାବଶାଳୀ ବ୍ୟକ୍ତିମାନେ ଥିଲେ ଚିଲିକାର ପୂର୍ବ ଉପକୂଳବର୍ତ୍ତୀ କୋକଳଗଡ଼ର ଅଧିକାରୀ, ଡେଲାଙ୍ଗ ରେଳ ଷ୍ଟେସନ ନିକଟବର୍ତ୍ତୀ ଘୋରଡ଼ିଆ ଗ୍ରାମର ଜୈନିକ ବ୍ୟକ୍ତି ଓ ଖୋର୍ଦ୍ଧା ନିକଟସ୍ଥ ମଳିପଡ଼ା ଗଡ଼ର ଅଧିକାରୀ । ଏତଦ୍‌ବ୍ୟତୀତ ଦକ୍ଷିଣ ଓଡ଼ିଶାର କେତେକ ସାମନ୍ତ ରାଜାଙ୍କ ସମର୍ଥନରେ ରାମଚନ୍ଦ୍ର ଦେବ ୧୫୭୧-୭୨ ଖ୍ରୀ:ଅ:ରେ ଖୋର୍ଦ୍ଧା ରାଜ୍ୟ ପ୍ରତିଷ୍ଠା କରିଥିଲେ । ରାଜା ରାମଚନ୍ଦ୍ର ଦେବଙ୍କ ସମକାଳୀନ ପାଟନାର ଚୌହାନ ବଂଶୀୟ ବଳରାମ ଦେବ ବିଶାଳ ସମ୍ବଲପୁର ରାଜ୍ୟର ପ୍ରତିଷ୍ଠାତା ଥିଲେ, ଯେ କି ପବିତ୍ର ଉତ୍କଳ ଭୂମିକୁ 'ଯବନାମ୍ବୁଧିର୍ନିମଜ୍ଜନ' ବା ମୁସଲିମ୍ ଆଧିପତ୍ୟରୁ ରକ୍ଷା କରିବା ପାଇଁ ରାମଚନ୍ଦ୍ର ଦେବଙ୍କୁ ସାହାଯ୍ୟ କରିଥିବା ଜଣାଯାଏ । ଓଡ଼ିଶାର ଜନଜୀବନର ଓଡ଼ିଆ ଜାତିର ପ୍ରାଣ ପ୍ରତିଷ୍ଠାତାରେ ଶ୍ରୀଜଗନ୍ନାଥ ଚେତନାର ପ୍ରଭାବ କେତେ ଗଭୀର, ଆଉ କେତେ ସୁଦୂର ପ୍ରସାରୀ ଓ କ୍ରିୟାଶୀଳ ଏବଂ କଳାପାହାଡ଼ର ଜଗନ୍ନାଥ ମନ୍ଦିର ଲୁଣ୍ଠନ ସହିତ ଶ୍ରୀବିଗ୍ରହମାନଙ୍କର ଧ୍ୱଂସ ସାଧନ ଫଳରେ ସେହି ଜାତୀୟ ଚେତନା କେତେ ଗଭୀର ଭାବରେ ଆଘାତ ପ୍ରାପ୍ତ ହୋଇଥିଲା, ତାହା ରାମଚନ୍ଦ୍ର ଦେବ ହୃଦୟଙ୍ଗମ କରି ଜନସାଧାରଣଙ୍କ ମନରେ ଆତ୍ମପ୍ରତ୍ୟୟ ସୃଷ୍ଟି କରିବା ପାଇଁ ସେହି ଜାତୀୟ ଚେତନା ପୁନରୁଜ୍ଜୀବିତ କରିବା ହିଁ ତାଙ୍କର ଗଡ଼ ପ୍ରତିଷ୍ଠାର ପ୍ରଧାନ କର୍ତ୍ତବ୍ୟ ବୋଲି ଧରି ନେଇଥିଲେ । ତେଣୁ ବିଶର ମହାନ୍ତି ନାମକ ଜନୈକ ବ୍ୟକ୍ତି କଳାପାହାଡ଼ ଦ୍ୱାରା ଗଙ୍ଗାରେ ବିସର୍ଜନ କରାଯାଇଥିବା ଜଗନ୍ନାଥଙ୍କ ଦାରୁ ବିଗ୍ରହର ଭଗ୍ନାବଶେଷ ଉଦ୍ଧାର କରିଆଣି କୁଜଙ୍ଗରେ ରଖିଥିବା ବ୍ରହ୍ମକୁ କୁଜଙ୍ଗରୁ ଅଣାଇ ଏହି ଖୋର୍ଦ୍ଧା ଗଡ଼ରେ ତିନିଠାକୁରଙ୍କର ନୂତନ ଦାରୁ ମୂର୍ତ୍ତି ଗଠନ କରାଇବା ପରେ ନବକଳେବର ବିଧିରେ ଦାରୁବିଗ୍ରହଙ୍କୁ ଖୋର୍ଦ୍ଧାରୁ ନେଇ ଶ୍ରୀମନ୍ଦିରରେ ପୁନଃ ପ୍ରତିଷ୍ଠା କରି ଏହି ଖୋର୍ଦ୍ଧାଗଡ଼ର ପ୍ରତିଷ୍ଠାତା ରାମଚନ୍ଦ୍ର ଦେବ - ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ଆଖ୍ୟା ପାଇଥିଲେ ।

ସ୍ୱର୍ଗତ ଚକ୍ରଧର ମହାପାତ୍ରଙ୍କ ଦ୍ୱାରା ଲିଖିତ 'ଉତ୍କଳ ଇତିହାସର ଏକ ଅଜ୍ଞାତ ଅଧ୍ୟାୟ' ଓ ଦିବ୍ୟସିଂହ ଚମ୍ପତିଙ୍କ ଦ୍ୱାରା ଲିଖିତ 'ବହ୍ନି ବଂଶର ନୂତନ ଇତିହାସ'ରୁ ପ୍ରମାଣିତ ହୁଏ ଯେ ଖୋର୍ଦ୍ଧା ଭୋଇ ରାଜବଂଶର ପ୍ରଥମ ରାଜା ରାମଚନ୍ଦ୍ର ଦେବ (୧୫୬୮-୧୬୦୬)ଙ୍କ ସମୟରେ ଇନ୍ଦ୍ର ବିଦ୍ୟାଧର, ପୁରୁଷୋତ୍ତମ ଦେବ (୧୬୦୬-୧୬୨୨)ଙ୍କ କାଳରେ ଦାସ ବିଦ୍ୟାଧର, ରାଜା ନରସିଂହ ଦେବ (୧୬୨୨-୧୬୪୭)ଙ୍କ ସମୟରେ କହ୍ନାଇ ବିଦ୍ୟାଧର, ରାଜା ବଳଭଦ୍ର ଦେବ (୧୬୪୮-୧୬୫୯)ଙ୍କ ସମୟରେ ବାସୁଦେବ ବିଦ୍ୟାଧର, ମୁକୁନ୍ଦ ଦେବ (୧୬୫୯-୧୬୮୮)ଙ୍କ ସମୟରେ ପୀତାମ୍ବର ବିଦ୍ୟାଧର, ରାଜା ଦିବ୍ୟସିଂହ ଦେବ (୧୬୮୮-୧୭୧୪)ଙ୍କ ସମୟରେ ଜଗନ୍ନାଥ ବିଦ୍ୟାଧର, ତାଙ୍କ ପରବର୍ତ୍ତୀ ରାଜା ହରେକୃଷ୍ଣ ଦେବ, ଗୋପୀନାଥ ଦେବ ଓ ରାଜା ରାମଚନ୍ଦ୍ର ଦେବ (୧୭୧୪-୧୭୩୭)ଙ୍କ ସମୟରେ ଲୋକନାଥ ବିଦ୍ୟାଧର ଏବଂ ବୀର କେଶରୀ ଦେବ (୧୭୩୭-୧୭୯୩)ଙ୍କ ସମୟରେ ବାସୁଦେବ ଭ୍ରମରବର ଓ ଗୋପୀନାଥ ଭ୍ରମରବର, ଦିବ୍ୟସିଂହ ଦେବ (୧୭୯୩-୧୭୯୮) ଓ ରାଜା ମୁକୁନ୍ଦ ଦେବ (୧୭୯୮-୧୮୧୭)ଙ୍କ ସମୟରେ ଜଗବନ୍ଧୁ ବିଦ୍ୟାଧର ଖୋର୍ଦ୍ଧାର ସେନାପତି ଥିଲେ । ଖୋର୍ଦ୍ଧା ଭୋଇ ରାଜବଂଶ ଦୀର୍ଘ ଦୁଇଶହ ବର୍ଷରୁ ଉର୍ଦ୍ଧ୍ୱକାଳ ରାଜତ୍ୱ କଲାପରେ ଖୋର୍ଦ୍ଧା ବଂଶର ପତନ ଘଟିଲା ୧୮୦୪ ଖ୍ରୀ:ଅ:ରେ, ଯେତେବେଳେ ଇଂରେଜମାନେ

ଓଡ଼ିଶାକୁ ଅଧିକାର କରି ଭୋଇ ବଂଶର ୧୨ଶ ରାଜା ୨ୟ ମୁକୁନ୍ଦ ଦେବଙ୍କୁ ଗାଦିଚ୍ୟୁତ କରିବା ସହିତ ଖୋର୍ଦ୍ଧା ରାଜ୍ୟର ସ୍ୱାଧୀନତା ଲୋପ କରି ଦେଲେ । ସେତିକିବେଳେ ଓଡ଼ିଶାର ସ୍ୱାଧୀନତାର ପୁନରୁଦ୍ଧାର ପାଇଁ ଶକ୍ତିଶାଳୀ ଇଂରେଜ ସରକାର ସଂଗେ ପ୍ରାଣମୂର୍ଚ୍ଛା ସଂଗ୍ରାମ ଚଳାଇଥିବା ରାଜା ମୁକୁନ୍ଦ ଦେବଙ୍କୁ ସାହାଯ୍ୟ କରିଥିଲେ ରାଜଗୁରୁ ଜୟକୃଷ୍ଣ ମହାପାତ୍ର, ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର ଓ ଦେଓ୍ୱାନ କୃଷ୍ଣଚନ୍ଦ୍ର ଭ୍ରମରବର ରାୟ । ଏହି ତିନି ଜଣ ବୀର ପୁରୁଷଙ୍କ ପାଇଁ ଓଡ଼ିଆ ଜାତି ଗର୍ବିତ, ଓଡ଼ିଶା ଗୌରବାନ୍ୱିତ ଓ ଓଡ଼ିଶାର ଐତିହ୍ୟ ସମୃଦ୍ଧ । ବୀର ପ୍ରସବିନୀ ଉତ୍କଳ ଜନନୀର ଯେଉଁ କେତେଜଣ ସୁଯୋଗ୍ୟ ସନ୍ତାନ ଦେଶ ମାତୃକାର ସ୍ୱାଭିମାନ ରକ୍ଷା କରିବାକୁ ଯାଇ ଆତ୍ମବଳୀ ଦେଇଥିଲେ, ସେମାନଙ୍କ ମଧ୍ୟରେ ଏହି ତିନିଜଣ ଥିଲେ ଅନନ୍ୟ ସାଧାରଣ । ଏହି ବୀର ତ୍ୟାଗୀ, ସ୍ୱାଭିମାନୀ ଦେଶଭକ୍ତଙ୍କର ଚରିତ୍ର ଓ ବୀରତ୍ୱର ଆଲେଖ୍ୟ ଏବେ ମଧ୍ୟ ଖୋରଧା ମାଟିର ପାଇକ ପୁଅ ମନକୁ ଉଦ୍‌ବେଳିତ କରିଥାଏ । ନିଃସ୍ୱାର୍ଥପର ଭାବରେ ଜନ୍ମଭୂମିର ସୁରକ୍ଷା ଅଗଣିତ ଜନତାଙ୍କୁ ବ୍ରିଟିଶ ସାମ୍ରାଜ୍ୟବାଦୀ ଶକ୍ତିର ଶୋଷଣ ଲୁଣ୍ଠନ ଓ ଅକଥନୀୟ ଅତ୍ୟାଚାରରୁ ରକ୍ଷା କରିବା ଥିଲା ତାଙ୍କ ଜୀବନର ପ୍ରଧାନ ଲକ୍ଷ୍ୟ । ଏହି ତିନିଜଣଙ୍କ ମଧ୍ୟରୁ ଜୟୀ ରାଜଗୁରୁ ଥିଲେ ସଂସ୍କୃତଜ୍ଞ ପଣ୍ଡିତ, ଧୁରନ୍ଧର ରାଜନୈତିକ ବ୍ୟକ୍ତି ଓ ଜଣେ ଯୁଦ୍ଧବିଦ୍ୟା ବିଶାରଦ । ସର୍ବୋପରି ମା’ ବରୁଣେଇଙ୍କ ପରମ ଭକ୍ତ । ୧୭୮୧ ଖ୍ରୀ:ଅ:ରେ ଜୟୀ ରାଜଗୁରୁ ରାଜା ଦିବ୍ୟସିଂହ ଦେବଙ୍କର ପ୍ରଧାନମନ୍ତ୍ରୀ ପଦ ଗ୍ରହଣ କଲେ । ଦିବ୍ୟସିଂହ ଦେବଙ୍କ ପରେ ତାଙ୍କର ପୁତ୍ର ମକୁନ୍ଦ ଦେବ ସିଂହାସନ ଆରୋହଣ କରିବାରେ ତାଙ୍କର ମଧ୍ୟ ପ୍ରଧାନମନ୍ତ୍ରୀ ପଦ ଗ୍ରହଣ କଲେ । ମୁକୁନ୍ଦ ଦେବ ନାବାଳକ ଥିବାରୁ ଜୟୀ ରାଜଗୁରୁ ତାଙ୍କର ଅଭିଭାବକ ରୂପେ ନିଯୁକ୍ତି ପାଇ ଶେଷ ଜୀବନ ପର୍ଯ୍ୟନ୍ତ ମୁକୁନ୍ଦ ଦେବଙ୍କୁ ରକ୍ଷା କରିଥିଲେ । ସେ ଜଣେ ପରମ ଦେଶଭକ୍ତ ଓ ରାଜଭକ୍ତ ଥିଲେ । ରାଜା ନାବାଳକ ଥିବାରୁ ତାଙ୍କୁ ରାଜ୍ୟ ଶାସନର ସମ୍ପୂର୍ଣ୍ଣ ଦାୟିତ୍ୱ ବହନ କରିବାକୁ ପଡ଼ିଲା । ଚକ୍ରାନ୍ତ କରି ଇଂରେଜମାନେ ଖୋର୍ଦ୍ଧା ରାଜାଙ୍କ ସହିତ ସନ୍ଧି ସ୍ଥାପନ କଲେ । ଐତିହାସିକ ଖୋର୍ଦ୍ଧାକୁ କଳେବଳେ କୌଶଳରେ ନିଜର ଶାସନାଧୀନ କରିବାକୁ ଇଂରେଜମାନେ ଶତଚେଷ୍ଟା କରିଥିଲେ । ମାତ୍ର ବିଜ୍ଞ ଜୟୀରାଜଗୁରୁଙ୍କ ନିକଟରେ ଇଂରେଜମାନଙ୍କର ସମସ୍ତ ନୀତି ବିଫଳ ହେଲା ।

ଓଡ଼ିଶା ବିଭିନ୍ନ ସମୟରେ ମୋଗଲ, ମରହଟ୍ଟା ଓ ଇଂରେଜମାନଙ୍କ ଦ୍ୱାରା ଶାସିତ ହୋଇ ଅବହେଳିତ ଓ ଅବଦମିତ ହୋଇ ରହିଥିଲା । ଦେଓଗ୍ରାମ ସନ୍ଧିରେ ଇଂରେଜମାନେ ୧୮୦୩ ସାଲ୍ ଡିସେମ୍ବର ୧୭ ତାରିଖରେ ମରହଟ୍ଟାମାନଙ୍କଠାରୁ ଓଡ଼ିଶାକୁ ନିଜ ଅଧୀନକୁ ଆଣିଲେ । ବଣିକ ଇଂରେଜ ଜାତି ନିଜର କୁଟନୀତି ପ୍ରୟୋଗ କରି ସାରା ଭାରତ ଆକାଶରେ ତଥା ଓଡ଼ିଶାରେ ନିଜର କରାଳ ଛାୟା ବିସ୍ତାର କରିବା ଲାଗି ସାରା ଭାରତ ଜୟ କରିସାରିବା ପରେ ସର୍ବ ଶେଷରେ ଜୟ କରିଥିଲେ ଓଡ଼ିଶା । ମାତ୍ର ଓଡ଼ିଶା ଜୟ କରିବା ସମୟରେ ଖୋର୍ଦ୍ଧା ରାଜବଂଶ ଓ ପାଇକମାନଙ୍କର ସୁସଂଗଠିତ ପ୍ରତିରୋଧର ସମ୍ମୁଖୀନ ହୋଇ ବହୁ ବ୍ରିଟିଶ ସେନା ମୃତାହତ ହୋଇଥିଲେ । ଇଂରେଜମାନେ ଖୋର୍ଦ୍ଧା ପାଇକମାନଙ୍କର ପ୍ରତିରୋଧ ଓ ଆତ୍ମବଳୀ ଦେଖି ଅଭିଭୂତ ହୋଇଥିଲେ । ବିଶେଷତଃ ଜୟୀ ରାଜଗୁରୁଙ୍କ ବୀରତ୍ୱ, ପରାକାଷ୍ଠା ଓ କୁଟନୀତି ଇଂରେଜମାନଙ୍କୁ ସ୍ତମ୍ଭୀଭୂତ କରିଥିଲା । ଏ ଖୋର୍ଦ୍ଧା ମାଟିରେ ଇଂରେଜମାନଙ୍କୁ ପ୍ରବେଶ କରାଇ ନ ଦେବାର ଅଦମ୍ୟ ଆକାଂକ୍ଷା, କର୍ମବୀର ଜୟୀ ରାଜଗୁରୁଙ୍କର ମନରେ ଉଦ୍ଭାସିତ ହୋଇ ପରିଶେଷରେ ବିଦ୍ରୋହର ରୂପ ନେଇଥିଲା । ଜୟୀ ରାଜଗୁରୁଙ୍କର ପରାମର୍ଶରେ ଖୋର୍ଦ୍ଧା ରାଜା, ଇଂରେଜମାନଙ୍କ ବିରୁଦ୍ଧରେ ବିଦ୍ରୋହ ଘୋଷଣା କଲେ । ଏହି ବିଦ୍ରୋହ ହେଉଛି ଭାରତର ଇଂରେଜ ବିରୁଦ୍ଧରେ ପ୍ରଥମ ଗଣ ବିଦ୍ରୋହ । ୧୮୦୪ ମସିହା ଡିସେମ୍ବର ମାସ ଶେଷ ସପ୍ତାହରୁ ଇଂରେଜ ବାହିନୀ ପକ୍ଷରୁ ଘନଘନ ତୋପ କମାଣର ପ୍ରଚଣ୍ଡ ଆକ୍ରମଣକୁ ଦୀର୍ଘ ତିନି ସପ୍ତାହ ଧରି ପ୍ରତିହତ କରି ଆସିଥିବା ଦୁର୍ଦ୍ଧର୍ଷବୀର ଓଡ଼ିଆ ପାଇକ ବାହିନୀର ପ୍ରାଣମୂର୍ଚ୍ଛା ଶେଷ ସଂଗ୍ରାମ ଉପରେ କ୍ରୁର ଯମଯାତନାର ଯବନିକାପାତ କରି ଦୁର୍ଗମ ଦୁର୍ଭେଦ୍ୟ ଖୋର୍ଦ୍ଧା ଦୁର୍ଗର ସ୍ୱାଧୀନତା ସୂର୍ଯ୍ୟକୁ ଚୀର ଦିନ ପାଇଁ ଗ୍ରାସ କରି ଦେଇଥିଲା । ସେହି କାଳ ମୁହୂର୍ତ୍ତ । ରାମଚନ୍ଦ୍ର ଦେବଙ୍କ ଦ୍ୱାରା ପ୍ରତିଷ୍ଠିତ ଏହି ସୁନ୍ଦର ଓ ସୁଦୃଢ଼ ଆୟତାକୃତି ଖୋର୍ଦ୍ଧା ଦୁର୍ଗର ଭିତର ଓ ବାହାର ଦୁଇ ବିରାଟ ପ୍ରାଚେରୀ ସମେତ ଗଭୀର ଗଡ଼ଖାଇ ଓ ଗଡ଼ର ଚତୁଃଦ୍ୱାର ଆଦି ଥିଲା । ଫଳରେ ହଠାତ୍ ଶତ୍ରୁ ଆକ୍ରମଣକୁ ପ୍ରତିରୋଧ କରାଯାଇପାରୁଥିଲା । ପୂର୍ବ ଦ୍ୱାର ହିଁ ଥିଲା ମୁଖ୍ୟ ଦ୍ୱାର ବା ଖୋଲାଦ୍ୱାର, ଯାହାକି କେବଳ ଯାତାୟତ ପାଇଁ ଉଦ୍ଦିଷ୍ଟ ଥିଲା । ଏହି ମୁଖ୍ୟ ଦ୍ୱାରା ସହିତ ସଂଯୁକ୍ତ ଥିଲା ଦୁଇ ପ୍ରହରୀଙ୍କ କୋଠରୀ । ଏହି ପୂର୍ବ ବା ମୁଖ୍ୟ ଦ୍ୱାର ବରୁଣେଇ ପର୍ବତର ପୂର୍ବପାର୍ଶ୍ୱରେ ଅବସ୍ଥିତ ଥିଲା ଓ ଏହାକୁ ଲାଗି କରିଥିବା ଆୟତାକୃତି କୋଠରୀଗୁଡ଼ିକ ଅସ୍ତ୍ର ସରଞ୍ଜାମ ତିଆରି ଓ ରହିବା ପାଇଁ ନିର୍ମିତ ହୋଇଥିଲା । କ୍ରମାଗତ ତିନି ସପ୍ତାହ ଧରି ଓଡ଼ିଶାର ଶେଷ ସ୍ୱାଧୀନ ଦୁର୍ଗ ‘ଖୋର୍ଦ୍ଧା ଘାଟ ଗଡ଼’କୁ ଉତ୍ତର, ପୂର୍ବ ଓ ପଶ୍ଚିମ ତିନି ଦିଗରୁ ଅବରୋଧ କରି ତୋପ, କମାଣ ଓ ବନ୍ଧୁକ ମୁହଁରୁ ଅବିରତ ଗୁଳିଗୋଳା ବର୍ଷଣ ସତ୍ତ୍ୱେ ଶକ୍ତିଶାଳୀ ଫିରିଙ୍ଗ ଫୌଜ ସେହି ଦୁର୍ଭେଦ୍ୟ ଦୁର୍ଗକୁ ଭେଦ କରିପାରି ନଥିଲା କିମ୍ବା ଦୁର୍ଗମ ବରୁଣେଇ ପାହାଡ଼ର ସୁରକ୍ଷା ବଳୟ ଭେଦ କରି ଦୁର୍ଗ ଦକ୍ଷିଣ ପାର୍ଶ୍ୱକୁ ଅବରୋଧ କରିବା ସକ୍ଷମ ହୋଇ ନଥିଲା । ‘‘The approaches from the south lay through a difficult pass between the Barunei hills and were stockarded and fortified with strong massonary barriers. It was three weeks before we were in a position to carry these works by storm’’ (G. Toynbee) ଖୋର୍ଦ୍ଧାର ଦୁର୍ବାର ପାଇକ ବାହିନୀର ନେତୃତ୍ୱ ନେଇ ଦୁର୍ଗ ପୂର୍ବଦ୍ୱାରର

ରକ୍ଷା ଦାୟିତ୍ୱରେ ଅବସ୍ଥାପିତ ଥିଲେ ଅସାଧାରଣ ସାହସୀ ବୀର ତଥା ଖୋର୍ଦ୍ଧା ରାଜବଂଶର ରାଜଗୁରୁ ଜୟକୃଷ୍ଣ ମହାପାତ୍ର, ଉତ୍ତରଦ୍ୱାରର ରକ୍ଷା ଦାୟିତ୍ୱରେ ଥିଲେ ଖୋର୍ଦ୍ଧା ରାଜ୍ୟର ସ୍ୱନାମଧନ୍ୟ ଦୁର୍ଦ୍ଧର୍ଷ ସେନାପତି ବୀରଶ୍ରେଷ୍ଠ ବକ୍ସି ଜଗବନ୍ଧୁ ଏବଂ ପଶ୍ଚିମ ଦ୍ୱାରର ରକ୍ଷକ ଥିଲେ ଦେଓ୍ୱାନ ହରିହର ଭ୍ରମରବର ରାୟ । ମାତ୍ର ଏକ ସମୟରେ ଦୁର୍ଗର ପୂର୍ବପାଖ ପ୍ରାଚେରୀ ଉପରେ ହିଁ ଇଂରେଜ ଫୌଜର ବହୁମୁଖୀ ଆକ୍ରମଣ କ୍ରମାଗତ କେନ୍ଦ୍ରୀଭୂତ ହେବାକୁ ଲାଗିଲା । ବହୁ ସଂଖ୍ୟକ ତୋପ କମାଣରୁ ଲଗାତର ଗୁଳିବର୍ଷଣ ଚାଲିଥାଏ । ପ୍ରତ୍ୟେକ ମୁହୂର୍ତ୍ତର ତୋପ ନାଦରେ ଥରି ଉଠୁଥାଏ ଗଡ଼ ପ୍ରାଚୀର । କମ୍ପି ଉଠୁଥିଲା ବରୁଣେଇ ଗିରି ଗହ୍ୱର । ହଠାତ୍ ଏକ ଭୟଙ୍କର ଶବ୍ଦ ସହ ଗଡ଼ର ପୂର୍ବପାଖ ପ୍ରାଚେରୀ କାନ୍ଥରେ ପ୍ରକାଣ୍ଡ ଫାଟ ସୃଷ୍ଟି ହେବା ସହ ପ୍ରାଚେରୀର ଏକ ଅଂଶ ଭାଙ୍ଗି ପଡ଼ିଲା । ଗଡ଼ର ପତନ ନିଶ୍ଚିତ ମନେ କରି ଗଡ଼ ମଧ୍ୟରେ ଥିବା ରାଜା, ରାଜଗୁରୁ, ସେନାପତି, ଦେଓ୍ୱାନ, ପ୍ରହରୀ ଓ ପାଇକ ଯୋଦ୍ଧାମାନେ ଚାଲିଗଲେ ଏହି ଖୋର୍ଦ୍ଧା ନିକଟସ୍ଥ ଓ ଅଧୀନସ୍ଥ ରାମେଶ୍ୱର ଗଡ଼କୁ । ପରେ ଏହି ଦୁର୍ଭେଦ୍ୟ ଦୁର୍ଗ ଧ୍ୱଂସ ବିଧ୍ୱସ୍ତ ହୋଇଗଲା । ଏଠି ନିସ୍ତବ୍ଧ ହୋଇଗଲା ବରୁଣେଇ ଗିରିଗହ୍ୱର, ନିର୍ଜ୍ଜନ ହେଲା ବରୁଣେଇ ଘନ ଅରଣ୍ୟାନୀ । ଏହି ସୁଦୃଢ଼ ଖୋର୍ଦ୍ଧା ଦୁର୍ଗ ପ୍ରାୟ ୧୭୦ ବର୍ଷକାଳ ମୋଗଲମାନଙ୍କ ଘନ ଘନ ଆକ୍ରମଣର ପ୍ରତିରୋଧ କରି ଓଡ଼ିଶାର ଧର୍ମ ଓ ଜାତୀୟତା ରକ୍ଷାରେ ବିଶେଷ ସାହାଯ୍ୟ କରିଥିଲା । ମାତ୍ର ଇଂରେଜମାନଙ୍କ ଆକ୍ରମଣ ସମୟରେ ଧ୍ୱସ୍ତବିଧ୍ୱସ୍ତ ଉକ୍ତ ଦୁର୍ଗର ଧ୍ୱଂସାବଶେଷ ଦର୍ଶନରେ ଜାତୀୟ ବୀର ରାମଚନ୍ଦ୍ର ଦେବ ଓ ପାଇକ ବାହିନୀର ସ୍ମୃତି ଅଦ୍ୟାବଧି ଜାଗରିତ ହୁଏ । ମୋଗଲ ଓ ମରହଟ୍ଟା ରାଜତ୍ୱ କାଳରେ ବାହ୍ୟ ଶତ୍ରୁର ଆକ୍ରମଣ ପ୍ରତିହତ କରିବା ନିମିତ୍ତ ସୁଦକ୍ଷ ମନ୍ତ୍ରୀ ଓ ସେନାପତି ଜନାର୍ଦ୍ଦନ ବିଦ୍ୟାଧରଙ୍କ ସୁଯୋଗ୍ୟ ପୁତ୍ର ବୀର ରାମଚନ୍ଦ୍ର ଦେବଙ୍କ 'ଖୋର୍ଦ୍ଧା ଦୁର୍ଗ', ତା'ର ବଳିଷ୍ଠତା ପ୍ରମାଣିତ କରିବା ସଂଗେସଂଗେ ସ୍ୱାଧୀନ ଓଡ଼ିଆ ରାଜ୍ୟର ଏକ ବିଶିଷ୍ଟ ଅଂଶ ତଥା ଧର୍ମପୀଠ ପୁରୀ ଓ ଭୁବନେଶ୍ୱରର ଚତୁଃପାର୍ଶ୍ୱବର୍ତ୍ତୀ ଅଞ୍ଚଳ କଳାପାହାଡ଼ର ଘୋର ଆତଙ୍କପ୍ରଦ ଓ ବିଭୀଷିକାମୟ ଆକ୍ରମଣ ଜନିତ ଅରାଜକତା ରକ୍ଷା କରିବା ପାଇଁ ସମର୍ଥ ହୋଇଥିଲା । ରାଜା ମୁକୁନ୍ଦ ଦେବ ପରେ ଇଂରେଜମାନଙ୍କ ଦ୍ୱାରା ଗିରଫ ହୋଇ ବାରବାଟୀ ଦୁର୍ଗରେ ବନ୍ଦୀ ହୋଇ ରହିଲେ । ଜୟୀ ରାଜଗୁରୁ ଇଂରେଜମାନଙ୍କର ବଶତ୍ୱ ସ୍ୱୀକାର କରିବା ଅପେକ୍ଷା ପ୍ରାଣବଳୀ ଦେବା ଶ୍ରେୟସ୍କର ମଣିଲେ । ଇଂରେଜମାନଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ସେ ସୈନ୍ୟବାହିନୀ ବୃଦ୍ଧି କଲେ ଓ ଯୁଦ୍ଧ ପାଇଁ ପ୍ରସ୍ତୁତ ହେଲେ । ଖୋର୍ଦ୍ଧା ରାଜାଙ୍କୁ ବଶୀଭୂତ କରିବାର ସମସ୍ତ ପ୍ରଚେଷ୍ଟା ଇଂରେଜମାନଙ୍କର ବିଫଳ ହେଲା । ଇଂରେଜମାନେ ମଧ୍ୟ ଉପଲବ୍ଧି କଲେ ଯେ, ଜୟୀ ରାଜଗୁରୁଙ୍କୁ କୌଣସି ପ୍ରକାରେ ପ୍ରଲୁବ୍ଧ କରି ହେବ ନାହିଁ । ପରାକ୍ରମଶାଳୀ ଇଂରେଜ ସୈନ୍ୟବାହିନୀର ଅତ୍ୟାଧୁନିକ ଗୋଳାବାରୁଦ, ତୋପ ସମ୍ମୁଖରେ ଖୋର୍ଦ୍ଧାର ବୀର ପାଇକ ସେନା ଖଡ୍ଗ, ଢାଲ, ବର୍ଚ୍ଛା, ଠେଙ୍ଗା ଓ ଲାଠି ଧରି ଯୁଦ୍ଧ କରିବାକୁ ପ୍ରସ୍ତୁତ ହୋଇ ରହିଲେ । ଇଂରେଜମାନେ ଖୋର୍ଦ୍ଧା ରାଜା ଓ ମନ୍ତ୍ରୀ ତଥା ପରାମର୍ଶଦାତା ଜୟୀ ରାଜଗୁରୁଙ୍କୁ ଉପଯୁକ୍ତ ଶାସ୍ତି ଦେବା ନିମନ୍ତେ ଅତର୍କିତ ଭାବେ ଖୋର୍ଦ୍ଧାଗଡ଼ ଅବରୋଧ କରିବାକୁ ସାତ ହଜାର ସୁଶିକ୍ଷିତ ସୈନ୍ୟ ପ୍ରେରଣ କଲେ । ଇଂରେଜ ସୈନ୍ୟମାନେ ଖୋର୍ଦ୍ଧାର ମୁକୁନ୍ଦ ପ୍ରସାଧ ଗ୍ରାମର ଆମ୍ବତୋଟା ମଧ୍ୟରେ ଛାଉଣୀ ପକାଇଲେ । ଜୟୀ ରାଜଗୁରୁ ଗୁପ୍ତଚରଠାରୁ ଉକ୍ତ ସମ୍ବାଦ ପାଇ ସେହି ମୁକୁନ୍ଦ ପ୍ରସାଦ ଗ୍ରାମରେ ହିଁ ଇଂରେଜ ସୈନ୍ୟମାନଙ୍କୁ ଅତର୍କିତ ଆକ୍ରମଣ କଲେ । ବରୁଣେଇ ଗଡ଼ ଖୁବ୍ ସୁଦୃଢ଼ ଥିଲେ ମଧ୍ୟ ବ୍ରିଟିଶ ତୋପମାଡ଼ରେ ତାହା ଭାଙ୍ଗି ପଡ଼ିଥିଲା । ନିଜ ଜୀବନକୁ ବାଜି ରଖି ଶେଷ ପର୍ଯ୍ୟନ୍ତ ଇଂରେଜମାନଙ୍କୁ ଭୟଭୀତ କରି ଦେଇଥିଲେ । ମାତ୍ର ଭାଗ୍ୟର ବିଡ଼ମ୍ବନା ବଶତଃ ଜୟୀରାଜଗୁରୁ ଇଂରେଜ ସୈନ୍ୟମାନଙ୍କ ଦ୍ୱାରା ଧରା ହୋଇ ରାଜା ମୁକୁନ୍ଦ ଦେବ ବନ୍ଦୀ ଭାବରେ ରହିଥିବା ବାରବାଟୀ ଦୁର୍ଗରେ ବନ୍ଦୀ ହୋଇ ରହିଲେ । ଜୟୀ ରାଜଗୁରୁଙ୍କ ଉପରେ ଅକଥନୀୟ ଅତ୍ୟାଚାର କରାଯାଇ ଇଂରେଜମାନଙ୍କ ବଶତଃ ସ୍ୱୀକାର କରିବାକୁ ବାଧ୍ୟ କରାଗଲା । ମାତ୍ର ସ୍ୱାଧୀନଚେତା ଜୟୀ ରାଜଗୁରୁଙ୍କ ଉପରେ ତାହାର କୌଣସି ପ୍ରଭାବ ପଡ଼ିଲା ନାହିଁ । ଦୁର୍ବଳ ଖୋର୍ଦ୍ଧା ରାଜା ମୁକୁନ୍ଦ ଦେବ ଶେଷରେ ବନ୍ଦୀ ଗୃହରେ ନିଜର ମତ ପରିବର୍ତ୍ତନ କରି ଜୟୀ ରାଜଗୁରୁଙ୍କ ଉପରେ ସମସ୍ତ ଦୋଷ ଢାଳି ଦେଇ ଇଂରେଜମାନଙ୍କ ସମ୍ମୁଖରେ କ୍ଷମାଭିକ୍ଷା କରିବାରୁ, ରାଜାଙ୍କୁ ବନ୍ଦୀମୁକ୍ତ କରାଯାଇ ଖୋର୍ଦ୍ଧାରେ ନରହି ପୁରୀରେ ରହିବା ପାଇଁ ସରକାର ନିର୍ଦ୍ଦେଶ ଦେଇଥିଲେ । ରାଜାଙ୍କର ଏହି ମତକୁ ଇଂରେଜମାନେ ଗ୍ରହଣ କରି ଜୟୀ ରାଜଗୁରୁଙ୍କୁ ଦୋଷୀ ମନେକରି ତାଙ୍କୁ ମେଦୀନପୁରର ବାଘିତୋଟାକୁ ନେଇ ତାଙ୍କର ବିଚାର କରିଥିଲେ ଓ ଏହି ବିଚାରରେ ତାଙ୍କୁ ମୃତ୍ୟୁ ଦଣ୍ଡରେ ସାବ୍ୟସ୍ତ କରାଯାଇ ୧୮୦୫ ମସିହାରେ ଅତି ଅମାନୁଷିକ ଭାବରେ ଫାଶି ଦିଆଗଲା । ଏଥିସହିତ ଖଣ୍ଡ ବିଖଣ୍ଡିତ ହୋଇଗଲା ଉତ୍କଳର ସ୍ୱାଧୀନତା, ଉନ୍ନତ ସଂସ୍କୃତି, ଐତିହ୍ୟ, ପରମ୍ପରା, କଳା, ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ । ସମଗ୍ର ଭାରତବର୍ଷର ପ୍ରଥମ ଅମର ଶହୀଦ୍ ଜୟକୃଷ୍ଣ ରାଜଗୁରୁ ମହାପାତ୍ରଙ୍କର ଟୋପା ଟୋପା ରକ୍ତ ବିନ୍ଦୁ ଯେତେବେଳେ ମେଦୀନପୁର ଭୂମିକୁ ରକ୍ତବର୍ଣ୍ଣ କରି ଦେଲା, ସେତେବେଳେ କ୍ରନ୍ଦନ କରି ଉଠିଲା ଇଂରେଜ ଶାସନାଧୀନ କୋଟି କୋଟି ଭାରତବାସୀଙ୍କ ପ୍ରାଣ ।

ଜୟୀ ରାଜଗୁରୁଙ୍କ ଫାଶୀ ପରେ ଇଂରେଜ ସରକାର ମୁକୁନ୍ଦ ଦେବଙ୍କୁ ବନ୍ଦୀରୁ ମୁକ୍ତ କରି ଦେଇଥିଲେ । ଏହାପରେ ଚାଲିଲା ଇଂରେଜମାନଙ୍କ ଓଡ଼ିଶା ପ୍ରତି ଅକଥନୀୟ ଅନ୍ୟାୟ ଓ ଅତ୍ୟାଚାରର ବିଭୀଷିକା । ସେନାପତି ବକ୍ସି ଜଗବନ୍ଧୁ ଏଥିରେ ଅସହ୍ୟ ହୋଇ ୧୮୧୭ ମସିହାରେ ପୁରୀ ପୁରୁଣା ନଅରରେ ଗଜପତିଙ୍କୁ ସାକ୍ଷାତ କରି ବିଦ୍ରୋହରେ ଯୋଗ ଦେବା ପାଇଁ ରାଜାଙ୍କର ଅନିଚ୍ଛା ସତ୍ତ୍ୱେ ଅନୁରୋଧ

କରିଥିଲେ । ଉତ୍କଳ ସେନାପତି ବଂଶର ଶେଷ ରଶ୍ମି ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ୧୮୧୬ ମସିହାରେ ପାଇକ ବିଦ୍ରୋହର ବହ୍ନି ଜଳି ଉଠିଥିଲା । ଖୋର୍ଦ୍ଧାର ଲଢୁଆଳ ପାଇକମାନେ ୧୫୬୮ ମସିହାଠାରୁ ୧୮୧୭ ମସିହା ପର୍ଯ୍ୟନ୍ତ ମୁସଲମାନ, ମୋଗଲ, ମରହଟ୍ଟା ଓ ଇଂରେଜମାନଙ୍କର ଅନ୍ୟାୟ ଅତ୍ୟାଚାରରେ ଯୁଗ ଯୁଗ ଧରି ଶିକାର ହୋଇଥିବାରୁ ତା'ର ପ୍ରତିବାଦ ସ୍ୱରୂପ ବକ୍ସିଙ୍କ ନେତୃତ୍ୱକୁ ବିନାଦ୍ୱିଧାରେ ଗ୍ରହଣ କରି ନେଇଥିଲେ ।

୧୮୧୬ ମସିହା ମାର୍ଚ୍ଚ ମାସରେ ବାଣପୁର ଅଞ୍ଚଳରୁ ୪୦୦ କନ୍ଧ ମେଳ ହୋଇ ଆସି ଖୋରଧା ପାଇକମାନଙ୍କ ସହିତ ଯୋଗ ଦେଲେ । ପୂର୍ବରୁ ଖୋରଧାର ପାଇକମାନେ ମୁସଲମାନ, ମୋଗଲ ଓ ବର୍ଗୀ ଅତ୍ୟାଚାରର ବିଷମୟ ଫଳ ଭୋଗ କରିଥିଲେ । ୧୮୦୩ ମସିହାରେ ଇଂରେଜମାନଙ୍କର କୁଫଳ ଭୋଗ କରିବାକୁ ପଡ଼ିଥିଲା । ଶ୍ରୀଜଗନ୍ନାଥ ମନ୍ଦିର ପରିଚାଳନାରେ ହସ୍ତକ୍ଷେପ, ଗଜପତି ମୁକୁନ୍ଦ ଦେବଙ୍କୁ ଗାଦିଚ୍ୟୁତ, ଇଂରେଜ ମୁଦ୍ରା ପ୍ରଚଳନ, ଯାତ୍ରୀକର ଆଦାୟ, କୁଟୀର ଶିଳ୍ପ ଉପରେ କଟକଣା, ନିଷ୍କର ଜାଗିରି ଉପରେ କର ଧାର୍ଯ୍ୟ, ଖୋର୍ଦ୍ଧାକୁ ଖାସ୍ ମାହଲ୍‌ରେ ପରିଣତ, ଲବଣ ଆଇନ ପ୍ରଚଳନ, ବଙ୍ଗାଳୀ କର୍ମଚାରୀମାନଙ୍କ ହୀନ ଚକ୍ରାନ୍ତ - ତୋଜିମାଟି ମୂଲ୍ୟରେ ସୂର୍ଯ୍ୟା ଆଇନ ବଳରେ କର୍ମଚାରୀ ନିଲାମ, ପାଇକମାନଙ୍କର ମଉଡ଼ମଣି ବକ୍ସିଙ୍କ ପ୍ରତି ଅବିଚାର, ଖୋର୍ଦ୍ଧାରେ ସାମରିକ ଆଇନ ଜାରି, ପୁରୀ, ପିପିଲି, ଲେମ୍ବାଇ ଓ କୋଠ ଦେଶରେ ସାମରିକ ଆଇନ ଜାରି ଓ ମିର୍ଜା ମାଣ୍ଡି ନାମକ ଦାରୋଗାର ଅତ୍ୟାଚାର ଯୋଗୁଁ ସମସ୍ତେ ଅତ୍ୟାଚାରର ଶିକାର ହେଲେ । ତେଣୁ ବାଧ ହୋଇ ବକ୍ସିଙ୍କ ନେତୃତ୍ୱରେ ବିଦ୍ରୋହ କରିବା ପାଇଁ ସମସ୍ତେ ଆଗେଇ ଆସିଥିଲେ । ବକ୍ସିଙ୍କ ସହଯୋଗୀ ନେତାମାନେ ହେଲେ - ଗୋପାଳ ଛୋଟରାୟ, ପଦ୍ମନାଭ ପାଇକରାୟ, ଆଣ ସିଂ, ନାଥ ପ୍ରଧାନ, ନରସିଂହ ଦଳବେହେରା, ଜାମୁକୋଳି ଦଳବେହେରା, କୃଷ୍ଣଚନ୍ଦ୍ର ଭ୍ରମରବର ରାୟ ଇତ୍ୟାଦି ଏବଂ ଖୋର୍ଦ୍ଧାର ଦଳେଇ, ଦଳ ବେହେରା, ପାଇକରାୟ ଓ ବାଣପୁର, ଲେମ୍ବାଇର ପାଇକମାନେ । ପାଇକ ସଂଗଠନ ପାଇଁ ଏହି ଦଳପତିମାନେ ବିଭିନ୍ନ ସ୍ଥାନକୁ ଯାଇଥିଲେ । ରୋଡ଼ଙ୍ଗ ଥିଲା ବିଦ୍ରୋହ ଅଗ୍ନିର ପ୍ରଥମ କେନ୍ଦ୍ରପୀଠ । ବିଦ୍ରୋହୀମାନେ ପ୍ରଥମେ ବାଣପୁର ଥାନା, ଖଜଣାଖାନା ଲୁଟ୍ କରି ନିଆଁ ଲଗାଇ ଦେଲେ । ପରେ ହଜାର ହଜାର ପାଇକ ବିଦ୍ରୋହରେ ଯୋଗ ଦେବା ଦେଖି ସରକାର କର୍ମଚାରୀ ନିଜର ଜୀବନ ରକ୍ଷା ପାଇଁ କଟକ ଓ ଅନ୍ୟତ୍ର ପଳାୟନ କଲେ । ସରକାର କର୍ମଚାରୀ ନିମକହାରାମ ଚରଣ ପଟ୍ଟନାୟକଙ୍କୁ ତା'ର ନିଜ ଗ୍ରାମ କୁଦିଆରୀରେ ପାଇକମାନେ ଘେରାଉ କରି ନିଆଁ ଲଗାଇ ଜୀବନ୍ତ ଦଗ୍ଧ କରାଇଥିଲେ । ବକ୍ସି ଜାଣି ଜାଣି ଲୋକମାନଙ୍କୁ ଉତ୍ତେଜିତ କରିବା ପାଇଁ ଇଂରେଜମାନଙ୍କ ବିରୋଧରେ ରାଜାଙ୍କ ନାମକୁ ଯୋଡ଼ି ଦେଲେ । ଗଜପତି ବାଧ ହୋଇ ବକ୍ସିଙ୍କ କଥାରୁ ବହିର୍ଭୁତ ହୋଇ ପାରିଲେ ନାହିଁ । ସରକାରୀ କଟକଣା ସତ୍ତ୍ୱେ ଏହାକୁ ଅମାନ୍ୟ କରି ରାଜା ସପରିବାର ଖୋର୍ଦ୍ଧାକୁ ଆଗମନ କଲେ ଓ ପୁନର୍ବାର ସିଂହାସନ ଆରୋହଣ କରିବା ପାଇଁ ରାଜି ହେଲେ, ମାତ୍ର ତାହା କାର୍ଯ୍ୟରେ ପରିଣତ ହୋଇ ପାରିଲା ନାହିଁ । କାରଣ ୧୮୧୭ ମସିହା ଏପ୍ରିଲ ୧୮ ତାରିଖରେ ଦୋକନ୍ଦାଠାରେ କ୍ୟାପ୍‌ଟେନ୍ ଲି ଫାବ୍ରେ ସହସ୍ରାଧିକ ପାଇକମାନଙ୍କ ଉପରେ ଆକ୍ରମଣ କରିବାରୁ ସେମାନେ ବିଚଳିତ ହୋଇପଡ଼ିଲେ । ଇଂରେଜ ସେନାପତି ୫୫୦ ସଶସ୍ତ୍ର ବାହିନୀ ଧରି ପୁରୀ ଆସୁଛନ୍ତି ଜାଣି ବକ୍ସି ହତୋତ୍ସାହ ହୋଇ ହଠାତ୍ ପୁରୀ ତ୍ୟାଗ କଲେ । ଆତ୍ମରକ୍ଷା ପାଇଁ ରାଜା ନୂତନ ନୀତି ଧାରଣ କରି ୧୮୧୭ ମସିହା ଜୁଲାଇ ୩ ତାରିଖରେ ସେ ଓ ବକ୍ସି ବାଣପୁର ଆଡ଼େ ଓ ଦେୱାନ କୃଷ୍ଣଚନ୍ଦ୍ର ଭ୍ରମରବର ରାୟ କଣାସ ଆଡ଼େ ଲୁଚି କରି ପଳାଇ ଥିଲେ । ମାତ୍ର ଲି ଫାବ୍ରେ ରାଜାଙ୍କୁ ନଜର ବନ୍ଦୀ କଲେ ଓ ଭାରତର ବଡ଼ଲାଟଙ୍କ ନିର୍ଦ୍ଦେଶକ୍ରମେ ରାଜାଙ୍କୁ ପୁନଃ ବାରବାଟୀ ଦୁର୍ଗରେ ବନ୍ଦୀ କଲେ । ଏହି ବିଦ୍ରୋହ ସମସ୍ତ ପୁରୀ ଜିଲ୍ଲା, ନୟାଗଡ଼, ଦଶପଲ୍ଲା, ରଣପୁର, ବୌଦ, ଘୁମୁସର ଓ ଆଠମଲ୍ଲିକ ଇତ୍ୟାଦି ସ୍ଥାନକୁ ବ୍ୟାପିଗଲା । ଗଞ୍ଜାମଠାରେ ଶ୍ରୀକର ଭଞ୍ଜ ଓ ବକ୍ସି ମିଶି ୨୦୦୦ ବର୍ଗ ମାଇଲ ଅଞ୍ଚଳରେ ଅଶାନ୍ତି ସୃଷ୍ଟି କଲେ । ଘୁମୁସରର ଇଂରେଜ ବିରୋଧୀ ରାଜାଙ୍କର ବକ୍ସି ବଂଶରେ ବୈବାହିକ ସମ୍ପର୍କ ଥିବାରୁ ସେ ବକ୍ସିଙ୍କୁ ସାହାଯ୍ୟ କରିଥିଲେ ଓ ଗଞ୍ଜାମର ଶେରଗଡ଼ ବକ୍ସିଙ୍କର ଶ୍ୱଶୁର ଘର ହୋଇଥିବାରୁ ବକ୍ସି ଓ କୃଷ୍ଣଚନ୍ଦ୍ର ଶେରଗଡ଼ରେ ଆଶ୍ରୟ ନେଲେ । ଏହି ପରିପ୍ରେକ୍ଷୀରେ ଇଂରେଜମାନଙ୍କୁ ଓଡ଼ିଶା ମାଟିରୁ ତଡ଼ିବା ପାଇଁ ବକ୍ସି ମରହଟ୍ଟାମାନଙ୍କ ସାହାଯ୍ୟ ଲୋଡ଼ିଥିଲେ । ଏଥିପାଇଁ ବକ୍ସି ଭୂପସିଂହ ନାମକ ଜନୈକ ମରହଟ୍ଟାଙ୍କୁ ଦୂତ ରୂପେ ପଠାଇଥିଲେ । ବକ୍ସି ଘୁମୁସରର ଦୁର୍ଗାପ୍ରସାଦ ଗଡ଼ରେ ଆତ୍ମଗୋପନ କରିଥିବା ସମୟରେ ତାଙ୍କୁ ଘୁମୁସରର ରାଜା ଶ୍ରୀକର ଭଞ୍ଜ ତାଙ୍କୁ ସାହାଯ୍ୟ କରିଥିବାରୁ ଭଞ୍ଜବଂଶ ଇଂରେଜମାନଙ୍କ କୋପ ଦୃଷ୍ଟିକୁ ଆସି ଏହି ଗୌରବମୟ ବଂଶର ମଧ ବ୍ରିଟିଶମାନଙ୍କ ଦ୍ୱାରା ବିଲୟ ହୋଇଥିଲା । ବକ୍ସିଙ୍କୁ ଧରାଇଦେବା ପାଇଁ ସରକାର ଘୁମୁସର ଗଞ୍ଜାମର ଦୋରା ବିଶୋଇ, ଶ୍ୟାମ ବିଶୋଇ ଓ ବୌଦ ରାଜାଙ୍କୁ ପ୍ରଲୋଭନ ଦେଖାଇ ଥିଲେ । କିନ୍ତୁ ବକ୍ସି ଘୁମୁସର ତ୍ୟାଗ କରି ନୟାଗଡ଼ ଓ ଦଶପଲ୍ଲା ଅଞ୍ଚଳରେ ଲୁଚି ରହି ଥିବାର ସରକାର ଜାଣିପାରି ନୟାଗଡ଼ ରାଜାଙ୍କ ଉପରେ କୋପଦୃଷ୍ଟି ପକାଇଥିଲେ । ଇଂରେଜ ସରକାର ଜଣେ କଲେକ୍ଟର, ଜଣେ କମାଣ୍ଡିଙ୍ଗ ଅଫିସର ଓ କେତେକ ମିଲାଟାରୀ ଅଫିସରଙ୍କୁ ଲଗାଇ ଏବଂ ସରକାରୀ କଳର ସବୁ ଶକ୍ତି ଖଟାଇ ଖୋଜି ମଧ ବକ୍ସି ଓ ଦେୱାନ କୃଷ୍ଣଚନ୍ଦ୍ରଙ୍କୁ ଧରି ପାରିଲେ ନାହିଁ । ତେଣୁ ୧୮୧୮ ମସିହାରେ ସରକାର ଘୋଷଣା କଲେ ଯେ ବକ୍ସି ଜଗବନ୍ଧୁ ଓ ଦେୱାନଙ୍କୁ ଧରାଇ ଦେଲେ ଯଥାକ୍ରମେ ୫୦୦୦ ଟଙ୍କା ଓ ୨୦୦୦ ଟଙ୍କା ଏବଂ ସେମାନଙ୍କର ସହଯୋଗୀ ଅନ୍ୟ ୧୫ ଜଣ ବିଦ୍ରୋହୀ ଆତ୍ମଗୋପନକାରୀ ନେତା ପ୍ରତ୍ୟେକଙ୍କ ପାଇଁ ୧୦୦୦ ଟଙ୍କା ପୁରସ୍କାର ଦିଆଯିବ । କିନ୍ତୁ ଏ ଘୋଷଣାନାମାରୁ

କୌଣସି ଫଳ ନ ମିଳିବାରୁ ସରକାର ପୁଣି ଘୋଷଣା କଲେ ଯେ ଯଦି ବକ୍ସି ଆପେ ଆପେ ଆସି ଧରା ଦେବେ ତା' ହେଲେ ତାଙ୍କୁ ସର୍ବକ୍ଷମା ପ୍ରଦାନ କରାଯାଇ ସମ୍ମାନର ସହିତ ଓଡ଼ିଶା ବାହାରେ କଲିକତାର ଆଖପାଖରେ ନିଜର ବନ୍ଦୀ କରି ରଖାଯିବ । ଏ ଘୋଷଣା ଫଳପ୍ରଦ ନ ହେବାରୁ ପୁଣିଥରେ ସରକାର ଘୋଷଣା କଲେ ଯେ ବକ୍ସି ଆପେ ଆପେ ଆତ୍ମ ସମର୍ପଣ କଲେ ତାଙ୍କୁ ଓଡ଼ିଶା ବାହାରକୁ ନିଆନଯାଇ କଟକ ବା ବାଲେଶ୍ୱରରେ ସସମ୍ମାନେ ରଖାଯିବ । ମାତ୍ର ଏ ତୃତୀୟ ଘୋଷଣାରୁ ମଧ କିଛି ଫଳ ମିଳିଲା ନାହିଁ । ତେଣୁ ୧୮୧୮ ମସିହାରେ କମିଶନର ମି. କେର୍ ଘୋଷଣା କଲେ ସରକାର ବକ୍ସିଙ୍କ ସହ ସମ୍ମାନର ସହିତ କୌଣସି ବିଶ୍ୱସ୍ତ ମଧ୍ୟସ୍ଥଙ୍କ ସହାୟତାରେ ଦ୍ୱିପାକ୍ଷିକ ଆପୋସ ଆଲୋଚନା କରିବା ପାଇଁ ଆଗ୍ରହୀ । ଏହି ଘୋଷଣା ପରେ ବକ୍ସିଙ୍କର ପୋଷ୍ୟପୁତ୍ରଙ୍କ ସହ ସରକାର ଯୋଗାଯୋଗ ସ୍ଥାପନ କରିବାରୁ ବକ୍ସି ଓ ଦେଓ୍ୱାନଙ୍କ ତରଫରୁ ଇଂରେଜ ସରକାରଙ୍କର ଉଦ୍ଦେଶ୍ୟରେ ଲିଖିତ ଏକ ଦୀର୍ଘପତ୍ର ସେହି ପୋଷ୍ୟ ପୁତ୍ର ମାଧ୍ୟମରେ ପୁରୀର ଜଏଣ୍ଟ ମାଜିଷ୍ଟ୍ରେଟ ମେଲଭିଲ୍ ସାହେବଙ୍କୁ ଦିଆଯାଇଥିଲା । ଏଥିରେ ଦାବୀ କରାଯାଇଥିଲା ଯେ ରାଜାଙ୍କୁ ଖୋର୍ଦ୍ଧା ରାଜଗାଦିରେ ଅଭିଷିକ୍ତ କରାଯିବା ସହିତ ବକ୍ସି ଓ ଦେଓ୍ୱାନଙ୍କୁ ନିଜ ନିଜର ଜାଗିର୍ ମାହଲ ବକ୍ସିବାଡ଼ ଓ ଦେଓ୍ୱାନ ବାଡ଼ ଫେରାଇ ଦିଆଯାଉ । କିନ୍ତୁ ଏ ଦାବୀ ପୂରଣ କରିବାରେ ଅସମର୍ଥ ହୋଇ ସରକାର ପୁନଶ୍ଚ ବକ୍ସିଙ୍କ ପ୍ରତି କଠୋର ପ୍ରକ୍ରିୟାର ଆଶ୍ରୟ ନେଇଥିଲେ ଏବଂ ୧୮୨୦ ମସିହା ଜୁଲାଇ ୨୦ ତାରିଖରେ ବକ୍ସିଙ୍କର ପରିବାର ସହିତ ୨୪ ଜଣଙ୍କୁ ଗଞ୍ଜାମ ଜିଲ୍ଲାରୁ ଧରି ଆଣି ବନ୍ଦୀ କଲେ । ବକ୍ସିଙ୍କ ପରିବାରର ୭ ଜଣଙ୍କୁ ବାରବାଟୀ ଦୁର୍ଗରେ ବନ୍ଦୀ କରି ରଖିଲେ । ମାତ୍ର ଏଥିରେ ବକ୍ସି ତରଳିଲେ ନାହିଁ । ବଡ଼ଲାଟ ବକ୍ସିଙ୍କ ବିରୋଧରେ ଏପରି କଠୋର ପଦକ୍ଷେପର ପରିଣାମ ଭୟାବହ ଆଶା କରି ତୁରନ୍ତ ବକ୍ସିଙ୍କ ପରିବାରବର୍ଗଙ୍କୁ ଖଲାସ କରିବାକୁ ନିର୍ଦ୍ଦେଶ ଦେଲେ । ମାତ୍ର ଏକ ମାସ ପରେ ୧୮୨୦ ମସିହା ସେପ୍ଟେମ୍ବର ୧ ତାରିଖରେ ବକ୍ସିଙ୍କ ପରିବାରକୁ ଛାଡ଼ି ଦିଆଗଲା । ୧୮୨୨ ମସିହାରେ ବକ୍ସିଙ୍କ ମାହାଲକୁ ସରକାର ବାଜ୍ୟାପ୍ତ କରି ଦେଲେ । ମାତ୍ର ଏଥିରୁ କିଛି ସୁଫଳ ମିଳିଲା ନାହିଁ । ୧୮୨୩ ମସିହାରେ ଖୋର୍ଦ୍ଧାର ଜଏଣ୍ଟ ମ୍ୟାଜିଷ୍ଟ୍ରେଟ ଉଇଲକିନ୍‌ସନ୍ ପୁନର୍ବାର ବକ୍ସିଙ୍କ ପୋଷ୍ୟପୁତ୍ରଙ୍କ ସହ ଦ୍ୱିପାକ୍ଷିକ ଆଲେଚନା କଲେ ଏବଂ ଘୋଷଣା କଲେ ଯେ ବକ୍ସିଙ୍କ ସହିତ ସରକାର ବନ୍ଧୁତ୍ୱପୂର୍ଣ୍ଣ ସହଯୋଗ ଚାହାନ୍ତି । ତେଣୁ ବକ୍ସି ଆଉ ଆତ୍ମ ସମର୍ପଣ ନ କରି ଆସି ସାକ୍ଷାତ ହୁଅନ୍ତୁ । ସରକାର ତାଙ୍କୁ ସ୍ୱାଗତ କରିବେ ଓ ମାସିକ ୨୦୦ ଟଙ୍କା ଥଇଥାନ ପାଇଁ ପ୍ରଦାନ କରିବେ । ଏହି ଘୋଷଣା ପରେ ମଧ ଦୁଇ ବର୍ଷ କାଳ ବକ୍ସି ଆତ୍ମପ୍ରକାଶ କରି ନଥିଲେ । କିନ୍ତୁ ୧୮୨୫ ମସିହାରେ ବକ୍ସିଙ୍କର ଜଣେ ବିଶ୍ୱସ୍ତ ଶୁଭେଚ୍ଛୁ ନୟାଗଡ଼ ରାଜାଙ୍କ ବେବର୍ତ୍ତା ବରଜୁ ପାଇକରାୟ ବକ୍ସିଙ୍କୁ ଉକ୍ତ ଘୋଷଣାନାମାନୁଯାୟୀ ଆତ୍ମପ୍ରକାଶ କରିବାକୁ ପ୍ରବର୍ତ୍ତାଇ ଉଇଲକିନ୍‌ସନ୍‌ଙ୍କ ସହ ସାକ୍ଷାତ କରାଇବାରେ ସଫଳ ହୋଇଥିଲେ । ଏହାପରେ ସରକାର ନିଜର ଘୋଷଣାନାମାନୁଯାୟୀ ବକ୍ସି ଓ ଦେଓ୍ୱାନଙ୍କୁ ସମ୍ମାନ ପ୍ରଦର୍ଶନ କରିଥିଲେ ଏବଂ ବକ୍ସିଙ୍କୁ କଟକରେ ଥଇଥାନ କରି ମାସିକ ୨୦୦ ଟଙ୍କା ବୃତ୍ତି ପ୍ରଦାନ କରିଥିଲେ । ଏହି ମହାନ ଜାତୀୟବୀର ଇତିହାସ ପୁରୁଷ କଟକରେ ନଜର ବନ୍ଦୀରେ ରହି ୧୮୨୯ ମସିହା ଜାନୁଆରୀ ୨୦ ତାରିଖ ଶନିବାର ଦିନ ପ୍ରାଣତ୍ୟାଗ କରିଥିଲେ ।

ବକ୍ସିଙ୍କ ମୃତ୍ୟୁପରେ ଖୋର୍ଦ୍ଧା ରାଜ୍ୟର ଗୌରବ ରବି ଚିରକାଳ ପାଇଁ ଅସ୍ତମିତ ହୋଇଥିଲା । ସେ ସମଗ୍ର ଭାରତବର୍ଷର ଜଣେ ଶ୍ରେଷ୍ଠ ବୀର ଶହୀଦ ରୂପେ ଚିର ଦିନ ଲାଗି ଅମର ହୋଇ ରହିଲେ । ଖୋର୍ଦ୍ଧା ଭୂମିକୁ ଅବହେଳିତ, ନିଷ୍ପେଷିତ ଓ ଶୋଷଣରୁ ରକ୍ଷା କରିବାକୁ ଯାଇ ସେ ନୀରବ ଜୀବନ ଉତ୍ସର୍ଗକରି ଯେଉଁ ଉଜ୍ଜ୍ୱଳମୟୀ ଗୌରବର ପ୍ରଦର୍ଶନ କରିଛନ୍ତି, ତାହା ଯୁଗ ଯୁଗ ଧରି ଲୋକମୁଖରେ ପ୍ରଚାରିତ ହେଉଥିବ । ବର୍ତ୍ତମାନ ସମାଜ ଉଚ୍ଛୃଙ୍ଖଳ, ଯୁଗ ସମାଜ ପଥଭ୍ରଷ୍ଟ, ସ୍ୱାର୍ଥ ଓ ବ୍ୟକ୍ତିବାଦର କାୟା ବିସ୍ତାର, ଦେଶପାଣ୍ଡିକୁ ନିଜ ପାଣ୍ଡିରେ ମିଶାଇ ଦେବାକୁ ଅକୁଣ୍ଠ ଏହିପରି ଏକ ନ୍ୟସ୍ତସ୍ୱାର୍ଥ ସମାଜକୁ ବର୍ତ୍ତମାନ ଉଦ୍ଧାର କରି ଏକ ଜନମଙ୍ଗଳ ଓ ସମାଜକଲ୍ୟାଣ ରାଷ୍ଟ୍ର କରିବାକୁ ହେଲେ, ବର୍ତ୍ତମାନ ଯୁବସମାଜ ବକ୍ସିଙ୍କ ପରି ନିର୍ଭୀକ ଓ ନିଃସ୍ୱାର୍ଥପର ହେଲେ, ଏ ଦେଶ ଧ୍ୱଂସ ମୁଖରୁ ରକ୍ଷା ପାଇଯିବ । ସେହି ଆଜୀବନ ସଂଗ୍ରାମୀ ବକ୍ସି ଜଗବନ୍ଧୁ କେବଳ ଓଡ଼ିଆ ଜାତିର ନମସ୍ୟ ନୁହଁନ୍ତି, ସେ ସମଗ୍ର ଭାରତୀୟ ସ୍ୱାଧୀନତା ଆନ୍ଦୋଳନ ବା ପ୍ରଥମ ସଶସ୍ତ୍ର ଆନ୍ଦୋଳନର ମହାରଥୀ ଅଟନ୍ତି ।

ଇତିହାସ ବିଭାଗ
ଶ୍ରୀଜଗନ୍ନାଥ ମହାବିଦ୍ୟାଳୟ
କାଇପଦର, ଖୋର୍ଦ୍ଧା



# ଶ୍ରୀଅରବିନ୍ଦ ଦର୍ଶନରେ ଆତ୍ମ-ନିବେଦନ ଓ ସ୍ୱାଧୀନତା

ହାଡ଼ିବନ୍ଧୁ ବିଶ୍ୱାଳ

ପରମ ଯୋଗୀ ଶ୍ରୀଅରବିନ୍ଦ ଆତ୍ମଦାନ ବା ଆତ୍ମନିବେଦନକୁ ଭକ୍ତିଯୋଗର ଚରମ ସାର୍ଥକତା ଭାବେ ପ୍ରତିପାଦିତ କରିଛନ୍ତି । ତାଙ୍କ ମତରେ ବ୍ୟକ୍ତି ତା'ର ସମଗ୍ର ସତ୍ତାକୁ ଭଗବାନଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗୀକୃତ କରିବା ହିଁ ଆତ୍ମ ନିବେଦନ । ଆମେ ଯାହା ହୋଇଥାଉ ଏବଂ ନିଜର ଯାହାକିଛି ରହିଥାଏ, ସେସବୁକୁ ଭଗବାନଙ୍କୁ ଅର୍ପଣ କରି ନିଜ ଇଚ୍ଛାକୁ ତାଙ୍କରି ଦିବ୍ୟ ଇଚ୍ଛା ସହିତ ସର୍ବୋତଭାବେ ମିଶାଇ ଦେବା । ଏପରିକି ନିଜର ଚଞ୍ଚଳ ମନକୁ ସମସ୍ତ ବସ୍ତୁମାନଙ୍କରୁ ପରିହାର କରିଆଣି ନିଜର ଉପାସ୍ୟ ଇଷ୍ଟଙ୍କ ଉପରେ ସ୍ଥିର ରଖିବା । ଏହାଦ୍ୱାରା ଏକ ସ୍ୱତନ୍ତ୍ର ଅବସ୍ଥା ସୃଷ୍ଟି ହୁଏ, ଯେତେବେଳେ ନିଜର ଏକାଗ୍ରତା ପ୍ରଗାଢ଼ ହୋଇ ଆମେ ସମାଧିସ୍ଥ ହୋଇପାରୁ ।

ଯେତେବେଳେ ଆମେ ଆମର ପ୍ରତ୍ୟେକ କର୍ମରେ ତାଙ୍କୁ ମନନ କରୁ ସେତେବେଳେ କ୍ରମଶଃ ଏକ ଦିବ୍ୟ ପୁଲକ ଅନୁଭୂତିକୁ ଆସିଥାଏ, ଏହା ହେଉଛି ଭଗବାନଙ୍କ ସହ ଆମର ମିଳନଜନିତ ଦିବ୍ୟାନୁଭୂତିରୁ ଆସିଥାଏ, ଯାହା ତୁରିୟାନନ୍ଦଠାରୁ ମଧ୍ୟ ଆହୁରି ଶ୍ରେଷ୍ଠ ଓ ଅନୁଭବର ବିଷୟ । ଏସବୁ ପ୍ରେମସାଧନର ପରିସରଭୁକ୍ତ ।

ଆମେ ଆମର ଦୃଷ୍ଟିକୁ ଉର୍ଦ୍ଧ୍ୱଚେତନାକୁ ସଂପ୍ରସାରିତ କଲେ ଆମର ଏପରି ଏକ ସାମର୍ଥ୍ୟ ସୃଷ୍ଟି ହେବ, ଯାହାର ତାତ୍ତ୍ୱିକ ମାର୍ଗ ଦର୍ଶନ କରାଇବାକୁ ଯାଇ ଶ୍ରୀଅରବିନ୍ଦ ସାବିତ୍ରୀ ମହାକାବ୍ୟରେ କହିଛନ୍ତି - 'ସେଇ ପରମଲୋକର ସନ୍ନିକଟରେ ଜଗତମାନ ରହିଛନ୍ତି, ଯେଉଁଠାରେ ସତ୍ୟ ପ୍ରତି ଉତ୍ତରପୂର୍ଣ୍ଣ ହେବା ଦ୍ରୁତ ଓ ସୁନିଶ୍ଚିତ, ଯେଉଁଠି ଚିନ୍ମୟସତ୍ତା ତା'ର ରୂପ ବଦ୍ଧତା ଦ୍ୱାରା ବାଧାପ୍ରାପ୍ତ ନୁହେଁ । ହୃଦୟ ତୀକ୍ଷ୍ଣ ବିଭେଦରେ ଧୃତ ଓ ଜୀର୍ଣ୍ଣ ହୁଏନା, ଆନନ୍ଦ ଓ ସୌନ୍ଦର୍ଯ୍ୟ ଯେଉଁ ସ୍ଥଳର ଅଧିବାସୀ ଏବଂ ପ୍ରେମ ଆଉ ମଧୁରତା ଜୀବନର ମୂଳ ସୁରର ଲୟ ନିୟାମକ । ସେଠାରେ ସୂକ୍ଷ୍ମତର ବସ୍ତୁଟିଏ ସୂକ୍ଷ୍ମତାର ଆଧାରରେ ପୃଥିବୀ କେବଳ ସ୍ୱପ୍ନ ଦେଖି ପାରୁଥିବା ଦିବ୍ୟ ପୁରୁଷଙ୍କର ଦେହ ଗଢ଼ିଦିଏ ।'

ଦୃଶ୍ୟମାନ ଜଗତରେ ଆଧିଭୌତିକ ଦେବତାମାନେ ରାଜତ୍ୱ କରନ୍ତି । ସେଠାରେ ମଧ୍ୟ ଦିବ୍ୟ ପ୍ରେରଣାର ଆଲୋକ ନୃତ୍ୟ କରୁଥାଏ । ଯଦିଓ ପରମାନନ୍ଦ ପରମପିତାଙ୍କ ପରିପାଟୀ ଅଥବା ପ୍ରମୂର୍ତ୍ତ ମହାବାକ୍ୟ ଓ ଚୂଡ଼ାନ୍ତ ଆଧାତ୍ମ ଉଲ୍ଲାସ ସେଠାରେ ନଥିଲେ ବି ସେଠାରେ ବର୍ତ୍ତମାନ ଥାଏ ସାମଞ୍ଜସ୍ୟର ଏକ ଯାଦୁକରୀ ମାଧୁର୍ଯ୍ୟ । ଆମେ ସେଇଠି ଲକ୍ଷ୍ୟକରୁ ଅଣୁତମ କ୍ଷୁଦ୍ରତା ମଧ୍ୟରେ ବିପୁଳ ଅତ୍ୟାଶ୍ଚର୍ଯ୍ୟ, ପରିମିତ ସ୍ଥଳରେ ଏକ ଉଚ୍ଛଳ ପୁଲକ, ଯାହାର ନାମ ଦିବ୍ୟାନୁଭୂତି । ସେଠି ଆମେ ହଜିଯିବାକୁ ହିଁ ଭଲ ପାଉ ।

ନାଟକ 'ବାସବଦତ୍ତା'ରେ ଗୋପାଳକ ମୁଖରେ ଉଦୟନଙ୍କୁ ଆହ୍ୱାନ କରି କହିଛନ୍ତି - 'ମୁଁ ତୁମକୁ ଏକ ପୁରାତନ ଏବଂ ଭବ୍ୟ ଜଗତକୁ ନେବି ଯେଉଁଠି ସବୁ କିଛି ମୋର ପ୍ରିୟ । ତୁମେ ସେଠାରେ ରହିବ କେବଳ ଉଦୟନ ହୋଇ ରାଜେଶ୍ୱର ଉଦୟନ ନୁହେଁ । ବହୁପ୍ରକାର ସୁନ୍ଦର ଓ ନୂତନ ବନ୍ଧନରେ ମୁଁ ତୁମକୁ ବାନ୍ଧି ନେବି ନିଜ ଇଚ୍ଛାମତେ ।' ଏଠି ପାର୍ଥିବ ବନ୍ଧନ ତ୍ୟାଗ ଓ ପାରମାର୍ଥିକ ବନ୍ଧନର ସ୍ୱୀକାର କଥା ହିଁ କୁହାଯାଇଛି । ଯେଉଁ ବନ୍ଧନ କେବଳ ପରମପିତାଙ୍କ ସହିତ ତାଙ୍କୁ ହିଁ କେନ୍ଦ୍ରକରି ସମ୍ଭବ ହୋଇଥାଏ ।

ପ୍ରେମ ସ୍ୱର୍ଗୀୟ ଓ ଚିରନ୍ତନ । ପ୍ରେମ ସାଧନାଠାରୁ ଶ୍ରେଷ୍ଠ ସାଧନ ଆଉ କିଛି ନାହିଁ । ନିଜର ସର୍ବସ୍ୱକୁ ଜଳାଞ୍ଜଳି ଦେବାପରେ ହିଁ ପ୍ରେମ ସୃଷ୍ଟି ହୁଏ । ପ୍ରେମର ମଧୁର ଆଗମନକୁ ଦେଖି ଅହଂକାର ପଳାୟନ କରେ । ତେଣୁ ପ୍ରେମ ସାଧନ ବ୍ୟତିରେକେ ମନୁଷ୍ୟ ଉର୍ଦ୍ଧ୍ୱ-ଚେତନଯୁକ୍ତ ହେବାର ଅନ୍ୟ କୌଣସି ପଥ ନାହିଁ । ସେଥିପାଇଁ ଶ୍ରୀଅରବିନ୍ଦ ତାଙ୍କର 'ସୁପରମ୍ୟାନ' ଗ୍ରନ୍ଥରେ କହିଛନ୍ତି - 'ନୈତିକ କ୍ରମବିକାଶକୁ ଏଡ଼ାଇଯିବା ଏକ ଖୁବ୍ ବଡ଼ ପ୍ରମାଦ ।' ସେ ଲେଖିଛନ୍ତି, 'ଈଶ୍ୱରଙ୍କ ଚେତନା କ୍ରମ ବିକଶିତ ହେଉ ହେଉ ମଣିଷର ଅନ୍ତରରେ ଦିବ୍ୟବୋଧି ଜାଗ୍ରତ ହୁଏ ଏବଂ ତା' ଅନ୍ତରରେ ଆଲୋକ, ଆନନ୍ଦ ଏବଂ ପ୍ରେମର ଉଦୟ ହୁଏ । ସେ ଆନନ୍ଦ ପାଏ ଅନ୍ୟର ସେବାକରି ଏବଂ ସେହି ସେବାଦ୍ୱାରା ହିଁ ସେ ଶାସନ ମଧ୍ୟ କରିଥାଏ ।

ପ୍ରେମର ପଥ ଆଲୋକର ପଥ । ପ୍ରେମର ଶିକ୍ଷା ଭଗବଦ୍ ଶିକ୍ଷା ଯେଉଁ ଶିକ୍ଷା ଆରୋହଣ ଶିଖାଏ, ଖସି ପଡ଼ିବା ନୁହେଁ । ଯାହା ନିରୀକ୍ଷଣ କରିବାକୁ ପ୍ରେରଣା ଦିଏ ଗିଳି ପକାଇବାର ଆବର୍ଜିଆ ଭାବନା ନୁହେଁ । ପ୍ରେମ ସମଗ୍ର ମାନବ ସମାଜ ଓ ପ୍ରାଣୀ ସମାଜ ପ୍ରତି ସହାନୁଭୂତିଶୀଳ ହୋଇ ରହିବା ସଂଗେସଂଗେ ନିଜ ଭିତରେ ଏକ ଉଜ୍ଜ୍ୱଳ ଓ ସୁଖମୟ ସାମଗ୍ରୀକ ଜୀବନକୁ ଉପଲବ୍ଧି କରିଥାଏ ।

ନିଜ ଜୀବନରେ ଜଗତକୁ ଅନୁଭବ କରିବାର ପ୍ରବୃତ୍ତି ହେଉଛି ସ୍ୱାଧୀନତା ଶିକ୍ଷା । ନିଜେ ଖାଇଲେ ବୁଭୁକ୍ଷା ମେଣ୍ଟେ, ଅଥଚ ସମସ୍ତେ ଖାଇଛନ୍ତି ଏହି ଅନୁଭବଦ୍ୱାରା ଦିବ୍ୟାନନ୍ଦ ପ୍ରାପ୍ତ ହୁଏ । ଗୋଟିଏ ଦେହର ଭୋକ ମେଣ୍ଟାଉଥିବା ବେଳେ ଅନ୍ୟ ଦ୍ୱାରା ଆତ୍ମାଶାନ୍ତି ସମ୍ଭବ ହୁଏ । ସ୍ୱାର୍ଥପରତା ନୁହେଁ ଆତ୍ମାର ସମସ୍ତ ପରିପ୍ରକାଶ ସହିତ ସେ ଅନ୍ୟ ସହ ଏକାତ୍ମ ହୁଏ - ଅନ୍ୟର ଆତ୍ମା ସହିତ ମିଳିତ ହୋଇ ପରମ ପ୍ରେମାନନ୍ଦ ଅନୁଭବ କରେ । ଏହା ଏକ ନିଷ୍କ୍ରିୟ ବା ଅସମ୍ବେଦୀ ଅଭିଜ୍ଞତା ନୁହେଁ । ବରଂ ଏହା ପ୍ରେମ ଓ ଆନନ୍ଦର ଅନୁଭବ ଭିତରେ ଗତିଶୀଳ ଆତ୍ମପ୍ରକାଶ ।

ପୃଥିବୀରେ ଯେତେ ବିପ୍ଳବ ସଂଗଠିତ ହୋଇଛି ତା' ମୂଳରେ ରହିଛି ହିଂସା ବା ଶାନ୍ତିର ଅପ୍ରାପ୍ତି ଜନିତ ଅନ୍ତର୍ଦାହ । ସେହି ପୁଞ୍ଜିଭୂତ ଅନ୍ତର୍ଦାହରୁ ଆରମ୍ଭ ହୁଏ ରାଷ୍ଟ୍ର-ବିପ୍ଳବ । ପରେ ଶାନ୍ତି ସ୍ୱରୂପ ଆତ୍ମପ୍ରକାଶ କରେ ସମାନତାର ଚିନ୍ତା । ଏହି ଚିନ୍ତା ଏବର ନୁହେଁ ସୃଷ୍ଟି ଆରମ୍ଭର । ଈଶୋପନିଷଦରେ ପ୍ରଥମରୁ Equality ବା ସମାନତାର କଥା ଅତି ପ୍ରାଞ୍ଜଳଭାବେ ପରିପ୍ରକାଶ ହୋଇଛି । ଏହି ସାମ୍ୟ ସହ ନ୍ୟାୟ । ସ୍ୱାଧୀନତା ଓ ମୈତ୍ରୀ Justice, Liberty & Faternity ଅଙ୍ଗାଙ୍ଗୀଭାବେ ଜଡ଼ିତ । ଯାହାକୁ ଆମର ସ୍ୱାଧୀନ ଭାରତବର୍ଷର ସମ୍ବିଧାନ ପ୍ରସ୍ତାବନାରେ ଘୋଷିତ କରି ଭାରତକୁ ଏକ ସାର୍ବଭୌମ ଗଣତାନ୍ତ୍ରିକ ରାଷ୍ଟ୍ରର ମର୍ଯ୍ୟାଦା ପ୍ରଦାନ କରିଛି । ପ୍ରେମ ସହିତ ଏହି ସ୍ୱତନ୍ତ୍ର ଶବ୍ଦମାନ କେତେ ଜଡ଼ସଡ଼ ତାହା ଅନୁଭବର ବିଷୟ । ପ୍ରେମ ବ୍ୟତିରେକ ନ୍ୟାୟ, ସ୍ୱାଧୀନତା ସାମ୍ୟ ଓ ମୈତ୍ରୀ କଥା ଚିନ୍ତା ହିଁ କରାଯାଇନପାରେ ।

ଜାତିର ଜନକ ମହାତ୍ମା ଗାନ୍ଧୀ ଦିନେ ଦମ୍ଭର ସହିତ କହିଥିଲେ - 'ମୁଁ ଭାରତ ଲାଗି ଏଭଳି ଏକ ସମ୍ବିଧାନ ପ୍ରସ୍ତୁତିରେ ପ୍ରୟାସୀ, ଯାହା ଭାରତବାସୀଙ୍କୁ ସବୁପ୍ରକାର ଅଧିକାର ପ୍ରଦାନ କରିବ ।' ସମ୍ବିଧାନ ପ୍ରଣେତାମାନେ ମଧ୍ୟ ଏହିଭଳି ଉଦାରମନା ଓ ସତର୍କ ହୋଇ ଏକ ସର୍ବୋତ୍ତମ ରାଷ୍ଟ୍ର ନିର୍ମାଣ ଲାଗି ଏକ ବୃହତ୍ତମ ସମ୍ବିଧାନ ପ୍ରଣୟନ କଲେ । ସେମାନଙ୍କର ମହାନ୍ ଚିନ୍ମୟ ଚିନ୍ତନର ପ୍ରମାଣ ମିଳେ ସମ୍ବିଧାନର ଆଦ୍ୟଭାଷରୁ 'We the people of India'ରୁ ଅର୍ଥାତ୍ ସମ୍ବିଧାନ ଲୋକମାନଙ୍କର ଏବଂ ଲୋକମାନଙ୍କ ପାଇଁ । ଇତିମଧ୍ୟରେ ଏହା ସର୍ବାଧିକ ଥର ମଧ୍ୟ (୯୨ ଥର) ସଂଶୋଧିତ ହେଲାଣି, ତଥାପି ନିର୍ମଳ ଶାସନ ପ୍ରଦାନରେ ଦେଶ ସମର୍ଥ ହୋଇପାରୁନି । ନ୍ୟାୟ ବିଡ଼ମ୍ବିତ ହେଉଛି । ଦୁର୍ନୀତି ସର୍ବତ୍ର ପରିବ୍ୟାପ୍ତ ଓ ରାଜନୀତିରେ ନିର୍ମଳ ଭାବମୂର୍ତ୍ତିର ଅଭାବ ସଂଘୀୟ ଶାସନ ବ୍ୟବସ୍ଥାକୁ ପଙ୍ଗୁ କରି ଦେଲାଣି । ଏହାର କାରଣ ଖୋଜିଲେ ପୋଥି ଅଣ୍ଟିବ ନାହିଁ କିନ୍ତୁ ଶ୍ରୀଅରବିନ୍ଦଙ୍କ ଦର୍ଶନରେ ଏହା ହେଉଛି ପ୍ରେମର ଅଭାବ, ଆତ୍ମଦାନର ଅଭାବ ।

ପ୍ରେମ ଈର୍ଷା କରେନା, ପ୍ରେମ ଆତ୍ମଶ୍ଳାଘା କରେନା, ବଡ଼େଇ କରେନା, ପର ଅପର ବିଚାର ଆଣେନା - ପ୍ରେମୀର ହୃଦୟ ପ୍ରିୟତମଙ୍କ ମନ୍ଦିର, ଏହି ଚିରନ୍ତନ ବିଶ୍ୱାସ ହେଉଛି ମହାଭାରତୀୟତା । ଅନ୍ୟ ପାଇଁ ବଞ୍ଚିବା ବିଶ୍ୱଭ୍ରାତୃତ୍ୱ । ଆମେ ସମ୍ବିଧାନର ମୁଖବନ୍ଧରେ ପୂର୍ବରୁ 'ସାମାଜିକ, ରାଜନୈତିକ, ଅର୍ଥନୈତିକ ନ୍ୟାୟ' କଥା ଲେଖିଥିଲେ ବି ପଛରେ ୧୯୭୬ ମସିହା ୪୨ତମ ସଂଶୋଧନରେ 'ସମାଜବାଦୀ ଓ ଧର୍ମନିରପେକ୍ଷ' ଶବ୍ଦମାନଙ୍କୁ ଯୋଗକଲୁ । ଏହାଦ୍ୱାରା କୌଣସି ବିଶେଷ କାର୍ଯ୍ୟ ସାଧିତ ହୋଇନାହିଁ କି ହେବାର ନାହିଁ । କେବଳ ମନ ବୁଝିବାର ମାନସିକତା ପୂର୍ଣ୍ଣ ହୋଇଛି । ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ନ୍ୟାୟଠାରୁ ସମାଜବାଦ ଯେପରି ଅଲଗା ନୁହେଁ ସେପରି ସବୁଧର୍ମ ଓ ଉପାସନାରେ ଜନସାଧାରଣଙ୍କ ପୂର୍ଣ୍ଣ ସ୍ୱାଧୀନତା ପ୍ରଦାନ ଧର୍ମନିରପେକ୍ଷତାଠାରୁ ଭିନ୍ନ ଅନ୍ୟ କିଛି ନୁହେଁ । କେବଳ ସମ୍ବିଧାନକୁ କାର୍ଯ୍ୟକାରୀ କରିବାର ମାନସିକତା ଉପରେ ନିର୍ଭର କରୁଛି ପ୍ରଣେତାମାନଙ୍କର ଉଦ୍ଦେଶ୍ୟ ଓ ଲକ୍ଷ୍ୟ । ସେଥିପାଇଁ ସମ୍ବିଧାନ ଚିଠା ପ୍ରସ୍ତୁତି କମିଟିର ସଭାପତି ଡ: ବି.ଆର୍. ଆମ୍ବେଦକର ୧୯୪୯ ମସିହା ନଭେମ୍ବର ୨୫ ତାରିଖରେ ଅନୁଷ୍ଠିତ ତର୍କ ସଭାରେ କହିଥିଲେ - 'However bad a constitution may be, it is sure to turnout bad because those who are called to work it happen to be a bad lot. However, bad a constitution may, it may turnout to be good if those are called to work it happen to be a good lot. The working of a constitution does not depend wholly upon the nature of the constitution.' (ସମ୍ବିଧାନର ରୂପରେଖ) ଯାହା ହେଉପଛେ, ଯଦି ଉପଯୁକ୍ତ ଭାବେ ତାହାକୁ କାର୍ଯ୍ୟକାରୀ କରାନଯାଏ ତା'ହେଲେ ତା'ର ସୁଫଳ ମିଳିବ ନାହିଁ । ଯେକୌଣସି ପ୍ରକାର ସମ୍ବିଧାନକୁ ଯଦି ସଠିକ୍ କାର୍ଯ୍ୟକାରୀ କରାଯାଏ ତେବେ ନିଶ୍ଚୟ ଏହା ଫଳପ୍ରଦ ହେବ । ସମ୍ବିଧାନର କାର୍ଯ୍ୟକାରିତା ତେଣୁ ସଂପୂର୍ଣ୍ଣଭାବେ ସମ୍ବିଧାନର ପ୍ରବୃତ୍ତି ଉପରେ ନିର୍ଭର କରେ ନାହିଁ ।)

ଶ୍ରୀଅରବିନ୍ଦଙ୍କ ମତରେ ପ୍ରେମ ବିନା ସ୍ୱାଧୀନତା ଲାଭ ଯେପରି ଅସମ୍ଭବ ସେଭଳି ପ୍ରେମ ବ୍ୟତିରେକେ ରାଷ୍ଟ୍ର ନିର୍ମାଣ ଓ ରାଷ୍ଟ୍ର ଶାସନ ସୁଦୂର ପରାହତ । ସ୍ୱାଧୀନତାର ବାସ୍ତବ ଅର୍ଥ ହେଉଛି ସ୍ୱ ବା ଆତ୍ମାଙ୍କ ଅଧୀନ ଇନ୍ଦ୍ରିୟମାନଙ୍କର ଅଧୀନ ନୁହେଁ । ସେଥିପାଇଁ ଭଗବାନଙ୍କ ନିକଟରେ ନିଃଶେଷ ଆତ୍ମସମର୍ପଣ ହେଉଛି ବାସ୍ତବ ସ୍ୱାଧୀନତା । ନିଜର ବୋଲି କିଛି ନରଖି ସବୁ ସେହି ପରମପିତାଙ୍କୁ ସମର୍ପଣ କରି ଦେଇ ତାଙ୍କର ଦିବ୍ୟକୃପା ଅବଲମ୍ବନରେ ବଞ୍ଚିବା ହେଉଛି ସ୍ୱାଧୀନାତ୍ମାର ଚରମ ଓ ପରମ କର୍ତ୍ତବ୍ୟ । ସେଥିପାଇଁ ଶ୍ରୀଅରବିନ୍ଦ କହିଛନ୍ତି - 'ଇନ୍ଦ୍ରିୟର ଦାସ ବା ଅସୁର ନିଜର ଅହଂକାର, ସ୍ୱାର୍ଥପରତା ଓ ଅଧିକାର ସ୍ପୃହା ଲାଗି ଯେ ନିଜେ ନିମ୍ନଗାମୀ ହୋଇଛି ସେକଥା ବୁଝିପାରେ ନାହିଁ । ସେହି ଉଜ୍ଜ୍ୱଳ ଅନ୍ତର୍ଦୃଷ୍ଟି ଅସୁରର ନଥାଏ ।

ସଂପାଦକ 'ଓଁ ଗୁରୁବାଣୀ'
ଗଡ଼ନିପାଣିଆ, ନୟାହାଟ
ପୁରୀ - ୭୫୨୧୦୭

# ଅଗଷ୍ଟ ୯'ର ସନ୍ଦେଶ

ବଳଭଦ୍ର ଘଡାଇ

ଋଷ୍ ବିପ୍ଳବ ଓ ଫରାସୀ ରାଷ୍ଟ୍ର ବିପ୍ଳବ ପରି ଭାରତରେ ଅଗଷ୍ଟ ବିପ୍ଳବ (ଭାରତଛାଡ଼ ଆନ୍ଦୋଳନ) ବିଶ୍ୱ ଇତିହାସରେ ଏକ ଅବିସ୍ମରଣୀୟ ଘଟଣା । ଏହା ଥିଲା ବ୍ରିଟିଶ୍ ଜାତି ପ୍ରତି ଗାନ୍ଧିଜୀଙ୍କର ଚରମ ଓ ଶେଷ ଆହ୍ୱାନ ଏବଂ ତାଙ୍କରି ନେତୃତ୍ୱରେ ଭାରତର ଜନସାଧାରଣ ଯେଉଁ ଅଭୂତପୂର୍ବ ବୀରତ୍ୱ ଓ ତ୍ୟାଗର ପରାକାଷ୍ଠା ପ୍ରଦର୍ଶନ କରିଯାଇଛନ୍ତି, ତାହା ଇତିହାସରେ ବିରଳ ।



ସାର ଷ୍ଟାଫୋର୍ଡ଼ କ୍ରିପସଙ୍କ ପ୍ରସ୍ତାବ ପ୍ରତ୍ୟାଖ୍ୟାନ, ବ୍ରିଟିଶ ସରକାରର ସାମ୍ରାଜ୍ୟବାଦ ଦମନ ନୀତି, ମୁସଲିମ୍ ଲିଗର ପ୍ରଖ୍ୟାତ ନେତା ମହମ୍ମଦ ଅଲ୍ଲୀ ଜିନ୍ନାଙ୍କର ପାକିସ୍ଥାନ ଗଠନ ଦାବୀ ଓ ଜାପାନୀମାନଙ୍କର ସୀମାନ୍ତ ଆକ୍ରମଣର ଆଶଙ୍କା ଫଳରେ ଭାରତର କୋଣେ ଅନୁକୋଣେ ଏକ ନୈରାଶ୍ୟ-ଜନକ ବାତାବରଣ ପରିଲକ୍ଷିତ ହୋଇଥିଲା । ତିଳକଙ୍କ 'ସ୍ୱାଧୀନତା ମୋର ଜନ୍ମଗତ ଅଧିକାର' (Liberty is My Birth Right) ମନ୍ତବ୍ୟକୁ ସାକାର କରିବା ପାଇଁ ଗାନ୍ଧିଜୀ ସେଦିନ ସମଗ୍ର ଦେଶବାସୀଙ୍କୁ ଏକ ନୂତନ ମନ୍ତ୍ରରେ ଦୀକ୍ଷିତ କରାଇଥିଲେ । ଏହି ମହାନ ମନ୍ତ୍ର ହେଲା 'କର ବା ମର' (Do or Die) । ଏହାରି ମାଧ୍ୟମରେ ସେ ଜଣାଇ ଦେଲେ ଯେ ଆମେ ଭାରତକୁ ପରାଧୀନତାର ଶୃଙ୍ଖଳରୁ ମୁକ୍ତ କରିବୁ ନଚେତ୍ ଏହି ଉଦ୍ୟମରେ ପ୍ରାଣପାତ କରିବୁ । ଆଉ ଦାସତ୍ୱରେ ରହି ଆମେ ବଞ୍ଚିପାରିବୁ ନାହିଁ ।

ବହୁ ସଂଖ୍ୟକ କଂଗ୍ରେସ ନେତାଙ୍କ ବିରୋଧ ସତ୍ତ୍ୱେ ୧୯୪୨ ମସିହା ଜୁଲାଇ ୧୪ ତାରିଖ ଦିନ ଗାନ୍ଧିଜୀଙ୍କ ନେତୃତ୍ୱରେ ୱାର୍ଦ୍ଧାଠାରେ କଂଗ୍ରେସ କାର୍ଯ୍ୟକାରୀ କମିଟି ଯେଉଁ ଗୁରୁତ୍ୱପୂର୍ଣ୍ଣ ପ୍ରସ୍ତାବଟି ଗ୍ରହଣ କଲା । ତାହା ହେଲା, 'ଭାରତର ଶାସନ ଓ ପ୍ରତିରକ୍ଷା ଭାର ଭାରତୀୟଙ୍କ ହସ୍ତରେ ଅର୍ପଣ କରି ଇଂରେଜମାନେ ତତ୍କ୍ଷଣାତ୍ ଭାରତଛାଡ଼ି ଚାଲି ଯାଆନ୍ତୁ' ବୋଲି ଏକ ନିର୍ଦ୍ଦେଶନାମା । ଏହା ହିଁ ହେଉଛି ଭାରତଛାଡ଼ ପ୍ରସ୍ତାବ ।

୧୯୪୨ ଅଗଷ୍ଟ ୭ ତାରିଖ ଦିନ ଗୋୱାଲିଆ ଟ୍ୟାଙ୍କ ମୈଦାନରେ ଏ.ଆଇ.ସି.ସି. (A.I.C.C.)ର ୫୫ତମ ଅଧିବେଶନ ଅନୁଷ୍ଠିତ ହେଲା । ବିପୁଳ ଉତ୍ସାହ ଓ ଉନ୍ମାଦନା ମଧ୍ୟରେ ଅଗଷ୍ଟ ୮ ତାରିଖ ରାତି ୧୧ଟା ସମୟରୁ କଂଗ୍ରେସ କାର୍ଯ୍ୟକାରୀ ବୈଠକରେ ଭାରତଛାଡ଼ ପ୍ରସ୍ତାବ ସମ୍ପର୍କରେ ଆଲୋଚନା ଚାଲିଥିଲା । ଗାନ୍ଧିଜୀ କଂଗ୍ରେସ ସଦସ୍ୟମାନଙ୍କୁ ଉଦ୍‌ବୋଧନ ଦେଇ କହିଥିଲେ, 'ମୁଁ ଆପଣଙ୍କୁ ଛୋଟ ମନ୍ତ୍ରଟିଏ ଦେଉଛି । ଆପଣମାନେ ଏହାକୁ ହୃଦୟରେ ଛପାଇ ଆପଣଙ୍କର ପ୍ରତ୍ୟେକଙ୍କ ଶ୍ୱାସକ୍ରିୟାରେ ଏହା ମଧ୍ୟ ପରିପ୍ରକାଶ ହେଉ । ଏହି ମନ୍ତ୍ରଟି 'କର ବା ମର', ଆମେ ଭାରତବର୍ଷକୁ ସ୍ୱାଧୀନ କରିବା କିମ୍ବା ସେହି ପ୍ରଚେଷ୍ଟାରେ ମୃତ୍ୟୁବରଣ କରିବା କିନ୍ତୁ ଆମେ ଯେପରି ଚିରନ୍ତନ ଦାସତ୍ୱକୁ ଦେଖିବା ପାଇଁ ନ ବଞ୍ଚିନ୍ତି ।' ରାତି ୧୨ ବାଜି ଅଗଷ୍ଟ ୯ ତାରିଖରେ ଆରମ୍ଭ ହେଲା । ସେହି ରାତ୍ରିରେ ନିସ୍ତବ୍ଧ ପ୍ରହରରେ ଅତି ଗୋପନରେ ଭାରତଛାଡ଼ ବୈପ୍ଳବିକ ପ୍ରସ୍ତାବ ଅନୁମୋଦିତ ହେଲା । ଅଗଷ୍ଟ ୯ ତାରିଖ ପ୍ରତ୍ୟୁଷରୁ ଗାନ୍ଧିଜୀ, ଆଜାଦ୍, ନେହେରୁ, ଆସଫଅଲ୍ଲୀ ପ୍ରମୁଖ ତୁଙ୍ଗ ନେତାମାନଙ୍କୁ ଅଟକ ଆଇନ (Preventive Detention Act) ବଳରେ ଗିରଫ କରି ନେଇ ବିନା ବିଚାରରେ ଅନିର୍ଦ୍ଦିଷ୍ଟ କାଳ ପାଇଁ କାରାଗାରରେ ରୁଦ୍ଧ କରିଦିଆଗଲା ।

ଠିକ୍ ଏହାପରେ ସାରା ଦେଶରେ ସ୍ୱାଧୀନତା ସଂଗ୍ରାମର ବହ୍ନିଶିଖା ପ୍ରଜ୍ୱଳିତ ହୋଇଗଲା । ବମ୍ବେର ଗୋୱାଲିଆ ଟ୍ୟାଙ୍କରେ ପ୍ରାୟ ଲକ୍ଷାଧିକ ଲୋକଙ୍କର ସମାଗମ ହୋଇଥିଲା । ଏହି ସଭାରେ ଅରୁଣା ଆସଫ୍‌ଅଲ୍ଲୀଙ୍କର ଅଗ୍ନିବର୍ଷୀ ଭାଷଣ ଭାରତୀୟଙ୍କ ହୃଦୟରେ

ଶତସିଂହର ବଳ ସଂଚାର କରିଥିଲା । ପୋଲିସ ଗୁଳିକୁ ଭ୍ରୂକ୍ଷେପ ନକରି ଲୋକମାନେ ଅସହଯୋଗ ଆନ୍ଦୋଳନରେ ଝାସ ଦେଲେ । ବ୍ରିଟିଶ ସରକାର ଯୁଦ୍ଧକାଳୀନ ଭିତ୍ତିରେ ଏହି ଆନ୍ଦୋଳନକୁ ଦମନ କରିବାକୁ ଯାଇ ଗୁଳି ଓ ଲାଠି ଚାଳନା, ଆକାଶ ମାର୍ଗରୁ ଗୋଳାବର୍ଷଣ ଓ ବ୍ୟାପକ ଗିରଫଦାରୀ ପ୍ରଭୃତି ଉପାୟ ଅବଲମ୍ବନ କଲେ । ପ୍ରାୟ ଏକ ହଜାର ଲୋକ ମୃତ୍ୟୁବରଣ କଲେ ଏବଂ ୬୦ ହଜାରରୁ ଅଧିକ ଜେଲ ବରଣ କଲେ । ୧୮୦୦୦ ଭାରତୀୟଙ୍କୁ ବିନାବିଚାରରେ ଅଟକ କରି ରଖାଯାଇଥିଲା । ଶାସନ ଘୋଷଣା କରାନଯାଇ ସୁଦ୍ଧା ସେନାବାହିନୀ ହାତରେ ଶୃଙ୍ଖଳା ରକ୍ଷାର ଦାୟିତ୍ୱ ନ୍ୟସ୍ତ କରାଗଲା । ଇଂରେଜ ସରକାରର ପାଶବିକ ଦମନଲୀଳା ସତ୍ତ୍ୱେ ଭାରତୀୟଙ୍କ ହୃଦୟ ଗହ୍ୱରରୁ ମୁକ୍ତିର ମଶାଲକୁ ନିର୍ବାପିତ କରାଯାଇପାରି ନଥିଲା ।

ହଜାର ହଜାର ସଂଖ୍ୟକ ସ୍ୱାଧୀନତା ସଂଗ୍ରାମୀ ଲୁକ୍କାୟିତ ଭାବେ ସମାଜର ସବୁଶ୍ରେଣୀର ଲୋକଙ୍କ ସହିତ ପ୍ରତ୍ୟକ୍ଷ ସମ୍ପର୍କ ସ୍ଥାପନ କରିବା ଫଳରେ ସହର ଓ ଗ୍ରାମାଞ୍ଚଳରୁ ଭାରତୀୟ ଜନତା ଏ ସଂଗ୍ରାମ ପାଇଁ ନିଜକୁ ସମର୍ପି ଦେଲେ ।

ସରକାର ଓ ଜନସାଧାରଣଙ୍କ ତରଫରୁ ଯେତେ ସବୁ ହିଂସା କାଣ୍ଡ ଘଟିଲା ସେଥିପାଇଁ କଂଗ୍ରେସ ଓ ଗାନ୍ଧିଜୀ ସଂପୂର୍ଣ୍ଣ ଦାୟୀ ବୋଲି ବ୍ରିଟିଶ ସରକାର ପ୍ରଚାର ଚଳାଇଲା । ଏତାଦୃଶ୍ୟ ଅପପ୍ରଚାରର ପ୍ରତିବାଦରେ ଗାନ୍ଧିଜୀ ୧୯୪୩ ମସିହା ଫେବ୍ରୁଆରୀ ୧୦ ତାରିଖ ଦିନ ଜେଲରେ ତାଙ୍କର ଐତିହାସିକ ଅନଶନ ଆରମ୍ଭ କଲେ ଏବଂ ଏହା ୨୧ ଦିନ ପର୍ଯ୍ୟନ୍ତ ଚାଲିବ ବୋଲି ସେ ଘୋଷଣା କଲେ । ଗାନ୍ଧୀଙ୍କର ଏହି ଅନଶନ ସାରା ବିଶ୍ୱରେ ଅପୂର୍ବ କମ୍ପନ ସୃଷ୍ଟି କଲା । ତାଙ୍କୁ ମୁକ୍ତ କରିବା ପାଇଁ ଦେଶ ବିଦେଶରୁ ଲକ୍ଷ ଲକ୍ଷ ଦାବିପତ୍ର ବ୍ରିଟିଶ ସରକାରଙ୍କ ନିକଟରେ ପହଞ୍ଚିଲା । କିନ୍ତୁ ବ୍ରିଟେନର ତତ୍କାଳୀନ ପ୍ରଧାନମନ୍ତ୍ରୀ ଉଇନଷ୍ଟନ ଚର୍ଚ୍ଚିଲ ଏସବୁକୁ ଭ୍ରୂକ୍ଷେପ ନକରି ଗର୍ବର ସହ କହିଥିଲେ, 'ଆମେ ଏବେ ସବୁ କ୍ଷେତ୍ରରେ ବିଜୟୀ ହେଉଥିବା ବେଳେ ଆମର ଚିର ଶତ୍ରୁ ସେହି ଅର୍ଦ୍ଧଲଗ୍ନ ଫକୀର ନିକଟରେ କଦାପି ହାର ମାନିବୁ ନାହିଁ ।' ଗାନ୍ଧୀଙ୍କର ଏହି କାରାବାସ ସମୟରେ ସେ ତାଙ୍କର ପ୍ରିୟତମ ସେକ୍ରେଟାରୀ ମହା ଦେବ ଦେଶାଇ ଓ ସହଧର୍ମିଣି କସ୍ତୁରବାଙ୍କୁ ହରାଇ ଥିଲେ ସୁଦ୍ଧା ନିଜ ସଂକଳ୍ପରୁ ତିଳେ ମାତ୍ର ବିଚ୍ୟୁତ ହୋଇନଥିଲେ । ଗାନ୍ଧିଜୀ ଯଦି ଅନଶନ ଦ୍ୱାରା ମୃତ୍ୟୁବରଣ କରନ୍ତି, ତେବେ ଏଥିପାଇଁ ଯେଉଁ ଭୟାବହ ପରିସ୍ଥିତି ସୃଷ୍ଟି ହେବ ତାହାର ମୁକାବିଲା କରିବାକୁ ବ୍ରିଟିଶ ସରକାର ସେନାବାହିନୀକୁ ପ୍ରସ୍ତୁତ କରାଯାଇଥିଲା । ସୌଭାଗ୍ୟବଶତଃ ଗାନ୍ଧିଜୀ ବଞ୍ଚିଗଲେ । ତାଙ୍କର ମହତ ଲକ୍ଷ୍ୟ ହାସଲ ହେଲା । ଜନସାଧାରଣଙ୍କ ମଧରେ ନୈତିକ ବଳ ଦ୍ୱିଗୁଣିତ ହେଲା । ସ୍ୱାସ୍ଥ୍ୟଗତ କାରଣରୁ ୧୯୪୪ ମସିହା ମେ ୬ ତାରିଖରେ ବ୍ରିଟିଶ୍ ସରକାର ତାଙ୍କୁ ବିନା ସର୍ତ୍ତରେ କାରାମୁକ୍ତ କରି ଦେଲେ ।

ଆଜକୁ ୬୨ ବର୍ଷ ପୂର୍ବେ 'ଭାରତଛାଡ଼' ଡାକରା ଦେଇ ଗାନ୍ଧିଜୀ ଦେଶବାସୀଙ୍କୁ 'କର ବା ମର' ମନ୍ତ୍ରରେ ଦୀକ୍ଷିତ କରାଇଥିଲେ । ତାଙ୍କର ଯୁଗାନ୍ତକାରୀ ବାର୍ତ୍ତାଥିଲା 'ଯେତେବେଳେ ଦେଶବାସୀ ସାହସର ସହିତ ମୃତ୍ୟୁର ସମ୍ମୁଖୀନ ହେବାକୁ ବାହାରି ଆସିବେ, ସେତିକିବେଳେ ଦେଶ ରକ୍ଷା ପାଇବ ।' ବାସ୍ତବରେ ଏହି ଐତିହାସିକ ବିପ୍ଳବ ଥିଲା ଭାରତର ସ୍ୱାଧୀନତା ପ୍ରାପ୍ତି ପାଇଁ ଏକ ମୁକ୍ତିର ମଶାଲ ।

ଅଧ୍ୟକ୍ଷ
ମା' କିଚକେଶ୍ୱରୀ ମହାବିଦ୍ୟାଳୟ
ଖିଚିଂ, ମୟୂରଭଂଜ







# ଓଡ଼ିଶାର ସ୍ୱାଧୀନତା ଆନ୍ଦୋଳନରେ କବିତାର ସ୍ୱର

କାଞ୍ଚ୍ଚ ନାରାୟଣ ମହାନ୍ତି

**ଗା**ନ୍ଧିଜୀଙ୍କ ଅହିଂସା ମାର୍ଗରେ ଆମେ ସ୍ୱାଧୀନତା ଲାଭ କଲୁ । ବହୁ ଧର୍ମଘଟ, ଆନ୍ଦୋଳନ, ଧାରଣା, ଅନଶନ, ପୋଡ଼ାଜଳା, ଗୁଳିଗୋଳା, ରକ୍ତକ୍ଷୟୀ ସଂଗ୍ରାମ ମଧ୍ୟ ହୋଇଛି । ବିଦେଶୀ ହାତରୁ ମୁକ୍ତ ହେଲା ଭାରତମାତା । ଆମ ଦେଶବାସୀ ଆସ୍ୱସ୍ତ ହେଲେ । ଅନେକ ସ୍ୱପ୍ନ ଦେଖିଲେ । ଭାବିଲେ ଏ ଦେଶ ପାଲଟିଯିବ ସ୍ୱର୍ଗପୁରୀ । ରାମରାଜ୍ୟ ଚାଲିବ । ଭାରତୀୟମାନଙ୍କ ଭିତରେ ଜାଗରଣ ହେଲାପରି ଉତ୍କଳୀୟମାନଙ୍କ ମଧ୍ୟରେ ସ୍ୱାଭିମାନ ଫେରିଆସିବ ।

ଆମେ ଚଳାଇବୁ ଦେଶ ଆମରି । ଆମରି ନାଆର ଆମେ ନାଉରୀ : ଏ ଦେଶରୁ ଦୁଃଖ ଦାରିଦ୍ର୍ୟ ଲୋପ ପାଇଯିବ, ଜାତି, ଧର୍ମ ନିର୍ବିଶେଷରେ ଆମେ ଗଠନ କରିବୁ ଏକ ବୃହତ୍ତର ସମାଜ । ନିଯୁକ୍ତି, ଉତ୍ପାଦନ, ବାଣିଜ୍ୟ ଏକତ୍ୱବୋଧ ଦ୍ୱାରା ଆମ ଜୀବନ ହେବ ଏ ସୃଷ୍ଟିରେ ଅନନ୍ୟ, ଉପଲକ୍ଷ୍ୟ ।

କିନ୍ତୁ ଆଜି ସ୍ୱାଧୀନତା ଲାଭର ଅର୍ଦ୍ଧଶତାବ୍ଦୀ ପରେ ଏ କ'ଣ ଦେଖିବାକୁ ମିଳୁଛି ? ଲେଖିବାକୁ ଶୁଣିବାକୁ ମିଳୁଛି ? ଏବେ ତ ଅନେକ ସମସ୍ୟାର ଧାଡ଼ି । ଜାତୀୟତାବୋଧର ବ୍ୟାପକ ଶୃଙ୍ଖଳାବୋଧରୁ ଆମେ ଆତ୍ମସୁଖବୋଧ ସଂସ୍କୃତିକୁ ଖସି ଆସିଛେ । ଏବେ ତ ଅସଂଖ୍ୟ ଜାତିର ପାଚେରୀ, ଅନେକ ଧର୍ମର ପାଚେରୀ, ଗିରିଜନ, ହରିଜନ, ନାରୀଜନ ଇତ୍ୟାଦି ବିଭେଦ ଓ ବୈଷମ୍ୟ । ସଂରକ୍ଷଣ ସମସ୍ତଙ୍କୁ ଦରକାର । ସବୁରି ଅଲକ୍ଷ୍ୟରେ ଏହି ସଂରକ୍ଷଣର ସହଜ ସୁଯୋଗ ହିଁ ସୁସ୍ଥ ସୁନ୍ଦର ସାମାଜିକ ସ୍ଥିତିକୁ ହଲଚଲ କରିବାର ଅସ୍ତ୍ର ସାଜିଛି । ଭାଷାର ରକ୍ଷା ନାହିଁ । ସଂସ୍କୃତିର ରକ୍ଷା ନାହିଁ । ଜାତିର ରକ୍ଷା ନାହିଁ ସେଠି ଜୀବନ କାହୁଁ ମିଳିବ ?

ଆମ ଶାସନ ଆମ ସମ୍ବିଧାନ କହୁଛି ଆମେ ସଭିଏଁ ଏକ । ଭାରତବାସୀ ଭାଇ ଭାଇ । ସେଠି ଜାତି, ଧର୍ମକୁ ନେଇ ଆଜି ବିଦ୍ୱେଷ ଚାଲିଛି, ଚାଲିଛି କ୍ଷମତାର ରାଜନୀତି ।

ଦିନେ ଆମେ ଯୁଦ୍ଧ କରୁଥିଲୁ, ଦେଶ ସ୍ୱାଧୀନତା ପାଇଁ । ଭାରତମାତାର ମୁକ୍ତି ହେଲା ସିନା, ଯୁଦ୍ଧ ବା ସଂଗ୍ରାମର ଶେଷ ହେଲା ନାହିଁ । ସଂକୀର୍ଣ୍ଣ, ନୀତିହୀନ ସ୍ୱାର୍ଥ ସିଦ୍ଧି ପାଇଁ ଏକତା ପରିବର୍ତ୍ତେ ଦେଶ ବିଭାଜନ ପାଇଁ ମଧ୍ୟ ନିଆଁକୁ ଡେଇଁ ପଡୁଛନ୍ତି । ହତ୍ୟାର ତାଣ୍ଡବ, ହିଂସାର ସଂଗ୍ରାମ ରଚି ଅଶାନ୍ତି, ଅସ୍ଥିରତାର ଶସ୍ତା ଉପଚାର ଚାଲିଛି ।

ଆଧୁନିକ ସଭ୍ୟ ଶିକ୍ଷିତ । ଆଜିର ମଣିଷ କହି ଚାଲିଛି, ଦେଶ ଅଗ୍ରଗତି କରି ଚାଲିଛି । ଶିକ୍ଷା, ସ୍ୱାସ୍ଥ୍ୟ, ଗବେଷଣା, ପ୍ରଯୁକ୍ତି, ମହାକାଶ, ଦୂରସଂଚାର ଇତ୍ୟାଦି କ୍ଷେତ୍ରରେ ଭାରତବର୍ଷରେ ପ୍ରଭୂତ ଉନ୍ନତି ଘଟିଛି ।

ଦେଶ ପରମାଣୁ ଅସ୍ତ୍ରରେ କ୍ଷମତାଶାଳୀ ବିକାଶଶୀଳ ଗାରିମାରେ ଅନ୍ୟକୁ ଆଙ୍ଗୁଳି ନିର୍ଦ୍ଦେଶ କରିବାକୁ ପରାକ୍ରମୀ ।

ଫଳତଃ ଆମେ ଆମ ଶତ୍ରୁକୁ କ୍ଷେପଣାସ୍ତ୍ରରେ ଦେଇପାରୁଛୁ ଧମକ ସତ୍ କିନ୍ତୁ ଆମ ପାଇଁ ମଧ୍ୟ ଅଲକ୍ଷ୍ୟରେ କମାଣର ମୁହଁ ମୁହାଁଇଛି । ବିକାଶ ସହ ବିନାଶର ବାଟ ଫିଟି ପଡ଼ିଛି ।

ଶିକ୍ଷା ବିକାଶ ନାଁରେ ଶିକ୍ଷା ହୋଇଯାଇଛି ବ୍ୟବସାୟୀକରଣ । ଧନୀକ ପାଇଁ ସବୁ ସୁଯୋଗ ଥିଲାବେଳେ ଗରିବ ମେଧାବୀ ଛାତ୍ରଟିଏ ପାଇଁ ସବୁ ରାସ୍ତା ବନ୍ଦ । ଶିକ୍ଷକ ନିଜର ଜ୍ଞାନଗାରିମାକୁ ଅର୍ଥରେ ମାପି ଟ୍ୟୁଟରିଆଲରେ ବ୍ୟସ୍ତ । ଡାକ୍ତର ରୋଗୀ ସେବାକୁ ଅର୍ଥ ସର୍ବସ୍ୱ ବ୍ୟବସାୟ ଧରି ନେଲେଣି । ନେତୃତ୍ୱର ପବିତ୍ର ପରାକାଷ୍ଠା ଏବେ ଗୁଣ୍ଡାରାଜ, ଧନ ଅର୍ଜନ ଓ ବିଳାସର ମାର୍ଗ ବୋଲି ଧରି ନେଲେଣି ।

ଓଡ଼ିଆ ଭାଷା, ସାହିତ୍ୟ, ସଂସ୍କୃତିର ଡିଣ୍ଡିମ ଆମ ବିଜ୍ଞ ମହାଜ୍ଞାନୀ ବୁଦ୍ଧିଜୀବୀ ସାହିତ୍ୟକାରମାନେ ବିଶ୍ୱ ଦରବାରକୁ ତାଙ୍କ ଅମୃତ ଲେଖନୀରେ ଝଲମଲ କରି ଦେଲେଣି ବୋଲି ମଞ୍ଚରେ ଭାଷଣବାଜି କରୁଥିବାବେଳେ ଓଡ଼ିଆ ଶବ୍ଦଟିଏ ଇଂରେଜ ସ୍କୁଲରେ ପଢୁଥିବା ଆଜିକାର ପୁଅ, ଝିଅ ପଢ଼ିବା ଜାଣିବାରେ ଆଗ୍ରହ ନାହିଁ । ସମୟ ଆସିଛି ଏବେ ଇଂରାଜୀ ମାଧ୍ୟମ ସ୍କୁଲରେ ନାମ ଲେଖା ପାଇଁ ପିଲା ବ୍ୟାକୁଳ ହେଉଥିବା ବେଳେ ଓଡ଼ିଆ ମିଡ଼ିୟମ ସ୍କୁଲ ପାଇଁ ମାଷ୍ଟ୍ରେ ଗାଁ ଗାଁ ବୁଲି ପିଲା ଖୋଜୁଛନ୍ତି । ନ ହେଲେ ସ୍କୁଲ ଭାଙ୍ଗି ଯିବ, ଦରମା ମିଳିବ ନାହିଁ ।

ଓଡ଼ିଆ ଭାଷାକୁ ବଙ୍ଗଭାଷୀ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ ଏକ କ୍ଷୁଦ୍ରପୁସ୍ତିକା ଛାପି ଓଡ଼ିଆ ଭାଷା ଗୋଟାଏ ସ୍ୱତନ୍ତ୍ର ଭାଷା ନୁହେଁ ଏହା

ବଙ୍ଗାଳୀ ଭାଷାର ଏକ ଉପଭାଷା ବୋଲି ୧୮୭୦ ମସିହାରେ ପ୍ରକାଶ କରିଥିଲେ । ଏମିତି ଏକ ଆକ୍ଷେପ ଶୁଣି ଓଡ଼ିଶାରେ ଓଡ଼ିଆଭାଷା ପ୍ରତି ଘୋର ଅବମାନନା ହେତୁ ଏଭଳି ମନ୍ତବ୍ୟ ବିରୁଦ୍ଧରେ ଭୟଙ୍କର ବିକ୍ଷୋଭ ଓ ପ୍ରତିକ୍ରିୟା ପ୍ରକାଶ ପାଇଥିଲା । ସେତେବେଳେ ବହୁ ବିଶିଷ୍ଟ ବ୍ୟକ୍ତି ସର୍ବଶ୍ରୀ ଗୌରୀଶଙ୍କର ରାୟ, ରାଧାନାଥ ରାୟ, ମହାରାଜ ବୈକୁଣ୍ଠନାଥ ଦେ, ମଧୁସୂଦନ ରାଓ, ଫକୀରମୋହନ ସେନାପତି, ରାମଶଙ୍କର ରାୟ ପ୍ରଭୃତି ଓଡ଼ିଆ ଭାଷାର ପ୍ରାଚୀନତା, ଐତିହ୍ୟ, ସମୃଦ୍ଧ ସାରସ୍ୱତ ସମୃଦ୍ଧିର କଥା ପ୍ରମାଣିତ କରିଥିଲେ । ସ୍ୱାଧୀନତା ପରେ ଇଂରେଜମାନେ ତ ଆମ ଦେଶ ଛାଡ଼ି ଚାଲିଗଲେ । ହେଲେ ଆମେ ଦୀର୍ଘ ପଚାଶବର୍ଷ ପରେ ମଧ ଇଂରେଜ ଭାଷାକୁ ଛାଡ଼ି ପାରିନୁ । ନିଜ ମାତୃଭାଷା ପଛେ ପୁଅ ନ ଜାଣୁ ଖଣ୍ଡି ଇଂରାଜୀ ଶବ୍ଦ ତା' ମୁହଁରୁ ଶୁଣି ଆଜିର ମାମି ଡ଼ାଡ଼ି କୃତ୍ୟକୃତ୍ୟ । ଓଡ଼ିଆ ଘରର ବେଶ ପରିପାଟୀ, ସଂସ୍କୃତି, ପୂଜା, ଓଷା, ପିଠାପଣା ମହତ ପରମ୍ପରା ଉପରେ ପର୍ଯ୍ୟବସିତ ଏବଂ ସମସ୍ତ ବିଜ୍ଞାନ ଭିତ୍ତିକ । ଏବେ ସେ ସବୁ ଶିକ୍ଷିତ, ଉଚ୍ଚଶିକ୍ଷିତ ତଥା ଉଗ୍ର ଆଧୁନିକ ମଣିଷ ସମାଜରୁ ଉଠି ଗଲାଣି । ପାଶ୍ଚାତ୍ୟ ସଂସ୍କୃତିର ପୋଷାକ, ଖାଦ୍ୟ, ସଂଗୀତ, ସାହିତ୍ୟ ଏବେ ରଚିକର ହୋଇ ଉଠିଛି ।

ବିଦେଶୀ, ଭାଷା, ସାହିତ୍ୟ, ସଂସ୍କୃତି ବିଷୟରେ ଜାଣିଲେ ଜ୍ଞାନର ପରିସୀମା ବଢ଼େ । ଏହାର ଅର୍ଥ ନୁହେଁ ଯେ ନିଜ ମାଆକୁ ନ ପଚାରି ପରକୁ ମାଉସୀ ଡାକି ଗୋଡ଼େଇ ଗୋଡ଼େଇ ଭଲ ପାଇବା ।

ଏମିତି ଏକ ସଂକଟ କାଳ ଆସିଛି, ଏବେଠାରୁ ଚିନ୍ତା କରାନଗଲେ ଓଡ଼ିଆ ଭାଷା ବୋଲି ଗୋଟାଏ କ'ଣ ଥିଲା ତାହା ଲୋକେ ଦ୍ୱନ୍ଦ୍ୱରେ ପଡ଼ିବେ । ଲୋକେ ତ ଓଡ଼ିଆରେ ଦୂରଦର୍ଶନ କାର୍ଯ୍ୟକ୍ରମ ନ ଦେଖି କେବୁଲ ମାଧମରେ ଅନ୍ୟ ଭାଷାରେ କାର୍ଯ୍ୟକ୍ରମ ଦେଖିବାରେ ପ୍ରୟାସୀ । ଓଡ଼ିଆ ଦୈନିକ ସମ୍ବାଦପତ୍ର, ମାସିକ ସାହିତ୍ୟ ପତ୍ରିକା, ଗଳ୍ପ, ଉପନ୍ୟାସ ଇତ୍ୟାଦି କିଣି ପଢ଼ିବା ଅଭ୍ୟାସଠାରୁ ଦୂରରେ । ବରଂ ଇଂରାଜୀ କାଗଜ ଓ ବିଦେଶୀ ସାହିତ୍ୟ ପ୍ରତି ଆଗ୍ରହ ବଢ଼ି ଚାଲିଛି । ମାତୃଭାଷାରେ କଥପୋକଥନ ଅପେକ୍ଷା ଅନ୍ୟଭାଷାରେ ଆଳାପ ଆଲୋଚନାକୁ ବୁଦ୍ଧିଦୀପ୍ତ ବୋଲି ମନେ କରାଯାଉଛି ।

ଜାତୀୟସ୍ତରରେ ଓଡ଼ିଆ ଭାଷା ସାହିତ୍ୟର ପ୍ରଭୂତ ସୁନାମ ବଢ଼ିଥିବା ସମୃଦ୍ଧ ଓ ପ୍ରାଚୀନ ଭାଷା ପ୍ରତି ସଂପ୍ରତି ଯେପରି ଓଡ଼ିଆ ମାଟିରେ ବୀତସ୍ପୃହ ଲକ୍ଷଣ ଦେଖାଯାଉଛି, ୧୮୭୦ ମସିହାର ବଙ୍ଗଭାଷୀ କ୍ରାନ୍ତିଚନ୍ଦ୍ରଙ୍କ ଆକ୍ଷେପର କେବଳ ମାତ୍ର ଦେଢ଼ଶହ ବର୍ଷ ପରେ ଅର୍ଥାତ୍ ୨୦୨୦ ବେଳକୁ ଓଡ଼ିଆ ଭାଷା କ'ଣ ତା'ର ଅସ୍ତିତ୍ୱ ଖୋଜିବ ?

Language is a gift of God. ଭାଷା ହିଁ ଭଗବାନଙ୍କର ଆଶୀର୍ବାଦ ଯେଉଁ ଇଂରେଜ ସରକାରର ଶାସନାଧୀନ ରହି ଓଡ଼ିଶାରୁ ଓଡ଼ିଆ ଭାଷା ବିଲୋପ ପାଇଁ ଷଡ଼ଯନ୍ତ୍ର ଚାଲିଥିଲା ପୁନଶ୍ଚ ୧୮୬୫ରେ ଓଡ଼ିଶାକୁ କମିଶନର ହୋଇ ଆସିଥିବା ଇଂରେଜ ହାକିମ ରେଭେନ୍‌ସା ସାହେବ ହୃଦୟତା ସହ ଚିନ୍ତା କଲେ । ଓଡ଼ିଶାରେ ବଙ୍ଗଳାଭାଷା ମାଧମରେ ଶିକ୍ଷା ଲାଗି ଓଡ଼ିଆମାନଙ୍କର ଅଭିଯୋଗ ଓ ଅସନ୍ତୋଷ ଶୁଣି ଶିକ୍ଷା ବିଭାଗ ଇନ୍‌ସପେକ୍ଟରଙ୍କୁ ଚିଠି ଲେଖିଲେ । କିଛି ଫଳ ହେଲା ନାହିଁ । କଲିକତାରେ ଥିବା ଶିକ୍ଷା ବିଭାଗ ଡିରେକ୍ଟରଙ୍କୁ ଜଣାଇଲେ । ସେ କିଛି ଶୁଣିଲେ ନାହିଁ । ରେଳପଥ ନଥାଏ, ଚାନ୍ଦବାଲି ବାଟେ ରେଭେନ୍‌ସା ସାହେବ ଗଲେ କଲିକତା । ଓଡ଼ିଶାରେ ସବୁ ସ୍କୁଲରେ ବଙ୍ଗଳା ପରିବର୍ତ୍ତେ ଓଡ଼ିଆ ଭାଷାରେ ଶିକ୍ଷା ଦେବା ପାଇଁ ବଙ୍ଗ ଦେଶର ଗଭର୍ଣ୍ଣରଙ୍କୁ ଦେଖାକରି କହିଲେ, ମୁଁ ଦସ୍ତର ସହିତ ଆଦେଶ ଦେଇ ଆସିଛି ଓଡ଼ିଶାରେ ବଙ୍ଗଳା ପରିବର୍ତ୍ତେ ସବୁ ସ୍କୁଲରେ ଓଡ଼ିଆ ମାଧମରେ ଶିକ୍ଷା ଦିଆଯିବ । ସବୁ ଶିକ୍ଷକମାନେ ବର୍ଷକ ମଧରେ ଓଡ଼ିଆ ଭାଷାକୁ ଆୟତ୍ତ କରି ଶିକ୍ଷା ଦେବେ ନଚେତ୍ ସେମାନଙ୍କୁ ଚାକିରିରୁ ବିଦା କରି ଦିଆଯିବ ।

ଗଭର୍ଣ୍ଣର ମହୋଦୟ ରେଭେନ୍‌ସା କମିଶନରଙ୍କ ଦାବୀକୁ ଗୃହୀତ କରିଥିଲେ ତେଣୁ ଖଣ୍ଡବିଖଣ୍ଡିତ ସେ କାଳର ଓଡ଼ିଶା ପ୍ରଦେଶରେ ଓଡ଼ିଆ ଭାଷା ବଞ୍ଚି ରହିବାର ସର୍ବାଗ୍ରେ ନମସ୍ୟ ହେଲେ ରେଭେନ୍‌ସା ସାହେବ ।

ଭାରତବର୍ଷ ବା ପୃଥିବୀର ଯେକୌଣସି ସଭ୍ୟ ଜଗତ ସର୍ବଦା ଏକ ସ୍ୱାଧୀନ ଦେଶ ଓ ସ୍ୱାଧୀନ ସରକାର ଆଶା କରିଥାଏ । ମାତୃଭୂମି ଓ ମାତୃଭାଷାର ଉନ୍ନତି ବିନା କୌଣସି ଜାତି କେବେ ବିଶ୍ୱ ଦରବାରରେ ବନ୍ଦନୀୟ ହୋଇପାରେନା ।

ସ୍ୱାଧୀନତା ସଂଗ୍ରାମର ନେତୃତ୍ୱ ନେଇଥିଲେ ଯେଉଁ ମହାତ୍ମା ତାଙ୍କ ବାଣୀ ଓ ଆଦେଶକୁ କେତେଜଣ କର୍ମବୀର ବୁଦ୍ଧିଜୀବୀ ଜୀବନର ବ୍ରତ ଭାବେ ଗ୍ରହଣ କରି ନେଇଥିଲେ, ସେମାନେ ଓଡ଼ିଆ ଜାତିର ଚିର ନମସ୍ୟ । ସେମାନେ ହେଲେ ଉତ୍କଳଗୌରବ ମଧୁସୂଦନ, ଉତ୍କଳମଣି ଗୋପବନ୍ଧୁ, ପାରଳାର ଗଜପତି ମହାରାଜା କୃଷ୍ଣଚନ୍ଦ୍ର ଦେବ, ବୀର ସୁରେନ୍ଦ୍ର ସାଏ, ଗୋପବନ୍ଧୁ ଚୌଧୁରୀ, ଡଃ ହରେକୃଷ୍ଣ ମହତାବ, ରଘୁ-ଦିବାକର, ଚନ୍ଦନ ହଜୁରୀ, ଜୟୀ ରାଜଗୁରୁ, ରାମକୃଷ୍ଣ ନନ୍ଦ, ପ୍ରାଣକୃଷ୍ଣ ପଢ଼ିହାରୀ, ରମାଦେବୀ, ସରଳାଦେବୀ, ଜାହ୍ନବୀଦେବୀ, ମାଳତୀଦେବୀ କୁଜଙ୍ଗର ପୂର୍ବତନ ରାଣୀ ଭାଗବତୀ ପାଟ ମହାଦେଈ, କୁନ୍ତଳା କୁମାରୀ, ଅନ୍ନପୂର୍ଣ୍ଣା ଦେବୀ, ସୀତାଦେବୀ ଆଦି ନାରୀମାନଙ୍କର ସ୍ୱାଧୀନତା ସଂଗ୍ରାମରେ ସେ କାଳରେ ସକ୍ରୀୟ ଯୋଗଦାନ କମ୍ ଗୌରବର କଥା ନୁହେଁ ।

ସେ ସମୟର ଅଗ୍ନିବର୍ଷୀ କବିତାର ଉତ୍ସ ଜାତୀୟ କବି ବୀରକିଶୋର, କବି ବାଞ୍ଛାନିଧି ମହାନ୍ତିଙ୍କର ରକ୍ତ ତତଲା ମୁକ୍ତିର କାବ୍ୟ ସଂଗ୍ରାମ ଯଜ୍ଞରେ ଆହୂତି ଦେବା ପାଇଁ ଯଥେଷ୍ଟ ଥିଲା ।

ମାତୃଭୂମି ମାତୃଭାଷା ଉଭୟେ ଜନନୀ
ସେବ ତାଙ୍କୁ ଭକ୍ତି ଭରେ ଦିବସ ରଜନୀ ।

ଜାତିର ଜାଗରଣ ବା ଜାତୀୟ ଚେତନା ବହୁ ଭାବାର୍ଥ ସୃଷ୍ଟିକାରୀ ଶବ୍ଦ । ଦେଶପ୍ରୀତି, ଜାତିପ୍ରୀତି, ମାତୃଭୂମି, ମାତୃଭାଷା ପ୍ରତି ମମତା ଆଦି ଏହି ଚେତନାକୁ ବଳିଷ୍ଠ କରିଥାଏ । ଗୋଟିଏ ଜାତିର ମହନୀୟ ଅତୀତ, ବିଜୟ ବୈଜୟନ୍ତୀ ସୁବିଶାଳ ସଂସ୍କୃତି ଏବଂ ପ୍ରାଚୀନ ପରମ୍ପରା ମଧ୍ୟ ସେହି ଜାତିର ଜାତୀୟ ଚେତନାର ଅନ୍ତର୍ଭୁକ୍ତ । ଭାରତର ସ୍ୱାଧୀନତା ସଂଗ୍ରାମରେ ମୁଖ୍ୟତଃ ଭାରତର ବିଭିନ୍ନ ପ୍ରାନ୍ତୀୟ ସାହିତ୍ୟର ମୁଖ୍ୟସ୍ୱର ହୋଇ ଉଠିଛି । ଓଡ଼ିଆ ସାହିତ୍ୟରେ ଏହି ସ୍ୱର କ୍ରାନ୍ତୀକାରୀ ରୂପ ନେଇଛି, ଯାହା କୋଟି ପ୍ରାଣରେ ଜଗାଇଛି ଦୃଢ଼ ଆତ୍ମବଳ, ମୁକ୍ତି ଆନ୍ଦୋଳନରେ ଝାସ ଦେବାପାଇଁ ଅଫୁରନ୍ତ ଉତ୍ସାହ ଓ ଉଦ୍ଦିପନା ।

ଜାତୀୟ କବି ବୀରକିଶୋର ତାଙ୍କ 'ରଣ ଦୁନ୍ଦୁଭି' କବିତାରେ ଲେଖିଥିଲେ -

''ଦିନରାତି ମୋର ସେଇ ଚିନ୍ତା, ବନ୍ଧୁ ସେଇ ଚିନ୍ତା
ଏ ସରକାର ଶବ ଦାହ କେବେ ହେବ,
ଦେଖି ବି ମୁଁ ତାର ଶେଷ ଚିତା ।''

ଗୋପବନ୍ଧୁ ବନ୍ଦୀ ଅବସ୍ଥାରେ ଦେଶପ୍ରୀତିର ଦମ୍ଭୋକ୍ତି ନେଇ ଲେଖିଥିଲେ -

''ପିତୃ ପ୍ରତିଷ୍ଠିତ ରାଜ୍ୟ ଯେହୁ ପରାଧୀନ ।
ଜଗତେ ତା ତହୁଁ ବଳି ନାହିଁ କେହି ହୀନ ।''

ବିଦେଶୀ ଶାସନର ଅତ୍ୟାଚାର ଶୋଷଣକୁ ପ୍ରତିରୋଧ ସ୍ୱରରେ ସେ କହିଥିଲେ -

''ସ୍ୱାଧୀନତା ମାନବର ଜନ୍ମ ଅଧିକାର
ସ୍ୱାଧୀନ ଭାଷଣ ଆଉ ସ୍ୱାଧୀନ ବିହାର ।''

ତ୍ୟାଗର ନମୁନା ସଦୃଶ ବନ୍ୟା ଦୁର୍ଭିକ୍ଷ ପୀଡ଼ିତ ଜନତାଙ୍କ ଲାଗି ନିଜକୁ ଉତ୍ସର୍ଗ କରି ସେ ଭାବବିହ୍ୱଳ ହୋଇ ରଚିଥିଲେ -

ମିଶୁ ମୋର ଦେହ ଏ ଦେଶ ମାଟିରେ ।
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ ।।
ଦେଶର ସ୍ୱରାଜ୍ୟ ପଥେ ଯେତେ ଗାଡ଼ ।
ପୁରୁ ତହିଁ ପଡ଼ି ମୋର ମାଂସ ହାଡ଼ ।।

ନାରୀ କବି କୁନ୍ତଳା କୁମାରୀ ସାବତ ଆପଣାର ଜୀବନାଦର୍ଶକୁ ମାଟି ମାଆପାଇଁ ଉତ୍ସର୍ଗ କରି ଗାଇଥିଲେ -

ଧର୍ମ କର୍ମ ସବୁ ଦେବୁ ଜଳାଞ୍ଜଳି
ଦାସ ଧର୍ମ ମୁକ୍ତି ମନେ ନେବୁ କଳି
ଦେଶ ଆମ ଧର୍ମ କର୍ମ ଜପାମାଳି
ଅରଟର ଚକ ଜୀବନ ସଙ୍ଗାଳି ।

କବି ବୀରକିଶୋର ତାଲୁଚାଲୁ ନିଜକୁ ଭୁଲି ଯାଇ ଦେଶ ଭକ୍ତିର କବିତାରେ ମଗ୍ନ ହୋଇଯାଉଥିଲେ । ତାଙ୍କ ଅମର ରଚନାବଳୀ 'ମୋହନବଂଶୀ' ରଣ ଦୁନ୍ଦୁଭି, ବିଦ୍ରୋହୀ ବୀଣା ଯେପରି ବିପ୍ଳବର ବାର୍ତ୍ତା ଜନସାଧାରଣ ଉଦ୍‌ବେଳିତ କରିଥିଲା ସେହିପରି କୁନ୍ତଳା କୁମାରୀଙ୍କର 'ଆହ୍ୱାନ', 'ସ୍ଫୁଲିଙ୍ଗ' ଇତ୍ୟାଦି କବିତା ସଂକଳନ ଜନମନରେ ସ୍ପନ୍ଦନ ତୋଳିଥିଲା । ସେ ଲେଖିଥିଲେ -

ପଖାଳ ଗଣ୍ଡାକୁ ଟିପେ ନାହିଁ ଲୁଣ ବାହୁନିବା କିସ ଶାସନର ଗୁଣ
ଅପୂର୍ବ ରଚନା ଶାସନ ପ୍ରଣାଳୀ ତେତ୍ରିଶକୋଟି ଯା କବଳେ କାଙ୍ଗାଳୀ ।

ସଂକ୍ରାନ୍ତୀପୁରୁଷ ଓଡ଼ିଆ ସାହିତ୍ୟର ରକ୍ଷାକର୍ତ୍ତା ଫକୀରମୋହନଙ୍କର ସୃଷ୍ଟି ଅନବଦ୍ୟ ସେ ସ୍ୱାଧୀନତା ପାଇଁ ଇଂରେଜମାନଙ୍କୁ ଘୃଣାକ୍ଷରେ ପାଣିକାଉ ବୋଲି କହୁଥିଲେ । ଜାତୀୟ ଜାଗୃତି ପାଇଁ ସେ ଲେଖିଥିବା ମହାମୂଲ୍ୟ ରତ୍ନମାଳା ହେଲା - 'ଉତ୍କଳଭୂମି', 'ମୁଁ ହାଟବାହୁଡ଼ା', 'ଲାଗ ଲାଗ', ଉତ୍ଥାନ ସଂଗୀତ ଇତ୍ୟାଦି, ସେ ଥିଲେ ଉଦାରମନା । ଦେଶ ମାତୃକାର ସମୃଦ୍ଧି, ଭାଷାର ଉନ୍ନତି ସାଧନ ଉଦାସୀନ ଯୁବମାନସରେ ଉଦାର ଅଭୟବାଣୀ ଶୁଣାଇ ସେ କବିର କ୍ଷୋଭ ନେଇ ଲେଖିଲେ -

''ପଢ଼ ରାଜ ଭାଷା ଅଛି ତହିଁ ଲାଭ
ମାତ୍ର ନ ହରାଅ ଜାତୀୟ ସ୍ୱଭାବ ।''

ସେହିଭଳି ମାର୍ମିକ ତାଙ୍କର ଆହ୍ୱାନ - 'ନ କରିଲେ ମାତୃଭାଷାର ଉନ୍ନତି ଘୁଞ୍ଚିବ କି କେବେ ଦେଶର ଦୁର୍ଗତି ?'

କବି ବୀରକିଶୋର ଓଡ଼ିଶାର ଜଗତସିଂହପୁର ଅଂଚଳର ପୁନଙ୍ଗ ଗାଁରେ ଜନ୍ମ ହୋଇ ଦୁବଘାସର ଶିଶିର ଟୋପାଟିଏ ପରି ନିଜ ଶାଣିତ କଲମରେ ସ୍ୱାଧୀନତାର ରଙ୍ଗକୁ ତୀବ୍ର କରି ଲେଖିଥିଲେ -

'ଦେଶ ଲାଗି ଯା'ର ଦେହ କାନ୍ଦି ଉଠେ
ଜାତି ଲାଗି କାନ୍ଦେ ମନ ।
ଲୋଡ଼ା ନାହିଁ ତା'ର ଯୋଡ଼ା ଘୋଡ଼ା ଗାଡ଼ି
କୁଆର ପୁନେଇଁ ଜହ୍ନ ।।'

ହାତକଡ଼ିକୁ ସେ ମଲ୍ଲୀଫୁଲ ହାର ବୋଲି ବର୍ଣ୍ଣନା କରିଥିଲେ । ବିପ୍ଳବୀ କବିତାରେ ତାଙ୍କର ସ୍ୱର ଥିଲା - ସାରା ବିଲାତରେ ହାହାକାର ଆମେ ପକାଇ ଦେବୁ । ପକାଇ ଦେବୁ/ ଗୋରା ଶାସନକୁ ଏପାରି ସେପାରି ନଚେଇ ଦବୁ, ନଚେଇ ଦବୁ ।

ଗୁଳିଗୋଳା, ବନ୍ଧୁକ ମୁନକୁ ଖାତିର କରି ନାହିଁ ଏ ବୀର ମାଟିର ବିଦ୍ରୋହୀ ସେନା । ଅହିଂସା ମନ୍ତ୍ରରେ ଦୀକ୍ଷିତ ଯେ ହୁଏ ତାକୁ ଜୀବନପଣ କରି ଲଢ଼ି ଆସେ । ନିର୍ମମ ବେତମାଡ଼ ଖାଇ ମାଡ଼ି କରି ଚାଲିଥିବା ବେଳେ କି ବାଳୁତ ବୃଦ୍ଧ ଗାଉଥିଲେ -

ଭାଇ ହେ ମାର କେତେ ବେତ ମାରିବ
ଦେଶ ଲାଗି ଆମେ ଜୀବନ ଦେଇଛୁ : ତୁ କି ଆମକୁ ପାରିବ ?

୧୮୯୭ରେ ଜନ୍ମ କବି ବାଞ୍ଛାନିଧି ମୁକ୍ତିତୀର୍ଥ ବାଲେଶ୍ୱରର ଇରମ୍‌ରେ ମୁକ୍ତିର ସ୍ୱପ୍ନ ଦେଖିଥିଲେ । କାନ୍ଧରେ ହାରମୋନିୟମ ଝୁଲାଇ ସେ ସୁଲଳିତ କଣ୍ଠରେ ରାଜରାସ୍ତାରେ ନାଚି ନାଚି ଦେଶଭକ୍ତିର ଗୀତ ଗାଉଥିଲେ, ଅଗଣିତ ଜନତା କାମଦାମ ଛାଡ଼ି ତାଙ୍କ ସହ ଗାଇ ଗାଇ ନାଚୁଥିଲେ -

''କାହିଁକି ରହିଛ ଭାଇ ଅଳସେ ବସି ହୋ ?
ପରନେଇଗଲା ଧନ, ସବୁଠୁ କଷି ହୋ
ଲୁଣ, ଦିଆସିଲି, ଛତା, ଛୁରୀ କଇଁଚି ଓ ଜୋତା
ଆରିସି, ପାନିଆଁ, ଖୁର
ନକଲି ନାନା ପ୍ରକାର
କାଚ ଶଂଖ ମାଳମାଳ
ଗହଣା ବେଙ୍ଗି ପିତଳ
ଚେନ୍ ଘଡ଼ି ଶୂନ ଗାଡ଼ି
ଦମକଳ ହାୱା ଗାଡ଼ି
ବାବୁ ବିଲାତି ଜିନିଷ କିଣି ମନ ଖୁସି ହୋ ?

ଦେଇ କପଡ଼ା ବିଲାତି
ନିଏ ଜାହାଜ ଭରତି
ଧାନ ଚାଉଳ ଗହମ ଖାଇବା ଜିନିଷମାନ
ଆମେ ମରିଲେ ଭୋକରେ ଦିନକୁ ଦିନ ଦୁଃଖରେ
ଜିନିଷ ଦର ବଢ଼ିଲା
ଏହା କେହି ନ ବୁଝିଲା
ଧ୍ୟାନେ ତା ଜାଣିଲା ଗାନ୍ଧୀ ମହାଋଷି ହୋ ।''

ଗାନ୍ଧିଜୀଙ୍କ ବାଣୀରେ ଉଦ୍‌ବୁଦ୍ଧ ବାଞ୍ଛାନିଧି ଉତ୍କଳବାସୀଙ୍କ ହୃଦୟକୁ କବଳିତ କରି ଗାଇଥିଲେ ଭାବ ଗଭୀର ଚେତନାର ଗୀତ -

''ପିନ୍ଧି ପରଦେଶୀ ସାଜ
ନମାଡ଼େ କି ଟିକେ ଲାଜ
ପର ଘର ଲୁଗାରେ କି ଥାଏ ସମ୍ମାନରେ ?
ବିଦେଶୀ ବେପାରୀ ପୋଷି
ସ୍ୱଦେଶ ଦେଉଛ ନାଶି
ଘର ତନ୍ତି ମଲେ ହୋଇ ଅକାରଣରେ, ହଇରାଣରେ ।''

ସେ ପୁଣି ଗାଇଲେ -

'କାହିଁ ଆଇଲା ବିଦେଶୀ ବେପାରୀ ।
ସବୁ ସାଇଲେ ହେଲୁ ଆମେ ଭିକାରୀ ।।'

ତୋଷାମୋଦ ଦ୍ୱାରା ଯେଉଁଠି ସଫଳତା ମିଳେ ନାହିଁ । ନ୍ୟାର୍ଯ୍ୟଦାବୀ ପାଇଁ ଅନ୍ୟାୟ ବିରୋଧରେ ସ୍ୱର ଉତ୍ତୋଳନ କରିବା ବାଞ୍ଛନୀୟ । ସେଥିପାଇଁ କବି କଟକଠାରେ ଅନୁଷ୍ଠିତ ହେଉଥିବା ନିଖିଳ ଉତ୍କଳ ନେତା ସମ୍ମିଳନୀ ବାଳ ଗଙ୍ଗାଧର ତିଳକ ଓ ମହାତ୍ମା ଗାନ୍ଧୀଙ୍କ ପ୍ରେରଣାରେ ଗାଇଥିଲେ ଯୁଗାନ୍ତକାରୀ ଦେଶପ୍ରୀତିର ଗାଥା ।

'କହ କହ କେଉଁ ଜାତି ପାଇଛି ମୁକତି
କରି ହାରି ଗୁହାରି ?
କହ ପାଇଛି କେ ସୁଖ ଲିଭାଇଛି ଦୁଃଖ
ମାଗି ମାଗି ପଥ ଭିକାରୀ ?'

ଓଡ଼ିଶାର ପାଣି ପବନରେ ଗଢ଼ା ଅସଂଖ୍ୟ ଛୋଟ ବଡ଼ ବାଗ୍ମୀ ପ୍ରତିଭାଧର ତାଙ୍କ ସାରସ୍ୱତ ପ୍ରତିଭାରେ ଜାତୀୟ ଚେତନାକୁ କରିଛନ୍ତି ପ୍ରାଣବନ୍ତ ଉଦ୍‌ବୁଦ୍ଧ । ସେଇ ସାରସ୍ୱତ ସୃଷ୍ଟି ଏ ଜାତିପାଇଁ ଚିର ନିରାଜନପୂର୍ଣ୍ଣ । ଆଜି ଭାଷା ସୁରକ୍ଷା ପାଇଁ ଆନ୍ଦୋଳନର ସ୍ୱର ଉଠୁଥିବା ବେଳେ ଏହି ଜାତିସ୍ମରମାନଙ୍କର ଅମୃତ ରଚନାବଳୀ ଆମ ପାଇଁ ପ୍ରେରଣାର ବାର୍ତ୍ତା ଦେଉ ଓଡ଼ିଆ ଭାଷା ହିଁ ଓଡ଼ିଆ ଜାତିର ମହାନମନ୍ତ୍ର ହେଉ ।

ଓଡ଼ିଆ ଚିରକାଳ ବୀର ଜାତି ଭାବରେ ପରିଚିତ । ସ୍ୱାଧୀନତା ସଂଗ୍ରାମରେ ଅଂଶ ଗ୍ରହଣ କରିବାରେ ଓଡ଼ିଆମାନଙ୍କ ମଧ୍ୟରେ ସର୍ବଭାରତୀୟ ପ୍ରୀତି କୌଣସି ଗୁଣରେ କମ୍ ନଥିଲା । ଭାରତର ବିଭିନ୍ନ ଅଂଚଳରେ ଦେଖା ଦେଇଥିବା ଜାତୀୟତା ପ୍ରଥମ ଅବସ୍ଥାରେ ଗୋରାଶାସକମାନଙ୍କ ବିରୁଦ୍ଧରେ ଉଦ୍ଦିଷ୍ଟ ନଥିଲା । ଆଞ୍ଚଳିକ ସମସ୍ୟାର ସମାଧାନ ପାଇଁ ଏହା ସୃଷ୍ଟି ହୋଇ ପରବର୍ତ୍ତୀ ସମୟରେ ଜାତୀୟ ଚେତନାରେ ପରିବର୍ତ୍ତିତ ହୋଇଥିଲା । ଓଡ଼ିଶାରେ ମଧ୍ୟ ଠିକ୍ ସେହି ପରିସ୍ଥିତି ସୃଷ୍ଟି ହୋଇଥିଲା । ଓଡ଼ିଆ ଆନ୍ଦୋଳନକୁ କଂଗ୍ରେସ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ବିରୋଧ କରୁଥିଲେ ସୁଦ୍ଧା ଓଡ଼ିଆମାନେ ଜାତୀୟଚେତନା ଦୃଷ୍ଟିରୁ ଅନ୍ୟ ଯେକୌଣସି ପ୍ରାନ୍ତର ଲୋକମାନଙ୍କଠାରୁ ପଛରେ ନଥିଲେ ।

ଓଡ଼ିଶାର ଅଗଣିତ ଜନତାଙ୍କର ସ୍ୱର ଓ ଶକ୍ତିରେ ସ୍ୱାଧୀନତାର ମୁକ୍ତିସଂଗ୍ରାମ ହୋଇଛି ଶକ୍ତିଶାଳୀ । ଅନେକଙ୍କର ନାମ ଉଲ୍ଲେଖ କରିବାର ସୁଯୋଗ ଆତ୍ମବଳୀ ଦେଇଥିବା ସେହି ମହାବଳୀ ବରପୁତ୍ରମାନେ ଆମକୁ ନଦେଇ ଚାଲିଗଲେ ।

ଯେଉଁ ମହାନ୍ ଦେଶପ୍ରେମୀ, ଏ ମାଟିର ବରେଣ୍ୟ ମଧୁବାବୁ ଗୋପବନ୍ଧୁ, ପାରଳାର ଗଜପତି ମହାରାଜ କୃଷ୍ଣଚନ୍ଦ୍ର ନାରାୟଣ ଦେଓଙ୍କ ସହ ଏକାତ୍ମ ହୋଇ ସହଯୋଗ କରିଥିଲେ ସେମାନେ ମୁଖ୍ୟତଃ ସତ୍ୟବାଦୀର ପଞ୍ଚସଖା, ଗୌରୀଶଙ୍କର, ରାଧାନାଥ, ବୈକୁଣ୍ଠନାଥ ଦେ, ମଧୁସୂଦନ ରାଓ, ଫକୀରମୋହନ, ଉଦୟନାଥ, ଗଙ୍ଗାଧର

ମେହେର, ନନ୍ଦକିଶୋର ବଳ, ଗୋପାଳ ପ୍ରହରାଜ, ବିଶ୍ୱନାଥ କର, ନୃସିଂହଚରଣ ମହାନ୍ତି, ଡଃ ହରେକୃଷ୍ଣ ମହତାବ, ବୈଷ୍ଣବ ପାଣି, ଜୟୀରାଜଗୁରୁ, ଚନ୍ଦନହଜୁରୀ ବାସୁବିସ୍ୱନି, ରଘୁଦିବାକର ଏବଂ ଲକ୍ଷ ଲକ୍ଷ ନିରୀହ ନିରସ୍ତ୍ର ଜନତା । ଯେଉଁମାନେ ଲକ୍ଷ୍ମଣ ନାୟକଙ୍କ ଭଳି ଫାଶି ପାଇ ନାହାନ୍ତି ସତ କିନ୍ତୁ ଫିରିଙ୍ଗର ନିର୍ମ୍ମମ ମାଡ଼ ଓ ଗୁଳିଚୋଟରେ ଟଳି ପଡ଼ିଛନ୍ତି, ସେମାନଙ୍କର ଅବଦାନ ସେତୁବନ୍ଧରେ ଗୁଣ୍ଡୁଚିର ବାରିପରି ବନ୍ଦନୀୟ । ଆଜିର ତିଥିରେ ଏ ଜାତି ତାଙ୍କୁ ନତଜାନୁ ହୋଇ ବିନମ୍ର ପ୍ରଣତି ଜଣାଉଥିବ ।

ସଂପ୍ରତି ଆମ ନିକଟରେ ପ୍ରଗତି ନାଁରେ ବିକାଶର ଅଦୃଶ୍ୟ ସ୍ରୋତ ଆମକୁ କବଳିତ କରିବାକୁ ବସିଛି । ଏବେ ଟେଲିଫୋନ ମୋବାଇଲ ଇ-ମେଲ - ଫ୍ୟାକ୍ସ ପରି ଯେତେ ଟେକ୍‌ନୋଲୋଜିର ପ୍ରସାର ବଢ଼ି ବଢ଼ି ଚାଲିଛି ସେତିକି ମାନବିକ ସଂପର୍କ ଛିନ୍ନ ହୋଇ ହୋଇଯାଉଛି । ଶିଳ୍ପ ପ୍ରସାର ଆମ୍ଭୋନ୍ନତି ନାଁରେ ଚାଷ ଜମି ସବୁ ବିଲଡ଼ରମାନଙ୍କର ଫ୍ଲାଟ ସ୍କିମ୍‌ରେ ପରିଣତ । ଗ୍ରାମ୍ୟଜୀବନ ଛାଡ଼ି ଲୋକେ ସହର ସଭ୍ୟତାରେ ସାମିଲ ହେବାକୁ ପାଗଳ । ଭାଷା ରସାତଳକୁ ଗଲାଣି । ବିଦେଶୀ କଂପାନୀମାନେ ଏ ଦେଶକୁ ବ୍ୟବସାୟ କରିବାକୁ ମାଳମାଳ ହୋଇ ପଶି ଆସିଲେଣି । ଏହି ପରିପ୍ରେକ୍ଷୀରେ କବି ବାଞ୍ଛାନିଧି ମହାନ୍ତିଙ୍କ 'ଗାଁକୁ ଫେରିଚାଲ' କବିତାରୁ କିଛି ମନେ ପଡ଼େ - ''ଘର ବେଉସା ଛାଡ଼ି ଦେଇ / ସହର ଗଲେ ପଳାଇ । ଦେଶର ଜୀବିକା ବୁଡ଼ିଲା / ଏପରି କଳ ମୋଡ଼ିଲା । ଗାଁ ଯେ ଖାଲି ପଡ଼ିଲା / ମୂଳ ମଜୁରୀ ବୁଡ଼ିଲା । ନଖାଇ ବଂଶ ବୁଡ଼ିଲା / ଏବେ ଲକ୍ଷ୍ମୀ ଠାକୁରାଣୀ ଚାଲିଗଲେ ରୁଷି ହେ ।''

ଆଶ୍ରମ
ଶ୍ରୀବିହାର କଲୋନୀ, କଟକ-୮

---

# ୨୦୦୪ ମସିହା ଜୁନ୍ ମାସ ଶେଷ ସୁଦ୍ଧା ୪୯ କୋଟି ୭୧ ଲକ୍ଷ ଟଙ୍କା ଅବକାରୀ ରାଜସ୍ୱ ଆଦାୟ

ଜୁଲାଇ ମାସ ୧୪ ତାରିଖ ଦିନ ଅପରାହ୍ନରେ ଜୁନ୍ ୨୦୦୪ ଶେଷ ସୁଦ୍ଧା ଅବକାରୀ ରାଜସ୍ୱ ଆଦାୟର ଅଗ୍ରଗତି ଉପରେ ଏକ ସମୀକ୍ଷା ବୈଠକ ଅନୁଷ୍ଠିତ ହୋଇଥିଲା । ସମୀକ୍ଷାରୁ ପ୍ରକାଶ ଯେ ଗତବର୍ଷଠାରୁ ଏବର୍ଷ ରାଜସ୍ୱ ଆଦାୟର ଅଗ୍ରଗତି ହୋଇ ତାହା ଜୁନ୍ ମାସ ଶେଷ ସୁଦ୍ଧା ୪୯ କୋଟି ୭୧ ଲକ୍ଷ ଟଙ୍କାକୁ ବୃଦ୍ଧି ପାଇଛି । ଗତବର୍ଷ ଏହି ସମୟସୀମା ମଧ୍ୟରେ ଅବକାରୀ ରାଜସ୍ୱ ୪୧ କୋଟି ୨୬ ଲକ୍ଷ ଟଙ୍କାରେ ସୀମିତ ଥିଲା । ସେହିପରି ଭାରତ ପ୍ରସ୍ତୁତ ବିଦେଶୀ ମଦ, ବିଅର ଓ ଦେଶୀ ମଦର ବିକ୍ରୟରେ ମଧ୍ୟ ଗତବର୍ଷଠାରୁ ଚଳିତ ବର୍ଷ ଜୁନ୍ ମାସ ଶେଷ ସୁଦ୍ଧା ଅବକାରୀ ରାଜସ୍ୱ ଆଦାୟର ଅଭିବୃଦ୍ଧି ହୋଇଛି ।

ଚଳିତ ବର୍ଷର ୩ ମାସ ମଧ୍ୟରେ ଗତ ବର୍ଷଠାରୁ ୫ କୋଟିରୁ ଊର୍ଦ୍ଧ୍ୱ ଅବକାରୀ ଶୁଳ୍କ ଆଦାୟ କରି ରାଜସ୍ୱ ଆଦାୟ (ଅବକାରୀ ଶୁଳ୍କ) କ୍ଷେତ୍ରରେ ଓଡ଼ିଶା ରାଜ୍ୟ ପାନୀୟ ନିଗମ ଉଲ୍ଲେଖନୀୟ ସଫଳତା ହାସଲ କରିଛି ବୋଲି ଉକ୍ତ ସମୀକ୍ଷା ବୈଠକରୁ ପ୍ରକାଶ ।

ରାଜ୍ୟ ଅବକାରୀ କମିଶନର ଏଥିରେ ଯୋଗ ଦେଇ ରାଜସ୍ୱ ଆଦାୟକୁ ବୃଦ୍ଧି କରିବା ସହିତ ବାକି ପଡ଼ିଥିବା ରାଜସ୍ୱ ଆଦାୟ କରିବାକୁ ପରାମର୍ଶ ଦେଇଥିଲେ । ଜିଲ୍ଲାପାଳ ଓ ଏସ୍.ପି.ମାନଙ୍କ ସହ ସୁସଂପର୍କ ରକ୍ଷା କରି ବେଆଇନ ମଦ ରନ୍ଧା ଓ ବିକ୍ରିର ଧରପଗଡ଼କୁ କ୍ରିୟାଶୀଳ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ଅନ୍ୟମାନଙ୍କ ମଧ୍ୟରେ ଓଡ଼ିଶା ରାଜ୍ୟ ପାନୀୟ ନିଗମର ପରିଚାଳନା ନିର୍ଦ୍ଦେଶକ ଓ ତିନି ଗୋଟି ରାଜସ୍ୱ ଡିଭିଜନର ଅବକାରୀ ଡେପୁଟି କମିଶନର ଯୋଗ ଦେଇଥିଲେ ବୋଲି ଅବକାରୀ ବିଭାଗ ସୂତ୍ରରୁ ପ୍ରକାଶ ।

# ସ୍ୱାଧୀନତା ସଂଗ୍ରାମ ଓ ଡଃ ହରେକୃଷ୍ଣ ମହତାବ

ଡଃ ମନ୍ଦାକିନୀ ଦାସ

**ସା**ମାଜିକ ତଥା ଧାର୍ମିକ ସଂସ୍କାରଜନିତ ମାନବିକ ଆବେଦନ ପରିପ୍ରେକ୍ଷୀରେ, ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଭାରତରେ ଜାତୀୟତାବାଦର ଉନ୍ମେଷ ଘଟିଲା । ଦେଶର ନେତୃମଣ୍ଡଳୀ ଅନୁଭବ କଲେ ଯେ, ରାଜନୈତିକ ଓ ଆର୍ଥିକ ଶୋଷଣରୁ ମୁକ୍ତି ବ୍ୟତିରେକେ ସାମାଜିକ ଜୀବନର ମାର୍ଜିତ ବିକାଶ ସମ୍ଭବ ନୁହେଁ । ବିଦେଶୀ ଶାସନର ଶୃଙ୍ଖଳରୁ ମୁକ୍ତ ନ ହେଲା ପର୍ଯ୍ୟନ୍ତ ବିଶ୍ୱସ୍ତରୀୟ ଚେତନା ମଧ୍ୟ ଜାଗରୁକ ହୋଇପାରିବ ନାହିଁ । ଏହି ଜାତୀୟ ଚେତନାର ପରିପ୍ରକାଶ ଭାରତୀୟ ଜାତୀୟ କଂଗ୍ରେସ ପରି ଏକ ସଂଗଠନ ଦ୍ୱାରା ସମ୍ଭବ ହୋଇପାରିଥିଲା । ଦକ୍ଷିଣ ଆଫ୍ରିକାରୁ ଫେରି ମହାତ୍ମା ଗାନ୍ଧୀ ଏହାର ନେତୃତ୍ୱ ଗ୍ରହଣ କଲାପରେ, ଏହି ସଂଗଠନ ମୁଷ୍ଟିମେୟ ଉଚ୍ଚଶିକ୍ଷିତ ସହରାଞ୍ଚଳ ବ୍ୟକ୍ତିମାନଙ୍କ ସଂସ୍ଥା ନହୋଇ ସର୍ବସାଧାରଣଙ୍କ ସଂଗଠନ ରୂପେ କାର୍ଯ୍ୟ କଲା । ଏହାରି ନେତୃତ୍ୱରେ ଦୀର୍ଘ ୨୦୦ ବର୍ଷର ଇଂରେଜ ଶାସନ କବଳରୁ ଭାରତ ମୁକ୍ତି ଲାଭ କରିବା ସମ୍ଭବ ହୋଇପାରିଥିଲା ।



ସର୍ବଭାରତୀୟ ଜାତୀୟତାବାଦ ଓ ସ୍ୱାଧୀନତା ଆନ୍ଦୋଳନର ଡାକରା ଅନ୍ୟ ଅଞ୍ଚଳ ଅପେକ୍ଷା ଓଡ଼ିଶାରେ ଅପେକ୍ଷାକୃତ ବିଳମ୍ବରେ ପହଞ୍ଚିଥିଲା । ଅନ୍ୟ ଅଞ୍ଚଳର ଜନସାଧାରଣ ମହାତ୍ମା ଗାନ୍ଧୀଙ୍କ ମାର୍ଗଦର୍ଶନରେ ଉଦ୍‌ବୁଦ୍ଧ ହୋଇ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଉଥିଲାବେଳେ, ସେଥିରୁ ନିବୃତ୍ତ ରହି ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ଜନ୍ମଲାଭ କରିବାକୁ ଓଡ଼ିଶା ଦାବୀ କରୁଥିଲା । କିନ୍ତୁ ଯୋଗଜନ୍ମା, ଦୂରଦ୍ରଷ୍ଟା, ସାଧକ ମହତାବଙ୍କ ଦୃଷ୍ଟିଭଙ୍ଗୀ ଭିନ୍ନ ଥିଲା । ଜାତୀୟ ଆନ୍ଦୋଳନର ମୁଖ୍ୟସ୍ରୋତରୁ ଅଲଗା ହୋଇ କେବଳ ଏକ ସ୍ୱତନ୍ତ୍ର ପ୍ରଦେଶର ସଂକୀର୍ଣ୍ଣ ଗଣ୍ଡି ମଧ୍ୟରେ ଆବଦ୍ଧ ହୋଇ ରହିବାର ଉଦ୍ଦେଶ୍ୟ ତାଙ୍କର ନଥିଲା । ଗାନ୍ଧିଜୀଙ୍କ ନେତୃତ୍ୱ ଓ କଂଗ୍ରେସର ବାର୍ତ୍ତାକୁ ଓଡ଼ିଶାର ପୁରପଲ୍ଲୀରେ ପରିଚିତ କରାଇବାର ଉଦ୍ୟମ ଆରମ୍ଭ ହୋଇଗଲା । ଛାତ୍ରାବସ୍ଥାରୁ ତାଙ୍କ ମଧ୍ୟରେ ଯେଉଁ ବୈପ୍ଳବିକ ଆଭିମୁଖ୍ୟ ପ୍ରକଟିତ ହୋଇଥିଲା, ସ୍ୱାଧୀନତା ଆନ୍ଦୋଳନରେ ନିଜକୁ ସାମିଲ କରି ସେ ଏହାକୁ ଅଧିକ ବ୍ୟାପକ କରିପାରିଲେ । ସେ ରେଭେନ୍ସା ମହାବିଦ୍ୟାଳୟର ଛାତ୍ର ଜୀବନରୁ ସମସ୍ତ ସମାଲୋଚନା ଓ ବିରୋଧକୁ ପ୍ରତିରୋଧ କରି ଭବିଷ୍ୟତ ସଂଗ୍ରାମର ନେତୃତ୍ୱ ନେବାପାଇଁ ମାନସିକ ପ୍ରସ୍ତୁତି ଆରମ୍ଭ କରିଥିଲେ । ତାଳପତ୍ର ଛତା ଧରି ବା ଅଣପାରମ୍ପରିକ ବେଶ ପୋଷାକ ପରିଧାନ କରି ସାଙ୍ଗସାଥୀଙ୍କ ଥଟ୍ଟା ବିଦ୍ରୂପକୁ ସହ୍ୟ କରିବାର ଦୃଢ଼ ମାନସିକତା ସେ ପ୍ରଦର୍ଶନ କଲେ । ଏହି ମାନସିକତା, ପରବର୍ତ୍ତୀ ସମୟରେ ଏ ଦେଶ ଓ ଜାତି ପାଇଁ ଜଣେ ଯୁଗ ପୁରୁଷ ସୃଷ୍ଟି କରିଦେଲା ।

ଏକ ପଇଁତିରିଶ ଜଣିଆ ଓଡ଼ିଆ ପ୍ରତିନିଧିଦଳର ସଦସ୍ୟ ରୂପେ ସେ ୧୯୨୦ ମସିହାରେ ନାଗପୁର କଂଗ୍ରେସ ଅଧିବେଶନରେ ଯୋଗ ଦେଲେ । ଏହି ଅଧିବେଶନରେ ଜାତୀୟ କଂଗ୍ରେସର ସଂବିଧାନ ପରିବର୍ତ୍ତନ କରାଯାଇ 'ସ୍ୱରାଜ'କୁ ଦେଶର ଲକ୍ଷ୍ୟ ରୂପେ ଘୋଷଣା କରାଗଲା । ଏହା ସହିତ ଭାଷାଭିତ୍ତିକ କଂଗ୍ରେସ କମିଟି ମାନ ଗଠନ କରାଯାଇ ସ୍ୱାଧୀନତା ସଂଗ୍ରାମକୁ ଅଧିକ ତୀବ୍ର ଓ ବ୍ୟାପକ କରିବା ନିମନ୍ତେ ସ୍ଥିର କରାଗଲା । ସେତେବେଳକୁ ଓଡ଼ିଆ ଭାଷଭାଷୀ ଅଞ୍ଚଳକୁ ନେଇ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠିତ ହୋଇପାରିନଥିଲେ ମଧ୍ୟ ଏହି ଭାଷାଭିତ୍ତିରେ ଉତ୍କଳପ୍ରଦେଶ କଂଗ୍ରେସ କମିଟି ଗଠିତ ହେଲା । ନାଗପୁରରୁ ଫେରି ଓଡ଼ିଆ ପ୍ରତିନିଧି ଦଳ, ଓଡ଼ିଶାର ବିଭିନ୍ନ ପ୍ରାନ୍ତରରେ ଜାତୀୟ ଆନ୍ଦୋଳନ ଚଳାଇବାକୁ ଦାୟିତ୍ୱ ବାଣ୍ଟିଲେ । ବାଲେଶ୍ୱର ଜିଲ୍ଲାରେ ଏହି ସଂଗ୍ରାମ ପରିଚାଳନା କରିବାର ଗୁରୁଦାୟିତ୍ୱ ପଡ଼ିଲା ମହତାବଙ୍କ ଉପରେ । ତାଙ୍କ ପାଠରେ ଡୋରି ସେଇଠି ବନ୍ଧା ହେଲା । ଉଚ୍ଚଶିକ୍ଷା ଗ୍ରହଣ କରି ଉଚ୍ଚ ପଦପଦବୀରେ ଅଧିଷ୍ଠିତ ହେବାର ଲାଳସା ତାଙ୍କର ନଥିଲା । କିନ୍ତୁ ତାଙ୍କ ପରିବାରବର୍ଗ ତାଙ୍କ ଚିନ୍ତାଧାରା ଓ କାର୍ଯ୍ୟକଳାପକୁ ତୀବ୍ର ବିରୋଧ କଲେ । ମାତ୍ର ଏହି ମହାନ୍ ସଂଗ୍ରାମୀଙ୍କ

ଦୃଢ଼ତା ଓ କର୍ମନିଷ୍ଠା ଆଗରେ ସମସ୍ତ ବିରୋଧ ଓ ସମସ୍ତ ସମାଲୋଚନା ନିରର୍ଥକ ସାବ୍ୟସ୍ତ ହେଲା ।

୧୯୨୧ ମସିହା ମାର୍ଚ୍ଚ ମାସର ଶେଷ ସପ୍ତାହରେ ଗାନ୍ଧିଜୀଙ୍କ ଓଡ଼ିଶା ଆଗମନ ରାଜ୍ୟବାସୀଙ୍କ ମନରେ ଉତ୍ସାହ ଓ ଜାଗରଣ ସୃଷ୍ଟି କରିପାରିଥିଲା । ତାଙ୍କ ଗସ୍ତ ସମୟରେ ମହତାବ ତାଙ୍କର ସହଯାତ୍ରୀ ହେବା ସହିତ, ତାଙ୍କ ରହିବା ଓ ସଭାକାର୍ଯ୍ୟ ପରିଚାଳନାର ଦାୟିତ୍ୱ ବହନ କରିଥିଲେ । କଟକର 'ସ୍ୱରାଜ ଆଶ୍ରମ' ଢାଞ୍ଚାରେ ବାଲେଶ୍ୱରରେ ଗଢ଼ି ଉଠିଲା 'ସ୍ୱରାଜ ମନ୍ଦିର' । ଗାନ୍ଧିଜୀଙ୍କ 'ତିଳକ ସ୍ୱରାଜ ଫଣ୍ଡ' ପାଇଁ ମହତାବଙ୍କ ଉଦ୍ୟମରେ ପ୍ରଦେଶ କଂଗ୍ରେସ କମିଟି ଟ.୨୧୦୦ଙ୍କା ସଂଗ୍ରହ କରିପାରିଥିଲା । ତାଙ୍କରି ନେତୃତ୍ୱରେ ଅସହଯୋଗ ଆନ୍ଦୋଳନ ପୂର୍ଣ୍ଣ ଉତ୍ସାହର ସହ ଚାଲୁ ରହିଲା । ବିଦେଶୀ ଦ୍ରବ୍ୟ ବର୍ଜନ ସହିତ କୋର୍ଟ କଚେରୀ ବର୍ଜନ କରାଗଲା ଓ ଅନେକ ଛାତ୍ରଛାତ୍ରୀ ଇଂରେଜ ସରକାରଙ୍କ ଶିକ୍ଷାନୁଷ୍ଠାନ ପରିତ୍ୟାଗ କଲେ ।

ମହତାବ ଅନୁଭବ କରିଥିଲେ ଯେ, ରାଜନୈତିକ ସଚେତନତା ବିକଶିତ ହୋଇ ନପାରିଲେ, ଜନସାଧାରଣ ପ୍ରବଳ ପରାକ୍ରମୀ ଇଂରେଜ ସରକାରଙ୍କ ବିରୁଦ୍ଧରେ ଗଣଆନ୍ଦୋଳନ କରିପାରିବେ ନାହିଁ । ଏହି ସଚେତନତାର ବିକାଶ ପାଇଁ ସାମାଜିକ ଚେତନାର ଅଭିବୃଦ୍ଧି ଅପରିହାର୍ଯ୍ୟ । ତେଣୁ ସ୍ୱାଧୀନତା ଆନ୍ଦୋଳନ ଚାଲିଥିଲାବେଳେ ସାମାଜିକ, ଧାର୍ମିକ ଓ ସାଂସ୍କୃତିକ କ୍ଷେତ୍ରରେ ସଂସ୍କାରମୂଳକ ପଦକ୍ଷେପମାନ ଗ୍ରହଣ କରି ଜନଜୀବନକୁ ଅଧିକ ସଂଗଠିତ ଓ ବିକଶିତ କରିବାର ଉଦ୍ୟମ ସେ କରିଥିଲେ । ୧୯୨୨ ମସିହାର ଶେଷ ବେଳକୁ ଓଡ଼ିଶାର ସମସ୍ତ କଂଗ୍ରେସୀ ନେତା ଗିରଫ ହୋଇଯାଇଥିଲେ । ଅସହଯୋଗ ଆନ୍ଦୋଳନରେ ତାଙ୍କର ଭୂମିକା ଯୋଗୁଁ ଏକ ବର୍ଷର ସଶ୍ରମ କାରାଦଣ୍ଡରେ ଦଣ୍ଡିତ ମହତାବଙ୍କୁ କଟକ ଜେଲକୁ ପଠାଯାଇଥିଲା । ୧୯୨୩ରେ ଛାଡ଼ ପାଇ ପୁଣି ସେ କଂଗ୍ରେସ କାର୍ଯ୍ୟରେ ଲାଗି ପଡ଼ିଲେ । ବିଦେଶୀ ବର୍ଜନ ନୀତିଯୋଗୁଁ ସମସ୍ତ କଂଗ୍ରେସ ନେତା ବିଧାୟକ ପଦରୁ ଇସ୍ତଫା ଦେଇସାରିଥାଆନ୍ତି । କିନ୍ତୁ ବିହାର-ଓଡ଼ିଶା ଲେଜିସ୍ଲେଟିଭ୍ ଆସେମ୍ବ୍ଲିର ସଭ୍ୟଥାଇ ମଧୁବାବୁ ମନ୍ତ୍ରୀ ହୋଇଥାଆନ୍ତି । ସେତେବେଳକୁ ସେ ଓଡ଼ିଶାର ଅପ୍ରତିଦ୍ୱନ୍ଦୀ ନେତା । ତଥାପି ତାଙ୍କୁ ସାଧାରଣ ସଭାରେ ବିରୋଧ କରିବାକୁ ବା ସମାଲୋଚନା କରିବାକୁ ମହତାବ ପଛେଇ ଯାଇନଥିଲେ ।

ଅସହଯୋଗ ଆନ୍ଦୋଳନ ସ୍ଥଗିତ ରହିଥିବା ସମୟରେ ଗାନ୍ଧିଜୀ ପ୍ରବର୍ତ୍ତନ କରିଥିବା ଗଠନମୂଳକ କାର୍ଯ୍ୟକ୍ରମ ସେ ଚଳେଇ ରଖିଥିଲେ । ତାଙ୍କ ପରିବାରର ଏକ ମନ୍ଦିରକୁ 'ବିଦ୍ୟା ମନ୍ଦିର' ନାମରେ ନାମିତ କରି ସେ ଅଞ୍ଚଳରେ ଶିକ୍ଷାର ପ୍ରସାର ପାଇଁ ମହତାବ ଉଦ୍ୟମ କରିଥିଲେ । ଗଠନମୂଳକ କାର୍ଯ୍ୟର ପରିଚାଳନା ପାଇଁ ଅନ୍ୟ ଏକ ମନ୍ଦିରକୁ 'କର୍ମମନ୍ଦିର' ନାମରେ ସେ ପରିବର୍ତ୍ତନ କରିଥିଲେ । ପର୍ବପର୍ବାଣୀ ଓ ଉତ୍ସବ ପାଳନରେ ଏହି ଦୁଇ ମନ୍ଦିରରେ ହେଉଥିବା ଖର୍ଚ୍ଚ ନୂତନ ଅନୁଷ୍ଠାନ ଦ୍ୱୟର ପରିଚାଳନାରେ ବ୍ୟୟିତ ହେଲା ।

ଘରେ ଘରେ ଗାନ୍ଧିଜୀଙ୍କ ବାର୍ତ୍ତା ଓ ସଂଗ୍ରାମର କାହାଣୀ ପହଞ୍ଚାଇବାର ଲକ୍ଷ୍ୟ ନେଇ 'ପ୍ରଜାତନ୍ତ୍ର' ନାମରେ ଏକ ସାପ୍ତାହିକ ପତ୍ରିକା ସେ ପ୍ରକାଶ କଲେ । ୧୯୨୪ ମସିହାରେ ଏହି ପତ୍ରିକାର କାର୍ଯ୍ୟାଳୟ କଟକରୁ ବାଲେଶ୍ୱରକୁ ଉଠାଇ ଅଣାଯାଇଥିଲା । ଇଂରେଜ ବିରୋଧୀ ଲେଖା ପାଇଁ ୧୯୩୩ ମସିହାରେ 'ପ୍ରଜାତନ୍ତ୍ର' ଛାପାଖାନାକୁ ବାଜ୍ୟାପ୍ତି କରି ଦିଆଗଲା ଓ ଏହାର ପ୍ରକାଶନକୁ ମଧ ବନ୍ଦ କରି ଦିଆଗଲା । ପରବର୍ତ୍ତୀ ସମୟରେ ଏକ ଦୈନିକ ସମ୍ବାଦପତ୍ର ଭାବରେ 'ପ୍ରଜାତନ୍ତ୍ର' କଟକରୁ ଆତ୍ମପ୍ରକାଶ କଲା ।

ଦୁର୍ବଳ ଶ୍ରେଣୀ ବିଶେଷତଃ 'ହରିଜନ' ଓ ଆଦିବାସୀମାନଙ୍କ ମଧ୍ୟରେ ସେ ମହାତ୍ମା ଗାନ୍ଧୀଙ୍କୁ ଜଣେ ଦେବତା ରୂପେ ପରିଚିତ କରାଇପାରିଥିଲେ । ଅନଗ୍ରସର କୋରାପୁଟ ଜିଲ୍ଲାରେ ଗାନ୍ଧିଜୀଙ୍କ ବାର୍ତ୍ତା ପହଞ୍ଚାଇବାରେ ମଧ ସେ ସଫଳ ହୋଇପାରିଲେ । ଗାନ୍ଧିଜୀଙ୍କ 'ଚରଖା'କୁ ଜନପ୍ରିୟ କରି ଗ୍ରାମ ପରେ ଗ୍ରାମକୁ ହାତବୁଣା ଖଦି ଲୁଗାପିନ୍ଧା ଗ୍ରାମରେ ପରିଣତ କରିବାର ଉଦ୍ୟମ କରାଗଲା । ଢେଙ୍କାନାଳ ଓ ତାଳଚେର ପ୍ରଜା ଆନ୍ଦୋଳନର ନେତୃତ୍ୱ ନେଇ ସେମାନଙ୍କୁ ଅତ୍ୟାଚାରରୁ ରକ୍ଷା କରିବା ସହିତ ଗାନ୍ଧିଜୀଙ୍କ ବାର୍ତ୍ତା ସେମାନଙ୍କ ପାଖରେ ପହଞ୍ଚାଇ ପାରିଥିଲେ ।

୧୯୨୭ ମସିହାରେ ଗାନ୍ଧିଜୀ ପୁନର୍ବାର ଓଡ଼ିଶା ଆସି ଜନସଚେତନତା ସୃଷ୍ଟି ପାଇଁ ବିଭିନ୍ନ ସଭାସମିତିମାନଙ୍କରେ ଉଦ୍‌ବୋଧନ ଦେଲେ । ସରକାରୀ ପ୍ରତିବନ୍ଧକ ଯୋଗୁଁ ଖୋଲାଖୋଲି ଭାବରେ ତାଙ୍କ ସଭାସମିତି ଆୟୋଜନ କରିବାପାଇଁ ବା ତାଙ୍କ ସହଯୋଗୀ ହେବାପାଇଁ କେତେକ ଭୟ କରୁଥିଲେ । କିନ୍ତୁ ମହତାବ କୌଣସି ପ୍ରତିବନ୍ଧକକୁ ଭ୍ରୁକ୍ଷେପ ନକରି ଗାନ୍ଧିଜୀଙ୍କ ସହଯୋଗୀ ଭାବେ କାର୍ଯ୍ୟ କରିଥିଲେ । ଏକ ରକ୍ଷଣଶୀଳ ଜମିଦାର ପରିବାରର ବୋହୂ ହୋଇଥିଲେ ମଧ ମହତାବଙ୍କ ପ୍ରୋତ୍ସାହନରେ ପତ୍ନୀ ସୁଭଦ୍ରା ମହତାବ ସ୍ୱାଧୀନତା ସଂଗ୍ରାମରେ ଅଂଶ ଗ୍ରହଣ କରିଥିଲେ । ତାଙ୍କ ଭଉଣୀ ମଇନା ବିବି ଲବଣ ସତ୍ୟାଗ୍ରହରେ ଯୋଗ ଦେଇ ଜେଲ ବରଣ କରିଥିଲେ । ତଦ୍ୱାରା ଉତ୍ସାହିତ ହୋଇ ଅନ୍ୟବର୍ଗର ବହୁ ମହିଳା ଜାତୀୟ ଆନ୍ଦୋଳନରେ ଭାଗ ନେଇଥିଲେ । ବିଦେଶୀ ବସ୍ତ୍ର ବର୍ଜନ, ନିଶା ନିବାରଣ, ହରିଜନ ସେବା ଆଦି ବିଭିନ୍ନ କଂଗ୍ରେସୀ କାର୍ଯ୍ୟକ୍ରମରେ ମହିଳାମାନଙ୍କର ସହଯୋଗ ଉଲ୍ଲେଖନୀୟ ହୋଇପାରିଥିଲା ।

ଆଇନ ଅମାନ୍ୟ ଆନ୍ଦୋଳନ ସମୟରେ ବାଲେଶ୍ୱରର ଇଞ୍ଚୁଡ଼ିଠାରେ ଲବଣ ସତ୍ୟାଗ୍ରହ ପରିଚାଳନା କରିବାର ଦାୟିତ୍ୱ ମହତାବ ନେଇଥିଲେ । ସରକାରୀ ବିବରଣୀ ଅନୁସାରେ ଗାନ୍ଧିଜୀ ଭାଗ ନେଇଥିବା ଗୁଜୁରାଟର ଲବଣ ସତ୍ୟାଗ୍ରହ ପରେ, ଇଞ୍ଚୁଡ଼ି ସତ୍ୟାଗ୍ରହ ବ୍ୟାପକ

ହୋଇପାରିଥିଲା । ଏହି ଆନ୍ଦୋଳନ ଯୋଗୁଁ ହଜାରିବାଗ ଜେଲରେ ଅଠରମାସର କାରାବାସ ତାଙ୍କୁ ବରଣ କରିବାକୁ ପଡ଼ିଥିଲା । ଏହି ଜେଲ ମଧ୍ୟରେ ରାଜେନ୍ଦ୍ର ପ୍ରସାଦ ଓ ଖାଁ ଅବଦୁଲ ଗଫର୍ ଖାଁଙ୍କ ସଂସ୍ପର୍ଶରେ ଆସିବାର ସୁଯୋଗ ତାଙ୍କୁ ମିଳିଥିଲା ।

୧୯୪୨ ମସିହା ଅଗଷ୍ଟ ମାସରେ 'ଭାରତଛାଡ଼ ଆନ୍ଦୋଳନ'ର ଡାକରା ଦିଆଗଲା । କଂଗ୍ରେସ କାର୍ଯ୍ୟକାରୀ କମିଟିର ସମସ୍ତ ସଦସ୍ୟଙ୍କୁ ସରକାର ଜେଲକୁ ପଠେଇ ଦେଲେ । ଓଡ଼ିଶାରେ ଏହି ଆନ୍ଦୋଳନ ଚଳେଇ ରଖିଥିବାରୁ ମହତାବଙ୍କୁ ଅହମ୍ମଦନଗର ଫୋର୍ଟ ଜେଲକୁ ପଠେଇ ଦିଆଗଲା । ସର୍ଦ୍ଦାର ପଟେଲ, ଜବାହରଲାଲ ନେହେରୁ, ଗୋବିନ୍ଦ ବଲ୍ଲଭ ପନ୍ଥ, ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ପରି ସଂଗ୍ରାମୀମାନଙ୍କ ଗହଣରେ ରହିବାର ସୁଯୋଗ ପାଇ ମହତାବ ଅଧିକ ଉତ୍ସାହିତ ହୋଇପଡ଼ିଲେ । ପରବର୍ତ୍ତୀ ସମୟରେ ସମ୍ବଲପୁର ଜେଲକୁ ସ୍ଥାନାନ୍ତରୀତ ହୋଇ ୧୯୪୫ ମସିହା ମେ ମାସରେ ସେ ଜେଲରୁ ଖଲାସ ହେଲେ । ଦେଶ ସ୍ୱାଧୀନ ହେଲା ପର୍ଯ୍ୟନ୍ତ ତାଙ୍କ ସଂଗ୍ରାମ ଅବ୍ୟାହତ ରହିପାରିଥିଲା ।

ଜଣେ ସାଧାରଣ କଂଗ୍ରେସ କର୍ମୀଭାବେ ନୁହେଁ, ବରଂ ଜଣେ ଦକ୍ଷ ସଂଗଠକ ଭାବରେ, ଜଣେ ଦୂରଦ୍ରଷ୍ଟା ସଂଗ୍ରାମୀ ଭାବରେ ସେ ଓଡ଼ିଶାରେ କଂଗ୍ରେସ ଆନ୍ଦୋଳନର ନେତୃତ୍ୱ ନେଇଥିଲେ । ତାଙ୍କରି ନେତୃତ୍ୱରେ ଜାତୀୟ କଂଗ୍ରେସର ବାର୍ଷିକ ଅଧିବେଶନ ୧୯୩୧ ମସିହାରେ ପୁରୀଠାରେ ସଫଳତାର ସହ ଅନୁଷ୍ଠିତ ହୋଇ ପାରିଥିଲା । ସେ କେବଳ ପ୍ରଦେଶ କଂଗ୍ରେସ କମିଟିର ସଭାପତି ନଥିଲେ, ଦୃଢ଼ ନେତୃତ୍ୱ ଯୋଗୁଁ ୧୯୩୮ ମସିହାରେ ତାଙ୍କୁ ଜାତୀୟ କଂଗ୍ରେସର କେନ୍ଦ୍ରୀୟ କାର୍ଯ୍ୟକାରୀ କମିଟିର ସଦସ୍ୟ ରୂପେ ମଧ୍ୟ ନିଯୁକ୍ତ କରାଯାଇଥିଲା । ଜାତୀୟ କଂଗ୍ରେସ ଓ ମୁସଲିମ୍‌ଲିଗ୍ ମଧ୍ୟରେ ସୃଷ୍ଟି ହୋଇଥିବା ବିବାଦର ସମାଧାନ ପାଇଁ ଯେଉଁ ଆଲୋଚନା ଚାଲିଥିଲା, ସେଥିରେ ମଧ୍ୟ ମହତାବ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ଆଲୋଚନାର ଫଳସ୍ୱରୂପ କଂଗ୍ରେସ ଓ ମୁସଲିମ୍‌ଲିଗ୍‌ଙ୍କ ସହଯୋଗରେ ଏକ ମଧ୍ୟବର୍ତ୍ତୀକାଳୀନ ସରକାର ଗଠନ ସମ୍ଭବପର ହୋଇଥିଲା ।

ଜାତୀୟ ସଂଗ୍ରାମରେ ମହତାବଙ୍କ ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । ଜାତୀୟ ଚେତନାର ବାର୍ତ୍ତା ଓଡ଼ିଶାରେ ପ୍ରବର୍ତ୍ତନ କରିବାରେ ସେ ଥିଲେ ଅଗ୍ରଗଣ୍ୟ । ତାଙ୍କୁ ବାଦ୍ ଦେଇ ଦେଶ ସ୍ୱାଧୀନତାର ପୂର୍ଣ୍ଣାଙ୍ଗଚିତ୍ର ପ୍ରଦାନ କରାଯାଇପାରିବ ନାହିଁ ।

ରାଜନୀତିବିଜ୍ଞାନ ବିଭାଗ
ରେଭେନ୍ସା ମହାବିଦ୍ୟାଳୟ
କଟକ

---

# ସ୍ୱାଧୀନତା

ସୁଦୀପ୍ତା କୁମାରୀ ପଣ୍ଡା

ଏ ଦେଶର ସ୍ୱାଧୀନତା ପାଇଁ କେତେ ବୀର
ପ୍ରାଣବଳି ଦେଇଥିଲେ ନାହିଁ ତାହା ସ୍ଥିର ।
ନାହାନ୍ତି ସେ ନେତା ଆଜି ନାହାନ୍ତି ସୈନିକ
ଅଛି ସେହି ରଣଭୂଇଁ ଅଛି ମରୁପ୍ରାନ୍ତ ।
କେଉଁ ଆଡ଼େ ଗଲେ ସେହି ଗାନ୍ଧୀ, ଗୋପବନ୍ଧୁ
ନାହିଁ ଲବଣ ସତ୍ୟାଗ୍ରହ ଅଛି କିନ୍ତୁ ସିନ୍ଧୁ ।
ନାହାନ୍ତି ନେହେରୁ ଆଜି ନାହାନ୍ତି ଶାସ୍ତ୍ରୀଜୀ
ନାହାନ୍ତି ସୁବାଷ ବୋଷ ନାହାନ୍ତି ରାଜାଜୀ ।
କେଉଁ ଆଡ଼େ ଗଲେ ଚାଲି ମୌଲାନା ଆଜାଦ୍
ଭାରତର ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦ ।
ନେଇଗଲା କିଏ ସେ ଲାଲ, ବାଲ, ପାଲଙ୍କୁ
ନଛାଡ଼ିଲା ପୁଣି ସିଏ ସୀମାନ୍ତ ଗାନ୍ଧୀଙ୍କୁ ।
ପ୍ରାଣ ଦେଇ ମୁକ୍ତ କରି ଭାରତ ମାତାକୁ
ଯଶ ରଖି ଯାଇଛନ୍ତି ସେ କାଳ କାଳକୁ ।

ଘର ନଂ- ଏମ୍.ଆଇ.ଜି. (୧) ୨୦/୪
ହାଉସିଂ ବୋର୍ଡ଼ କଲୋନୀ, ଚନ୍ଦ୍ରଶେଖରପୁର, ଭୁବନେଶ୍ୱର - ୧

# ଅଗଷ୍ଟ ବିପ୍ଳବର କାଇପଡ଼ାର ମୁକ୍ତି ସଂଗ୍ରାମୀ

ଡଃ ବିନୋଦିନୀ ଦାସ

ମହାତ୍ମା ଗାନ୍ଧୀଙ୍କର ଭାରତୀୟ ରାଜନୀତିରେ ପ୍ରବେଶ, ଅଭ୍ୟୁଥାନ ଏବଂ କ୍ରମବର୍ଦ୍ଧନ ଭାରତବର୍ଷର ରାଜନୈତିକ ଜୀବନରେ ଏକ ବୈପ୍ଳବିକ ପରିବର୍ତ୍ତନ ଆଣିଥିଲା । ସର୍ବୋପରି ୧୯୨୧ ମସିହା ଜାନୁଆରୀ ମାସର ପ୍ରଥମ ସପ୍ତାହର 'ଅସହଯୋଗ ଆନ୍ଦୋଳନ' ଡାକରା କେବଳ ବ୍ରିଟିଶମାନଙ୍କୁ ସ୍ତମ୍ଭୀଭୂତ କରିଥିଲା, ତାହା ନୁହେଁ ଦେଶର କୋଣ ଅନୁକୋଣର ନାଗରିକମାନଙ୍କ ମନରେ ଏକ ନୂତନ ଆଶା ଓ ଚିନ୍ତାଧାରାର ସଂଚାର ମଧ୍ୟ କରିଥିଲା । ସତ୍ୟ ଓ ଅହିଂସାର ମୂଳମନ୍ତ୍ର ଉପରେ ପର୍ଯ୍ୟବସିତ ଗାନ୍ଧୀଙ୍କର ରାଜନୈତିକ କାର୍ଯ୍ୟକ୍ରମର ପ୍ରତିଫଳନ ସମଗ୍ର ଦେଶରେ ସଂଚରି ଯାଇଥିଲା । ଏହାର ବିଶେଷ ପ୍ରଭାବ ମଧ୍ୟ ଓଡ଼ିଶା ଉପରେ ପଡ଼ିଥିଲା । ଏହା ଓଡ଼ିଶାର ଜନନାୟକ ଏବଂ ଓଡ଼ିଆ ଜାତିର ଜନକ କୁଳବୃଦ୍ଧ ମଧୁସୂଦନଙ୍କର ପ୍ରାଧାନ୍ୟକୁ ସଂକୁଚିତ କରି ଗାନ୍ଧୀ ଅନୁପ୍ରେମୀ ପଣ୍ଡିତ ଗୋପବନ୍ଧୁ ଦାସଙ୍କୁ ଓଡ଼ିଆ ଲୋକ ନାୟକ ହିସାବରେ ପ୍ରତିଷ୍ଠିତ କରିଥିଲା ।



ସର୍ବୋପରି ମାର୍ଚ୍ଚ ୨୩ ତାରିଖ ୧୯୨୧ ମସିହା ସନ୍ଧ୍ୟାରେ କାଠଯୋଡ଼ି ନଦୀଶଯ୍ୟାରେ ଗାନ୍ଧିଜୀ ପ୍ରଥମ କରି ଓଡ଼ିଶା ଗସ୍ତରେ ଆସି ଏକ ବିଶାଳ ଜନସମାବେଶକୁ ଉଦ୍‌ବୋଧନ ଦେଇଥିଲେ । ମୂଳ ଲକ୍ଷ୍ୟ ଥିଲା ତାଙ୍କର ଛୁଆଁଅଛୁଆଁ ଭେଦଭାବ, କୁସଂସ୍କାର, ସାଂପ୍ରଦାୟିକ ବିଦ୍ୱେଶର ଦୂରୀକରଣ, ଆତ୍ମନିର୍ଭରଶୀଳ ଏବଂ ନାରୀ ଜାଗରଣ ପ୍ରସାର କରିବା । ଓଡ଼ିଶାରେ ୬ ଦିନ ରହଣି କାଳରେ ସେ ଭଦ୍ରକ, ସତ୍ୟବାଦୀ, ପୁରୀ, ବ୍ରହ୍ମପୁର ଇତ୍ୟାଦି ଅଞ୍ଚଳ ଭ୍ରମଣ କରି ଓଡ଼ିଶାର ଲୋକମାନଙ୍କ କାନରେ ସ୍ୱାଧୀନତାର ମନ୍ତ୍ର ଫୁଙ୍କି ଦେଇ ଗଲେ । ତାଙ୍କର ଆଗମନର ପ୍ରଭାବ ଓଡ଼ିଶାର ତୁଙ୍ଗ ନେତାଗଣ ଓ ସମଗ୍ର ଓଡ଼ିଶାବାସୀଙ୍କ ଉପରେ ପ୍ରଭାବ ବିସ୍ତାର କରିଥିଲା । ଫଳସ୍ୱରୂପ ଓଡ଼ିଆ ଲୋକମାନେ ନିଜକୁ ଜାତୀୟ ମୁଖ୍ୟସ୍ରୋତର ଧାରାରେ ମିଶାଇ ଦେଇଥିଲେ ଏବଂ ତତ୍‌ସହିତ ନିଜ ଭିତରେ ଥିବା ପ୍ରାଦେଶିକତା ତଥା ଆଞ୍ଚଳିକତାର ବିକାଶଧାରାକୁ ତନ୍ମଧ୍ୟରେ ନିକ୍ଷେପ କରିଥିଲେ ।

ଅସହଯୋଗ ଆନ୍ଦୋଳନ ପରିପ୍ରେକ୍ଷୀରେ ଓଡ଼ିଶାର ଅନେକ ଛାତ୍ରମାନେ ସ୍କୁଲ, କଲେଜ ବର୍ଜନ କରିଥିଲେ । ତନ୍ମଧ୍ୟରୁ ହରେକୃଷ୍ଣ ମହତାବ, ନନ୍ଦକିଶୋର ଦାସ, ନିତ୍ୟାନନ୍ଦ କାନୁନ୍‌ଗୋ, ନବକୃଷ୍ଣ ଚୌଧୁରୀ ଏବଂ ରାଜକୃଷ୍ଣ ବୋଷ ଅନ୍ୟତମ । ଭାଗିରଥୀ ମହାପାତ୍ର ଓ ଜଗବନ୍ଧୁ ସିଂ ସେମାନଙ୍କର ଆଇନ ବ୍ୟବସାୟ ବର୍ଜନ ଗୋପବନ୍ଧୁ ଚୌଧୁରୀଙ୍କର ସରକାରୀ ଚାକିରିରୁ ଇସ୍ତଫା ପ୍ରଦାନ ଏବଂ ପଣ୍ଡିତ ନୀଳକଣ୍ଠ ଦାସଙ୍କର କଲିକତା ବିଶ୍ୱବିଦ୍ୟାଳୟରୁ ଶିକ୍ଷକତା ପଦବୀରୁ ଇସ୍ତଫା ପ୍ରଦାନ ଉଲ୍ଲେଖନୀୟ ଘଟଣା ଅଟେ । ପଣ୍ଡିତ ଲିଙ୍ଗରାଜ ମିଶ୍ର, ସୁରେନ୍ଦ୍ରନାଥ ଦାସ ଏବଂ ମହମ୍ମଦ ହାନିଫ୍ ପ୍ରଭୃତି କେତେକ ବିଶିଷ୍ଟ ବ୍ୟକ୍ତିଗଣ ସରକାରୀ ଚାକିରିରୁ ଇସ୍ତଫା ପ୍ରଦାନ କରି ଅସହଯୋଗ ଆନ୍ଦୋଳନରେ ଲମ୍ଫ ପ୍ରଦାନ କରିଥିଲେ । ବାସ୍ତବପକ୍ଷେ ଓଡ଼ିଶାବାସୀ ବିଦେଶୀ ଶାସନରୁ ନିଜକୁ ମୁକ୍ତ କରିବା ଲାଗି ଭାରତୀୟ ଜାତୀୟ ସଂଗ୍ରାମରେ ଦେଶର ଅନ୍ୟାନ୍ୟ ଅଞ୍ଚଳ ପରି ମଧ୍ୟ ଏକ ବଳିଷ୍ଠ ଭୂମିକା ନିର୍ବାହ କରିଥିଲେ ।

ଏହି ଆନ୍ଦୋଳନର ଅନ୍ୟ ଦିଗକୁ ଉନ୍ମୋଚନ କଲେ, କେତେକ ଗଠନମୂଳକ କାର୍ଯ୍ୟର ଶୁଭାରମ୍ଭ ହୋଇଥିବାର ଉପଲବ୍ଧି ମଧ୍ୟ ହୁଏ । ଏହାର ଫଳସ୍ୱରୂପ ଓଡ଼ିଶାର ଉତ୍କଳ ସ୍ୱରାଜ୍ୟ ଶିକ୍ଷାପରିଷଦ ଜନ୍ମ ନେଲା । ଯାହାର ଫଳସ୍ୱରୂପ ପ୍ରଥମକରି ସତ୍ୟବାଦୀ ବିଦ୍ୟାଳୟକୁ ୧୯୨୧ ମସିହାର ପ୍ରଥମ ଭାଗରେ ଜାତୀୟ ଶିକ୍ଷାନୁଷ୍ଠାନ ରୂପେ ଓଡ଼ିଆ ଜାତି ଉଦ୍ଦେଶ୍ୟରେ ଉତ୍ସର୍ଗ କରାଯାଇଥିଲା । ତତ୍‌ସହିତ ଜଗତ୍‌ସିଂହପୁର, କଟକ ଏବଂ ସୋର ଇତ୍ୟାଦି ସ୍ଥାନମାନଙ୍କରେ ଜାତୀୟ ବିଦ୍ୟାଳୟ ସ୍ଥାପନ କରାଯାଇଥିଲା । ଜାତୀୟ ଚିନ୍ତାଧାରାର ପ୍ରସାର ନିମନ୍ତେ କଟକରେ 'ସ୍ୱରାଜ ଆଶ୍ରମ' ଜଗତସିଂହପୁରରେ 'ଅଳକା ଆଶ୍ରମ' ଏବଂ ବାଲେଶ୍ୱରରେ 'ସ୍ୱରାଜ ଆଶ୍ରମ' ଗଠନ କରାଯାଇଥିଲା । କଟକ, ପୁରୀ, ବ୍ରହ୍ମପୁର, ଭଦ୍ରକ, ସମ୍ବଲପୁର ଇତ୍ୟାଦି ସହରମାନଙ୍କରେ ବିଦେଶୀ ମଦ ଦୋକାନ ଏବଂ ବିଦେଶୀ ଲୁଗା ବିକ୍ରୟ

ଅନୁଷ୍ଠାନଗୁଡ଼ିକ ସମ୍ମୁଖରେ ଅନେକ ଲୋକ ଗଣଧାରଣା ଦେଇ ବସିଥିଲେ । ଏଇଠି ମନେପକାଇ ଦିଆଯାଇପାରେ ଯେ, ଗାନ୍ଧିଜୀ ତାଙ୍କର ପୁରୀ ଜନତାଙ୍କୁ ଉଦ୍‌ବୋଧନୀ ଭାଷଣରେ ମହାପ୍ରଭୁ ଜଗନ୍ନାଥଙ୍କ ମନ୍ଦିରରେ ବିଦେଶୀ ବସ୍ତ୍ର ବ୍ୟବହୃତ ହେଉଥିବା ସମ୍ପର୍କରେ ଏକ ଟିପ୍‌ପଣୀ ପ୍ରଦାନ କରିଥିଲେ । ଯାହାର ଫଳସ୍ୱରୂପ ପୁରୀର ଜନତାମାନେ ଶ୍ରୀମନ୍ଦିର ପରିଚାଳନା ପରିଷଦକୁ ଏହି ବିଦେଶୀ ବସ୍ତ୍ର ବ୍ୟବହାର ନକରିବା ପାଇଁ ଅନୁରୋଧ କରିଥିଲେ । ଏହାର ଫଳସ୍ୱରୂପ ଗୋପବନ୍ଧୁ ୧୮ ଜୁନ୍, ୧୯୨୧ ସମାଜର ସମ୍ପାଦକୀୟ ସ୍ତମ୍ଭରେ ଉଲ୍ଲେଖ କରିଥିଲେ ଯେ, ଶ୍ରୀମନ୍ଦିର ରୀତିନୀତିରେ ବିଦେଶୀ ଦ୍ରବ୍ୟ ବ୍ୟବହୃତ ହେବା ଲାଗି କୌଣସି ପରମ୍ପରା ନାହିଁ । ଏଣୁ ଏହା ଆଶା କରାଯାଏ ଯେ, ଶ୍ରୀମନ୍ଦିରରୁ ଯଦି ବିଦେଶୀ ବସ୍ତ୍ର ଓ ବିଦେଶୀ ଦ୍ରବ୍ୟ ବ୍ୟବହୃତ ହେବାର ନିଷିଧ କରାଯାଏ, ତା'ହେଲେ ଏହାର ଏକ ସୁପ୍ରଭାବ ଧର୍ମାନ୍ୱେଷୀ ଜନତାଙ୍କ ଉପରେ ବିସ୍ତାର କରିବ । ପ୍ରକୃତରେ ଏହାର ବର୍ଷକ ପରେ ଶ୍ରୀମନ୍ଦିରର ମୁଖ୍ୟପଣ୍ଡା ଦେଶବାସୀଙ୍କୁ ଏକ ନିବେଦନ କଲେ ଯେ, ମହାପ୍ରଭୁଙ୍କ ଲାଗି କୌଣସି ବିଦେଶୀ ଦ୍ରବ୍ୟ ଓ ବିଦେଶୀ ବସ୍ତ୍ର ନଦେବାକୁ । (ସମାଜ ୨୨ ଜୁନ୍ ୧୯୨୨) ୧୪ ଅଗଷ୍ଟ ୧୯୨୧ ମସିହା କଟକ ଟାଉନ୍ ହଲ୍‌ଠାରେ ଏକ ବିଶାଳ ଜନସମାବେଶ ସମ୍ମୁଖରେ ପୂର୍ବରୁ ସଂଗୃହୀତ ହୋଇଥିବା ବିଦେଶୀ ବସ୍ତ୍ରଗୁଡ଼ିକୁ ଏକ ଆନୁଷ୍ଠାନିକ ରୀତିରେ ଅଗ୍ନି ସଂଯୋଗ କରାଯାଇଥିଲା ଏବଂ ଏହାକୁ ଯଜ୍ଞ ନାମରେ ମଧ ନାମିତ କରାଗଲା ।

ଅସହଯୋଗ ଆନ୍ଦୋଳନ ପରେ ୧୯୩୦ରେ ଗାନ୍ଧିଜୀଙ୍କର ଆଇନ ଅମାନ୍ୟ ଆନ୍ଦୋଳନରେ ଓଡ଼ିଶାର ଭୂମିକା ମଧ ନ୍ୟୂନ ନୁହେଁ । ୧୨ ମାର୍ଚ୍ଚ, ୧୯୩୦ ମସିହା ସାବରମତି ଆଶ୍ରମରୁ ଲବଣ ସତ୍ୟାଗ୍ରହ ନିମନ୍ତେ ଦାଣ୍ଡିଯାତ୍ରା ସମୟରେ ଗାନ୍ଧିଜୀଙ୍କର ୭୮ ଜଣ ଅନୁଗାମୀଙ୍କ ମଧ୍ୟରୁ ଓଡ଼ିଶାର ବିଂଶ ବର୍ଷିୟ ଛାତ୍ର ମୋତିବାସ ଦାସ ଅନ୍ୟତମ । ଏହି ଆଇନ ଅମାନ୍ୟ ଆନ୍ଦୋଳନର ନିଆଁ ମଧ୍ୟ ଓଡ଼ିଶାରେ ସଂଚରୀ ଯାଇଥିଲା । ଗୋପବନ୍ଧୁ ଚୌଧୁରୀଙ୍କ ତତ୍ତ୍ୱାବଧାନରେ ହରେକୃଷ୍ଣ ମହତାବ ଏବଂ ସୁରେନ୍ଦ୍ରନାଥ ଦାସ ବାଲେଶ୍ୱରଠାରୁ ୧୦ କି.ମି. ଦୂରବର୍ତ୍ତୀ ସମୁଦ୍ରକୂଳବର୍ତ୍ତୀ ଇଞ୍ଚୁଡ଼ିଠାରେ କ୍ଷେତ୍ର ପ୍ରସ୍ତୁତି କରିଥିଲେ । ୬ ଏପ୍ରିଲ୍ ୧୯୩୦ରେ କଟକର ସ୍ୱରାଜ ଆଶ୍ରମଠାରୁ ଇଞ୍ଚୁଡ଼ି ଅଭିମୁଖେ ୨୧ ଜଣିଆ ଦଳ ନେଇ ଗୋପବନ୍ଧୁ ଚୌଧୁରୀ ଏବଂ ଆଚାର୍ଯ୍ୟ ହରିହର ଦାସ ଯାତ୍ରା କରିଥିଲେ । ଅବଶ୍ୟ ଚାନ୍ଦୋଳଠାରେ ଗୋପବନ୍ଧୁ ନିଷେଧାଜ୍ଞା ଅବମାନନା ଅଭିଯୋଗରେ ପୁଲିସ୍‌ମାନଙ୍କ ଦ୍ୱାରା ଗିରଫ ହୋଇ କଟକ ଜେଲ୍‌ରେ ବନ୍ଦୀ ହୋଇଥିଲେ । ହେଲେ ୧୩ ତାରିଖ ଏପ୍ରିଲ୍ ୧୯୩୦, ଆଚାର୍ଯ୍ୟ ହରିହର ଦାସ ଏବଂ ତାଙ୍କର ୧୨ ଜଣ ସହଯୋଗୀଙ୍କ ସହିତ ଇଞ୍ଚୁଡ଼ିଠାରେ ପହଞ୍ଚି ଲବଣ ଆଇନ ଅମାନ୍ୟ କରି ଲବଣ ପ୍ରସ୍ତୁତ କରିଥିଲେ । ସମଗ୍ର ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ବହୁତ ଦଳୀୟ କର୍ମୀ ଏହି ଇଞ୍ଚୁଡ଼ିଠାରେ ମଧ୍ୟ ଏକତ୍ରିତ ହୋଇଥିଲେ । ପ୍ରକୃତ ପକ୍ଷେ ଦେଖିବାକୁ ଗଲେ ଦାଣ୍ଡି ପରେ ହିଁ ଇଞ୍ଚୁଡ଼ି ଭାରତର ଦ୍ୱିତୀୟ ସ୍ଥାନ ଯେଉଁଠାରେ କି ଲବଣ ଆଇନ ଅମାନ୍ୟ କରାଯାଇଥିଲା । ଜାତୀୟ ସଂଗ୍ରାମରେ ଲମ୍ଫ ପ୍ରଦାନ କରିଥିବା ଓଡ଼ିଶାର ପ୍ରଥମ ନାରୀ ନେତ୍ରୀ ଭାବେ ରମାଦେବୀ ଏବଂ ମାଳତୀ ଦେବୀ ଇଞ୍ଚୁଡ଼ିଠାରେ ଶହ ଶହ ନାରୀମାନଙ୍କୁ ଏକତ୍ରିତ କରି ଲବଣ ସତ୍ୟାଗ୍ରହରେ ଅଂଶ ଗ୍ରହଣ କରିଥିଲେ । କୁଜଙ୍ଗର ତତ୍କାଳୀନ ରାଣୀ ଭାଗ୍ୟବତୀ ଦେବୀ ଏହି ଜାତୀୟ ସଂଗ୍ରାମରେ ଯୋଗଦାନ ସ୍ୱରୂପ ଅନ୍ୟୂନ ୫୦୦ ଜଣ ମହିଳା କର୍ମୀଙ୍କୁ ଉତ୍ସାହିତ କରି ଲବଣ ସତ୍ୟାଗ୍ରହରେ ଭାଗନେବା ଲାଗି ଅନୁପ୍ରାଣିତ କରିଥିଲେ । ଏହି ମହିଳାଗଣ ରାଣୀଙ୍କଦ୍ୱାରା ପ୍ରଭାବିତ ହୋଇ କୁଜଙ୍ଗର ଲବଣ ସତ୍ୟାଗ୍ରହରେ ଯୋଗ ଦେଇଥିଲେ । ପୁରୀରେ ମଧ୍ୟ ଏହାର ବେଶ୍ ସୁପ୍ରଭାବ ପଡ଼ିଥିଲା ।

ଲବଣ ସତ୍ୟାଗ୍ରହ ସହିତ ବିଦେଶୀ ଦ୍ରବ୍ୟ ବିକ୍ରୟ, ଦୋକାନ ସମ୍ମୁଖରେ ଗଣଧାରଣା, ବିଦେଶୀ ଦ୍ରବ୍ୟ ବର୍ଜ୍ଜନ, ଚୌକିଦାରୀ କର ନଦେବା, ଗ୍ରାମପଞ୍ଚାୟତ ଗଠନ, ନିଶା ନିବାରଣ ଲାଗି ଗ୍ରାମାଞ୍ଚଳଗୁଡ଼ିକରୁ ତାଳ ଗଛ କାଟି ଦେବା ପ୍ରଭୃତି କାର୍ଯ୍ୟଗୁଡ଼ିକ ମଧ୍ୟ ଚାଲୁ ରହିଲା । ଆଇନ ଅମାନ୍ୟ ଆନ୍ଦୋଳନର ବିଫଳତା ପରେ ଗାନ୍ଧିଜୀ ଅନ୍ୟାନ୍ୟ ଗଠନମୂଳକ କାର୍ଯ୍ୟରେ ଲିପ୍ତ ରହିବା ଲାଗି କଂଗ୍ରେସ କର୍ମୀମାନଙ୍କୁ ଉତ୍ସାହିତ କଲେ ।

୧୯୩୯ ମସିହାରେ ଗାନ୍ଧିଜୀ ଅନୁଭବ କଲେ ଯେ, ବ୍ରିଟିଶ୍ ସରକାର ଭାରତୀୟ ପ୍ରତିନିଧିମାନଙ୍କ ସହିତ ବିନା ଆଲୋଚନାରେ ଭାରତକୁ ମିତ୍ର ପକ୍ଷର ଏକ ଯୁଦ୍ଧରତ ଅଂଶୀଦାର ଦେଶ ହିସାବରେ ଘୋଷଣା କରିବା ଅନୈତିକ କାର୍ଯ୍ୟ ନୁହେଁ, ବରଂ ଏହା ଭାରତବାସୀଙ୍କ ପ୍ରତି ଚରମ ଉଦାସୀନତା ଓ ଚରମ ଉପେକ୍ଷା । ତତ୍‌ସହିତ ୧୯୪୦ ମସିହାର ମଧ୍ୟଭାଗରେ ଯୁଦ୍ଧ ପରିସ୍ଥିତି ଭୀଷଣ ଭାବରେ ଗମ୍ଭୀର ହୋଇ ଉଠିବାରୁ, ଏହି ପରିପ୍ରେକ୍ଷୀରେ କଂଗ୍ରେସ ଭାରତର ପୂର୍ଣ୍ଣ ସ୍ୱାଧୀନତା ଦାବୀକରି ତୁରନ୍ତ କେନ୍ଦ୍ରରେ ଏକ କାମଚଳା ଜାତୀୟ ସରକାର ପ୍ରତିଷ୍ଠା ପାଇଁ ମଧ୍ୟ ଆବେଦନ କଲା । ଏହାର ଉତ୍ତରରେ ତତ୍କାଳୀନ ଭାଇସ୍‌ରାୟ ଏକ ନୂଆ ସର୍ତ୍ତମୂଳକ ପ୍ରସ୍ତାବ ଦେଲେ, ଯାହାକୁ ଅଗଷ୍ଟ ଅଫର ବୋଲି କୁହାଯାଏ । ଏହା ମଧ୍ୟ କଂଗ୍ରେସ ଦ୍ୱାରା ସମ୍ପୂର୍ଣ୍ଣ ପ୍ରତ୍ୟାକ୍ଷିତ ହୋଇଥିଲା ଏବଂ ଗାନ୍ଧିଜୀ ବ୍ୟକ୍ତିଗତ ସତ୍ୟାଗ୍ରହ ଲାଗି ଡାକରା ଦେଲେ । ଏହାର ଫଳ ସ୍ୱରୂପ ଓଡ଼ିଶାରୁ ହରେକୃଷ୍ଣ ମହତାବ କଂଗ୍ରେସ କାର୍ଯ୍ୟକାରୀ ପରିଷଦର ଜଣେ ସଦସ୍ୟ ଭାବେ ଡିସେମ୍ବର ପହିଲା ୧୯୪୦ରେ ବାଲେଶ୍ୱରଠାରେ ସରକାରଙ୍କ ଯୁଦ୍ଧ ନୀତି ବିରୁଦ୍ଧରେ ଏକ ଅଗ୍ନିବର୍ଷୀ ଭାଷଣ ଦେଇ କାରାବରଣ କରିଥିଲେ । ଏହାପରେ ପରେ ଓଡ଼ିଶାର ବିଶିଷ୍ଟ ଲବ୍ଧ ପ୍ରତିଷ୍ଠିତ ନେତାଗଣମାନେ ମଧ୍ୟ ତଦନୁରୂପ କାର୍ଯ୍ୟକଳାପ ଯୋଗୁଁ କାରାବରଣ କରିଥିଲେ । କ୍ରିପସ୍ ମିଶନ୍‌ର ବିଫଳତା ପରେ କଂଗ୍ରେସ କାର୍ଯ୍ୟକାରୀ କମିଟି ୱାର୍ଧା ସଭାରେ ଏକ ସଂକଳ୍ପ ଗ୍ରହଣ କରିଥିଲେ । ଯାହାକୁ ଭାରତଛାଡ଼ ସଂକଳ୍ପ ବୋଲି କୁହାଯାଏ । ୭ ଅଗଷ୍ଟ, ୧୯୪୨ରେ ବମ୍ବେଠାରେ ସର୍ବଭାରତୀୟ

କଂଗ୍ରେସ ପରିଷଦର ଆଲୋଚନାରେ ଏହାର ଚୂଡ଼ାନ୍ତ ରୂପ ଦେବା ଲାଗି ନିଷ୍ପତ୍ତି ଗ୍ରହଣ କରାଗଲା ଏବଂ ୮ ଅଗଷ୍ଟ ମଧ୍ୟରାତ୍ରିରେ କଂଗ୍ରେସ୍ ପରିଷଦ ଭାରତଛାଡ଼ ଆନ୍ଦୋଳନ କାର୍ଯ୍ୟକାରୀ କରିବାପାଇଁ ଏକ ଐତିହାସିକ ଦୃଢ଼ସଂକଳ୍ପ ନେଲା । ହେଲେ ବ୍ରିଟିଶ୍ ସରକାର ଏହାର ସୁରାକ୍ ଖୁବ୍ ଆଗରୁ ପାଇ ଏହାକୁ ମୂଳରୁ ବିଫଳ କରିବା ଲାଗି ସମସ୍ତ କାର୍ଯ୍ୟସୂଚୀ ପ୍ରସ୍ତୁତ କରିସାରିଥିଲେ । ଯାହାଫଳରେ କି ଠିକ୍ ୯ ତାରିଖ ଭୋରୁ ଭୋରୁ ଦେଶର ସମସ୍ତ ତୁଙ୍ଗ ନେତାମାନଙ୍କୁ ଗିରଫ କରାଯାଇ ଜେଲ୍‌ରେ ନିକ୍ଷେପ କରାଯାଇଥିଲା । ଓଡ଼ିଶାରେ ମଧ୍ୟ ଭୋର ୯ ତାରିଖ ପ୍ରତ୍ୟୁଷରୁ ସବୁଦଳୀୟ କଂଗ୍ରେସ କର୍ମୀମାନଙ୍କୁ ବନ୍ଦୀ କରାଗଲା ଏବଂ ସେହିଦିନ ମଧ୍ୟ ସମଗ୍ର କଂଗ୍ରେସ ଅନୁଷ୍ଠାନ, ଅଫିସ୍ ଏବଂ ତାଙ୍କର ସହଯୋଗୀ ଅନୁଷ୍ଠାନଗୁଡ଼ିକୁ ବେଆଇନ ବୋଲି ଘୋଷଣା କରି ସବୁ ବିଜ୍ଞାପିତ ସ୍ଥାନମାନଙ୍କୁ ନିଜ ଅକ୍ତିଆରକୁ ନେଇଗଲା । ହେଲେ ସରକାରୀ କର୍ମଚାରୀମାନଙ୍କ ଭାବନାକୁ ଧକ୍କା ଦେଇ ଅଗଷ୍ଟ ତୃତୀୟ ସପ୍ତାହରେ ଓଡ଼ିଶାର ଗାଁଗହଳିରେ ଏହି ଅଗଷ୍ଟ ବିପ୍ଳବ ତୀବ୍ରତର ହୋଇ ଉଠିଲା । ଯାହାକୁ କି ଇଂରେଜ ସରକାର ସହଜରେ ଦମନ କରିପାରିଲେ ନାହିଁ ।

ଓଡ଼ିଶାର ରାଜନୈତିକ ପରିସ୍ଥିତି ସମ୍ପର୍କରେ ଏକ ସମୀକ୍ଷା ସେପ୍ଟେମ୍ବର ପ୍ରଥମ ସପ୍ତାହରେ ଏକ ସରକାରୀ ଇସ୍ତାହାରରେ ପ୍ରକାଶ ପାଇଥିଲା । ଏଥିରେ କୁହାଯାଇଥିଲା ଯେ ଗଞ୍ଜାମ, ପୁରୀ, ସମ୍ବଲପୁର ଜିଲ୍ଲାର ଅବସ୍ଥା ସମ୍ପୂର୍ଣ୍ଣ ସ୍ୱାଭାବିକ ଥିଲାବେଳେ କଟକ, ବାଲେଶ୍ୱର ଏବଂ କୋରାପୁଟରେ ଗଣହିଂସା ସଂଗଠିତ ହୋଇଛି । ପ୍ରକୃତରେ ଦେଖିବାକୁ ଗଲେ ଅଗଷ୍ଟ ବିପ୍ଳବର ନିଆଁ ରେଭେନ୍ସା କଲେଜ ପ୍ରାଙ୍ଗଣରୁ ଆରମ୍ଭ ହୋଇ ଚାରିଆଡ଼କୁ ସଂକ୍ରମିତ ହୋଇଥିଲା । ରେଭେନ୍‌ସା କଲେଜର କେତେକ ଛାତ୍ର ଦଲିଲ ଏବଂ ନଥିପତ୍ର ଥିବା ଅଫିସ୍ କୋଠରୀରେ ଅଗ୍ନି ସଂଯୋଗ କରି ଏକ ଯୁଗାନ୍ତକାରୀ ଉଦାହରଣ ସୃଷ୍ଟି କରିଥିଲେ । ଯାହାଫଳରେ କି ସେମାନଙ୍କ ମଧ୍ୟରୁ ଅନେକଙ୍କୁ କାରାବରଣ କରିବାକୁ ପଡ଼ିଥିଲା । ତତ୍କାଳୀନ ଅବିଭକ୍ତ କଟକ ଜିଲ୍ଲାର ଯାଜପୁର ଏବଂ କେନ୍ଦ୍ରାପଡ଼ାରେ ହିଂସାତ୍ମକ କାର୍ଯ୍ୟକଳାପ ବୃଦ୍ଧି ପାଇଥିଲା । ପୋଷ୍ଟ ଅଫିସ୍, ତହସିଲ୍ ଅଫିସ୍, ରେଭିନ୍ୟୁ ଅଫିସ୍ ଏବଂ ଡାକବଙ୍ଗଳାଗୁଡ଼ିକ ବିପ୍ଳବୀ ଜନତାମାନଙ୍କ ଆକ୍ରମଣର ଶିକାର ହେଲେ । ଚୌକିଦାରମାନଙ୍କଠାରୁ ସେମାନଙ୍କ ପୋଷାକପତ୍ର ଛଡ଼ାଇ ନିଆଯାଇ ପୋଡ଼ି ଦିଆଯାଇଥିଲା ଏବଂ ଅନେକ ଜାଗାରେ ଟେଲିଗ୍ରାଫ୍ ଓ ଟେଲିଫୋନ୍ ତାର କାଟି ଦିଆଯାଇଥିଲା ।

ଅଗଷ୍ଟ ୯, ୧୯୪୨ରେ ବରୀ ସେବାଶ୍ରମକୁ ମଧ୍ୟ ପୋଲିସ ନିଜ ଅକ୍ତିଆରକୁ ନେଇ ତାଲା ପକାଇ ଦେଇଥିଲା । ଏହାର ଉତ୍ତରରେ ଅଗଷ୍ଟ ୨୪ରେ ଉତ୍ତ୍ୟକ୍ତ ଜନତା କେବଳ ବରୀ ଆଶ୍ରମକୁ ପୁନର୍ବାର ଦଖଲ କରିଥିଲେ ତାହା ନୁହେଁ ବରଂ ପି.ଡ଼ବ୍ଲ୍ୟୁ.ଡ଼ି କୋଠରୀ, ଯେଉଁଠାରେ ବରୀ ଆଶ୍ରମର ନଥିପତ୍ର ସୁରକ୍ଷିତ ଅବସ୍ଥାରେ ରଖାଯାଇଥିଲା, ସେଥିରେ ମଧ୍ୟ ଅଗ୍ନି ସଂଯୋଗ କରିଥିଲେ ଏବଂ ସେହିଦିନ ମଧ୍ୟ ବରୀର ବାନର ସେନାମାନେ ପୋଷ୍ଟ ଅଫିସ୍ ପୋଡ଼ି ଦେଇଥିଲେ ।

ବରୀ ଆଶ୍ରମର ଶାଖା କାଇପଡ଼ା, ଅଣିକଣା, ରାମଚନ୍ଦ୍ରପୁର ଏବଂ ସନ୍ନ୍ୟାସୀପୁରଠାରେ ମଧ୍ୟ ପ୍ରତିଷ୍ଠା କରାଯାଇଥିଲା । କାଇପଡ଼ାର ଅନେକ ବ୍ୟକ୍ତି ଏହି ବରୀ ଆଶ୍ରମର ପୁନରୁଦ୍ଧାର, ନଥିପତ୍ର ଥିବା ପିଡବ୍ଲ୍ୟୁଡ଼ି କୋଠରୀରେ ଅଗ୍ନି ସଂଯୋଗ ଏବଂ ବାନର ସେନା ସହିତ ପୋଷ୍ଟ ଅଫିସ୍‌ରେ ଅଗ୍ନି ସଂଯୋଗ କାର୍ଯ୍ୟରେ ଲିପ୍ତ ଥିଲେ ।

ଏହି ଘଟଣାର ପ୍ରତ୍ୟକ୍ଷଦର୍ଶୀ ଯାଜପୁର ସବ୍‌ଡିଭିଜନ୍ ଅଫିସର ଦ୍ୱିତୀୟ କିରାଣୀ ସୁଧାକର ଦାସଙ୍କ ସହିତ ଯାଜପୁରର ତତ୍କାଳୀନ ଏସ୍.ଡି.ଓ. ରତ୍ନାକର ଷଡ଼ଙ୍ଗୀ, ଡି.ଏସ୍.ପି. ଲକ୍ଷ୍ମଣ ରାଓ ପଟ୍ଟନାୟକ ଏବଂ ୨୭ ଜଣ ପୋଲିସ୍ କର୍ମଚାରୀ ସଂପୃକ୍ତ ଦୋଷୀମାନଙ୍କୁ ଧରିବା ପାଇଁ କାଇପଡ଼ାରେ ଆସି ପହଞ୍ଚିଥିଲେ ।

କାଇପଡ଼ାରେ ଏହି ଖବର ମଧ୍ୟ ସଂଚରି ଯାଇଥିଲା । ପୋଲିସ୍ ପହଞ୍ଚିବା ପରେ କାଇପଡ଼ାର ଗ୍ରାମବାସୀମାନେ ଏହାର ବିରୁଦ୍ଧାଚରଣ କରିବା ଲାଗି ଏକ ନିଷ୍ପତ୍ତି ନେଲେ । ୨୬ ଅଗଷ୍ଟ, ୧୯୪୨, ଗହ୍ମାପୂର୍ଣ୍ଣମୀ ଦିନ ଯାଜପୁରର ବିଭିନ୍ନ ପ୍ରାନ୍ତରୁ କର୍ମୀମାନେ ଆସି କାଇପଡ଼ାର ଶସ୍ୟ ଭଣ୍ଡାର ଅଫିସ୍ ସାମ୍ନାରେ ଏକତ୍ରିତ ହୋଇଥିଲେ । ତତ୍‌ପରେ ସେଠାରୁ ଯାଇ ନିକଟବର୍ତ୍ତୀ ସନ୍ନ୍ୟାସୀପୁର ଗ୍ରାମରେ ଏକ ସଭା କଲେ । ଅନ୍ନପୂର୍ଣ୍ଣା ମହାରଣା ଯାହାଙ୍କୁ କି ଶ୍ରଦ୍ଧାରେ ସମସ୍ତେ ଚୁନୀ ଦେଇ ବୋଲି ଡାକୁଥିଲେ ସିଏ ଏହି ସଭାରେ ଭାଷଣ ଦେଉଥିଲାବେଳେ ସେଠାରେ ଡି.ଏସ୍.ପି. ପହଞ୍ଚି ଯାଇଥିଲେ । ଇତ୍ୟବସରରେ ପୋଲିସ୍ ଅନେକଗୁଡ଼ିଏ ଲୋକଙ୍କୁ ଗିରଫ କରି ନେଇଥିଲେ ଏବଂ ଅଳ୍ପ କେତେକ ପୁଲିସ୍ ସେମାନଙ୍କୁ ଯାଜପୁର କୋର୍ଟକୁ ଚାଲାଣ କରିବା କାର୍ଯ୍ୟରେ ବ୍ୟସ୍ତ ଥିବା ସମୟରେ ସେଠାରେ ଉପସ୍ଥିତ ଥିବା ଜନତା ଏହାର ତୀବ୍ର ପ୍ରତିବାଦ କରି ଗିରଫ ହୋଇଥିବା ବ୍ୟକ୍ତିମାନଙ୍କୁ ମୁକ୍ତି କରି ଦେବାଲାଗି ଦାବୀ କରିଥିଲେ । ହାଡ଼ିବନ୍ଧୁ ପଣ୍ଡା ଏହାର ନେତୃତ୍ୱ ନେଇଥିଲେ । ପୋଲିସ୍‌ର ବାରମ୍ବାର ତାଗିଦ୍ ସତ୍ତ୍ୱେ ସେମାନେ ବିଚ୍ୟୁତ ନହେବାରୁ ପୁଲିସ୍ ତରଫରୁ ଏକ ଅମାନୁଷିକ ଗୁଳିଚାଳନା କରାଯାଇଥିଲା । ଯେଉଁଥିରେ କି ୫ ଜଣ ବ୍ୟକ୍ତି ପ୍ରାଣ ହରାଇ ଥିଲେ ଏବଂ ଅଧିକାଂଶ ବ୍ୟକ୍ତି କ୍ଷତବିକ୍ଷତ


ଅନ୍ନପୂର୍ଣ୍ଣା ମହାରଣା

ହୋଇଥିଲେ । ଏହାପରେ ପରେ ଅନ୍ନପୂର୍ଣ୍ଣା ମହାରଣା ଅନ୍ୟ କେତେଜଣ ସହଯୋଗୀଙ୍କ ସହିତ ସେଠାରୁ ଯାଇ କଳାମାଠିଆଠାରେ ପୁଲିସ୍ ଅଫିସର୍‌ଙ୍କୁ ଏକ ଚେତାବନୀ ଦେଇଥିଲେ । ସେ କହିଥିଲେ ଯେ, 'ଗିରଫ ହୋଇଥିବା ବନ୍ଦୀମାନଙ୍କୁ ମୁକ୍ତକର, ନଚେତ୍ ଆମ୍ଭମାନଙ୍କୁ ଗିରଫ କର ।' ତାଙ୍କର କଥାପ୍ରତି ପୁଲିସ୍ ଭ୍ରୂକ୍ଷେପ କରି ନଥିଲା ଯାହା ଫଳରେ କି ହାଡ଼ିବନ୍ଧୁ ପଣ୍ଡା, ନିଧିସାମଲ ଏବଂ ନରହରି ପଣ୍ଡା ପୁଲିସ୍‌ର ସୁରକ୍ଷା ବଳୟ ଭାଙ୍ଗି ଜଣେ ବନ୍ଦୀଙ୍କୁ ମୁକ୍ତ କରିଥିଲେ ଏବଂ ସେହିଠାରେ ମଧ୍ୟ ପୁଲିସ ଦ୍ୱାରା ଗୁଳି ବିଦ୍ଧ ହୋଇ ପ୍ରାଣ ତ୍ୟାଗ କଲେ ।

ସୁନ୍ଦର ସୌମ୍ୟ ୩୫ ବର୍ଷିୟ ଯୁବକ ହାଡ଼ିବନ୍ଧୁ ପଣ୍ଡା, ଛନ୍ଦା ଦେବୀ ଏବଂ ମହେଶ୍ୱର ପଣ୍ଡାଙ୍କର ସୁପୁତ୍ର ଥିଲେ । ସୁଦୂର କଲିକତାରୁ ପିତାଙ୍କର ଶୁଦ୍ଧିକ୍ରିୟାରେ ଯୋଗଦେବା ଲାଗି ସେ ତାଙ୍କର ଗ୍ରାମକୁ ଆସିଥିଲେ । ପିତାଙ୍କ ମୃତ୍ୟୁର ଠିକ୍ ୯ ଦିନ ପରେ ହସି ହସି ଦେଶମାତୃକା ପାଇଁ ଶହୀଦ ହୋଇଥିଲେ । ହାଡ଼ିବନ୍ଧୁ ପଣ୍ଡାଙ୍କର ମୃତ୍ୟୁରେ ମର୍ମାହତ ଜନତା ହଠାତ୍ ଉତ୍ତ୍ୟକ୍ତ ହୋଇ କିଛି ଭ୍ରୂକ୍ଷେପ ନକରି ପୁଲିସ୍ ବାହିନୀ ଆଡ଼କୁ ଅଗ୍ରସର ହୋଇ ଯାଇଥିଲେ । ହେଲେ ନିର୍ମମ ପୁଲିସ୍‌ର ଗୁଳିଚାଳନା ୨୩ ବର୍ଷିୟ ଦିନ ମଜୁରିଆ ସାଉଁଟି ମଳିକ ଯିଏକି ଗୟା ଦେବୀ ଏବଂ ମୃତ ବିମ୍ବାଧରଙ୍କ ପୁତ୍ର ଥିଲେ ତାଙ୍କରି କପାଳକୁ ବିଦ୍ଧ କରିଥିଲା । ଏହାପରେ ହାତୀ ସାହିର ସୁଲୋଚନା ଦେବୀ ଏବଂ ମୃତ ଘନଭୂୟାଁଙ୍କର ପୁତ୍ର ମାୟାଧର ଭୂୟାଁ ଯିଏକି ମରଣସେନାର ଏକ ସକ୍ରିୟ ସଦସ୍ୟ ଥିଲେ । ପୁଲିସ୍ ହାତରୁ ବନ୍ଧୁକ ଛଡ଼ାଇବା ଲାଗି ପ୍ରଚେଷ୍ଟାରେ ଥିବାବେଳେ ୨ ଜଣ ପୁଲିସ୍ ତାଙ୍କର ଗଳାରେ ବନ୍ଧୁକ ରଖି ଗୁଳି ଚାଳନା କରିଥିଲେ । ଯାହାଫଳରେ କି ସେହିଠାରେ ସିଏ ଟଳି ପଡ଼ିଲେ । ସଂପ୍ରତି ଅନ୍ନପୂର୍ଣ୍ଣା ମହାରଣା ରେଭେନ୍‌ସା କଲେଜର ସ୍ନାତକୋତ୍ତର ଇତିହାସ ବିଭାଗର ଛାତ୍ରୀ ଦେବଯାନୀ ପତିଙ୍କୁ ଏକ ସାକ୍ଷାତକାର ଦେଇ ସ୍ୱହସ୍ତରେ ଲିଖିତ ବିବରଣୀ ୨୩ ମେ, ୨୦୦୪ରେ ପ୍ରଦାନ କରିଛନ୍ତି । ସେଥିରେ ସେ ଉଲ୍ଲେଖ କରିଛନ୍ତି 'କାଇପଡ଼ାର ହୋଇଥିବା ଗୁଳିକାଣ୍ଡରେ ସେ ଉପସ୍ଥିତ ଥିଲେ । ସେହି ସ୍ଥାନରେ ସଂଗିନୀର ଆକ୍ରମଣରେ ଦେହତ୍ୟାଗ କରିଥିବା ଶହୀଦ ମାୟାଧର ଭୂୟାଁଙ୍କର ମୃତ ଦେହକୁ ହାଟସାହି ଗ୍ରାମର ଶ୍ରୀମାନ କୃଷ୍ଣଙ୍କ ସାହାଯ୍ୟରେ ବହନ କରି ଆଣିଥିଲେ ।' ସନନ୍ଦ ସ୍ୱାଇଁ ଯିଏ ଜଣେ ସୁକବି ହିସାବରେ ଖ୍ୟାତି ଲାଭ କରିଥିଲେ ଏବଂ ମରଣସେନାର ଅନ୍ୟତମ ସଦସ୍ୟ ଥିଲେ ପୁଲିସ୍‌ର ଗୁଳିରୁ ମଧ୍ୟ ନିଷ୍କୃତି ପାଇ ନଥିଲେ । ସେହି ରାତିରେ ସେ ଇହଧାମ ତ୍ୟାଗ କରିଥିଲେ । ସବୁଠାରୁ ସ୍ମରଣୀୟ ଘଟଣା ହେଉଛି କୁନିଝିଅ ଅବଳାର ତ୍ୟାଗ । ନିଜ ବନ୍ଦୀ ପିତାଙ୍କର ପଛରେ ଦୌଡ଼ି ଦୌଡ଼ି ଯାଇ ଏକ ବର୍ଷା ପାଣି ଭରା ଖାଲ ଭିତରେ ପଡ଼ି ମୃତ୍ୟୁବରଣ କରିଥିଲା । ଏହି ଗୁଳି କାଣ୍ଡରେ ଅନ୍ୟୂନ ୧୭ ଜଣ ବ୍ୟକ୍ତି ପ୍ରାଣ ହରାଇଥିଲେ ଏବଂ ପୁଲିସ୍ ଅଧିକାଂଶ ଉପସ୍ଥିତ ବ୍ୟକ୍ତି ଓ ବାନରସେନାମାନଙ୍କୁ ବନ୍ଦୀ କରି ଜେଲ୍‌କୁ ପଠାଇ ଦେଇଥିଲେ । ଏହି କାଇପଡ଼ା ଗୁଳିକାଣ୍ଡର ପ୍ରତ୍ୟକ୍ଷଦର୍ଶୀ କେତେକ ବିଶିଷ୍ଟ ବ୍ୟକ୍ତି ଯେଉଁମାନେ କି କାରାବରଣ କରିଥିଲେ, ସେମାନଙ୍କ ବିଷୟରେ ଏଠାରେ କିଛି ଉଲ୍ଲେଖ କରାଯାଉଅଛି । ଅନାମ ଚରଣ ଦାସ ଜଣେ ରାଜନୈତିକ ବନ୍ଦୀ ହିସାବରେ ୨୬ ଅଗଷ୍ଟ, ୧୯୪୨ ମସିହାରେ ବରମ୍ପୁର ଏବଂ କଟକ କାରାଗାରରେ ୧୪ ମାସ ଅତିବାହିତ କରିଥିଲେ । ତାଙ୍କ ପଛକୁ ସେହି କୃଷ୍ଣନଗର ଗାଁର ବେଣୁଧର ସାମଲ ଓ ଡମ୍ବରୁଧର ରାୟ ମଧ୍ୟ କାରାବରଣ କରିଥିଲେ । ଇନ୍ଦ୍ରମଣି ତ୍ରିପାଠୀ ଏବଂ ମୁକ୍ତେଶ୍ୱର ମିଶ୍ରଙ୍କ ନାମ ମଧ୍ୟ ଉଲ୍ଲେଖନୀୟ । ବିଶିଷ୍ଟ ନାରୀନେତ୍ରୀ ଅନ୍ନପୂର୍ଣ୍ଣ ମହାରଣା ଏକ କ୍ଷତବିକ୍ଷତ ବାଳକକୁ କୋଳରେ ଧରି ଖୁବ୍ ସାହସର ସହିତ ପିଲାଟିକୁ ଦେଖାଇ ପୁଲିସ୍ ଅଫିସର୍‌ମାନଙ୍କୁ ପଚାରିଥିଲେ, 'ଏହି ପିଲାଟି ତୁମର କ'ଣ କ୍ଷତି କରି ଥିଲା ଯେ ତୁମେ ତା' ଉପରକୁ ଗୁଳି ଚାଳନା କଲ ? ତୁମେ ଯେଉଁ ଦରମା ପାଉଛ ତାହା ଏହି ଲୋକମାନଙ୍କ ଦ୍ୱାରା ହିଁ ଦିଆଯାଉଛି ଏବଂ ତା'ର ପ୍ରତ୍ୟୁତ୍ତରରେ ତୁମେ ସେହିମାନଙ୍କୁ ଗୁଳିଚାଳନା କଲ । ତୁମ୍ଭେମାନେ ଅକୃତଜ୍ଞ ।

କାଇପଡ଼ା ପରି ବାଲେଶ୍ୱରର ଭଣ୍ଡାରୀପୋଖରୀ, ତୁଳିଗଡ଼ିଆ ଏବଂ ଇରମ୍‌ଠାରେ ମଧ୍ୟ ଅଗଷ୍ଟ ବିପ୍ଳବୀମାନଙ୍କୁ ନେଇ ପୁଲିସ୍ ସାହାଯ୍ୟରେ ବ୍ରିଟିଶ୍ ସରକାର ରକ୍ତର ହୋଲି ଖେଳିଥିଲେ । ଓଡ଼ିଶାର ଅନେକ ମୁକ୍ତି ସଂଗ୍ରାମୀ ନିଜର ଆତ୍ମତ୍ୟାଗ, ସ୍ୱାର୍ଥ ତ୍ୟାଗ ଏବଂ ଭାବାବେଗ ତ୍ୟାଗ କରି ଇତିହାସର ମାନସପଟରେ ଚିର ଅମର ଓ ଚିର ସ୍ମରଣୀୟ ହୋଇ ରହିଛନ୍ତି ।

'ହେ ଅଗଷ୍ଟ ବିପ୍ଳବୀର ମୁକ୍ତି ସଂଗ୍ରାମୀ ଗଣ
ତୁମରି ଦାୟାଦ ମୁଁ
ତୁମ ପାଶେ କରେ ନିବେଦନ
ପ୍ରସ୍ଫୁଟିତ ହେଉ ମୋର ମାନସିକ ଚେତନା
ହେଉ ମୋର ଅଣୁ ପ୍ରତିରେଣୁ ସ୍ୱାକ୍ଷରିତ
ତୁମରି ଆଦର୍ଶ ତୁମରି ତ୍ୟାଗରେ ।'

ବରିଷ୍ଠ ଅଧ୍ୟାପିକା
ଇତିହାସ ବିଭାଗ
ରେଭେନ୍‌ସା କଲେଜ, କଟକ

# ସ୍ୱାଧୀନତା ସଂଗ୍ରାମ ଓ ମା' ରମାଦେବୀ

ଗୋଲୋକ ବିହାରୀ ବିଶୋଇ

ଭାରତର ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶା ନୀରବଦ୍ରଷ୍ଟା ନହୋଇ ଅନ୍ୟ ରାଜ୍ୟମାନଙ୍କ ଭଳି ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଥିଲା । ବିଶେଷତଃ ୧୮୫୭ ମସିହାରୁ ୧୯୪୨ ମସିହା ପର୍ଯ୍ୟନ୍ତ ଜାତୀୟ ଆନ୍ଦୋଳନର ବିଭିନ୍ନ ପର୍ଯ୍ୟାୟରେ ଉତ୍କଳର ସୁଯୋଗ୍ୟ ସନ୍ତାନମାନେ ଆପଣାର ଅସୀମ ତ୍ୟାଗ ଏବଂ ଅପୂର୍ବ ବୀରତ୍ୱ ପ୍ରଦର୍ଶନ କରିଥିବା କଥା ଇତିହାସରୁ ଜଣାଯାଏ । ଦେଶମାତୃକାର ସ୍ୱାଧୀନତା ପାଇଁ ବହୁ ବୀର ସନ୍ତାନ ଆତ୍ମବଳୀ ଦେଇଛନ୍ତି ଏବଂ ଅନେକ କାରାଗାରର ଅନ୍ଧକାର କୋଠରୀ ମଧ୍ୟରେ ବିଦେଶୀ ଶାସକଙ୍କ କର୍ମଚାରୀମାନଙ୍କ ଦ୍ୱାରା ନିର୍ଯ୍ୟାତିତ ହୋଇ କାଳାତିପାତ କରିଛନ୍ତି । ଓଡ଼ିଶା ହେଉଛି ଏକମାତ୍ର ରାଜ୍ୟ ଯେ କି ବ୍ରିଟିଶ ଶାସନର ଅନ୍ତର୍ଭୁକ୍ତ ହୋଇଥିଲା ସର୍ବଶେଷରେ । ଏଠାରେ ୧୮୫୭ ମସିହା ପ୍ରଥମ ସ୍ୱାଧୀନତା ସଂଗ୍ରାମର ବହୁ ପୂର୍ବରୁ ଅର୍ଥାତ୍ ୧୮୧୭ ମସିହାରେ ପାଇକ ବିଦ୍ରୋହ ଓ ୧୮୩୫ରେ ଘୁମୁସର ବିଦ୍ରୋହ ଆରମ୍ଭ ହୋଇଥିଲା ।


ରମା ଦେବୀ

କିନ୍ତୁ ଜାତୀୟ କଂଗ୍ରେସର ମହାସ୍ରୋତରେ ଓଡ଼ିଶା ସାମିଲ ହେଲା ୧୯୨୦ ମସିହାରେ । ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ନେତୃତ୍ୱ ଉକ୍ତ ମହାସ୍ରୋତରେ ସାମିଲ ହେବା ପାଇଁ ଆମ୍ଭମାନଙ୍କୁ ଉତ୍ସାହିତ କରିଥିଲା । ଫଳତଃ ଓଡ଼ିଶାବାସୀ ଅସହଯୋଗ ଆନ୍ଦୋଳନ, ଆଇନ ଅମାନ୍ୟ ଆନ୍ଦୋଳନ ଓ ଭାରତଛାଡ଼ ଆନ୍ଦୋଳନରେ ଆବଶ୍ୟକୀୟ ଭୂମିକା ଗ୍ରହଣ କରିବା ସମ୍ଭବ ହେଲା । ସେତେବେଳେ ଓଡ଼ିଶାରେ ଗୋପବନ୍ଧୁ ଦାସ, ଗୋପବନ୍ଧୁ ଚୌଧୁରୀ, ବିଶ୍ୱନାଥ ଦାସ, ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ନୀଳକଣ୍ଠ ଦାସ, ନନ୍ଦକିଶୋର ଦାସ, ନିତ୍ୟାନନ୍ଦ କାନୁନ୍‌ଗୋ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ଆଚାର୍ଯ୍ୟ ହରିହର, ଯଦୁମଣି ମଙ୍ଗରାଜ ଓ ଆହୁରି ଅନେକ ଆନ୍ଦୋଳନ ପାଇଁ ଅଣ୍ଟା ଭିଡ଼ିଲେ । କଂଗ୍ରେସର କାର୍ଯ୍ୟକ୍ରମ, ଗାନ୍ଧିଜୀଙ୍କ ବାର୍ତ୍ତା ଓ ବିଦେଶୀ ସରକାରର ଦୌରାତ୍ମ୍ୟକୁ ଲୋକଲୋଚନକୁ ଆଣିବା ପାଇଁ ଜାତୀୟ କବି ବାଞ୍ଛାନିଧି ମହାନ୍ତି, ବୀର କିଶୋର ଦାସ ଓ ବାଗ୍ମୀ ବିଶ୍ୱନାଥ କର ଆଦି ଉଲ୍ଲେଖନୀୟ ଭୂମିକା ଗ୍ରହଣ କଲେ ।

ତତ୍କାଳୀନ ଇଂରେଜ ରାଜତ୍ୱ କାଳରେ ଭାରତ ଭୂଖଣ୍ଡର ଅନ୍ୟାନ୍ୟ ରାଜ୍ୟ ସଦୃଶ ଓଡ଼ିଶାର ସାଧାରଣ ନାଗରିକମାନେ ନାନା ଭାବରେ ଶୋଷଣ ଓ ଅତ୍ୟାଚାରରେ ଅଣନିଃଶ୍ୱାସୀ ହୋଇଥିଲେ । ଓଡ଼ିଶାରେ ବିଦେଶୀ ସରକାରଙ୍କ ବାହୁ ଛାୟା ତଳେ ଆରାମରେ ଥିବା ଗଡ଼ଜାତର ରାଜାମାନେ ଓ ମୋଗଲବନ୍ଦୀର ଜମିଦାରମାନେ ପ୍ରଜାମାନଙ୍କୁ ଶୋଷଣ କରୁଥିଲେ । ଅନ୍ୟାୟ ଟିକସ ଅସୁଲ, ମନମୁଖୀ ଶାସନ, ନାରୀ ଧର୍ଷଣ, ବେଠିବେଗାରି, ମିଥ୍ୟା ମୋକଦ୍ଦମା ଆଳରେ ଶାସ୍ତିବିଧାନ ଓ ବ୍ୟକ୍ତି ବିଶେଷଙ୍କୁ ନାନାଦି ଲାଞ୍ଛନା ପ୍ରଦାନ କରି ପ୍ରଜାମାନଙ୍କର ଆର୍ଥିକ, ମାନସିକ ଓ ସାମାଜିକ ମେରୁଦଣ୍ଡ ଭାଙ୍ଗି ଦେଇଥିଲେ । ଅତିଷ୍ଠ ପ୍ରଜାବର୍ଗ କେତେକ ଗଡ଼ଜାତ ଅଂଚଳରେ ସୃଷ୍ଟି କଲେ ପ୍ରଜାମଣ୍ଡଳ ଆନ୍ଦୋଳନ ।

ଏହି ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶାବାସୀ କେବଳ ବ୍ରିଟିଶ ଶାସନ ବିରୁଦ୍ଧରେ ଲଢ଼େଇ କରି ନଥିଲେ । ସେମାନେ ସେସମୟର ପ୍ରଜାପୀଡ଼କ ରାଜା, ଜମିଦାର ତଥା ଚାଟୁକାର କର୍ମଚାରୀଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ ।

ସତ କହିଲେ, ସ୍ୱାଧୀନତା ଏକ ଜନ୍ମଗତ ଅଧିକାର ପ୍ରତି ମନୁଷ୍ୟର । ଅରଣ୍ୟ, ପର୍ବତର ଆଦିବାସୀଙ୍କଠାରୁ ଆରମ୍ଭ କରି ସହରର ବିଶିଷ୍ଟ ବୁଦ୍ଧିଜୀବୀଙ୍କ ପର୍ଯ୍ୟନ୍ତ ଏବଂ ଗରିବ ଚାଷୀ ମୂଲିଆଠାରୁ ଆରମ୍ଭ କରି ଘର କୋଣର ବୋହୂ-ଝିଅମାନଙ୍କ ପର୍ଯ୍ୟନ୍ତ ସମସ୍ତେ ଏହି ଅଧିକାର ପ୍ରାପ୍ତି ପାଇଁ ହୋଇ ପଡ଼ିଥିଲେ ବ୍ୟାକୁଳ । ସେଥିପାଇଁ ଓଡ଼ିଶାବାସୀଙ୍କୁ ସହିବାକୁ ପଡ଼ିଛି ଅସୀମ ଦୁଃଖ, ଯନ୍ତ୍ରଣା ଓ ନିର୍ଯ୍ୟାତନା । ଏପରିକି ଏହି ସ୍ୱାଧୀନତା ହାସଲ ପାଇଁ ଶହୀଦ ହୋଇଛନ୍ତି ଜୟୀ ରାଜଗୁରୁ, ଲକ୍ଷ୍ମଣ ନାୟକ, ରଘୁମହାନ୍ତି, ଦିବାକର ପରିଡ଼ା ଓ ଆହୁରି ଅନେକ ସ୍ୱାଧୀନତା ସଂଗ୍ରାମୀ ।

ସେତିକି ନୁହେଁ, ସ୍ୱାଧୀନତା ସଂଗ୍ରାମରେ ଗୋପବନ୍ଧୁ ଚୌଧୁରୀଙ୍କ ପତ୍ନୀ ପୂଜ୍ୟା ରମା ଦେବୀ, ନବକୃଷ୍ଣ ଚୌଧୁରୀଙ୍କ ପତ୍ନୀ ମାଳତୀ ଚୌଧୁରୀ, ସରଳା ଦେବୀ, ଜାନକୀ ଦେବୀ, ଗୋଦାବରୀ ଦେବୀ ଓ କୁନ୍ତଳା କୁମାରୀଙ୍କ ଅବଦାନ ଅନବଦ୍ୟ । ୧୯୨୨ ମସିହା ମାର୍ଚ୍ଚ ୨୨ ତାରିଖ ଦିନ ଭାରତ ସ୍ୱାଧୀନତା ଆନ୍ଦୋଳନର କର୍ଣ୍ଣଧାର ଗାନ୍ଧିଜୀ କଟକରେ ଗୋଟିଏ ମହିଳା ସଭାର ଆହ୍ୱାନ କରିଥିଲେ । ଏହି ସଭାରେ ରମା ଦେବୀଙ୍କର ପ୍ରଥମ ଦେଖାହୁଏ ଗାନ୍ଧିଜୀଙ୍କ ସହିତ । ରମାଦେବୀ ନିଜେ ଅରଟରେ କାଟିଥିବା ସୂତାମୋଡ଼ା ଗୋଟିଏ ଉପହାର ଦେଇଥିଲେ ଗାନ୍ଧିଜୀଙ୍କୁ । ସେଠାରେ ଗାନ୍ଧିଜୀଙ୍କ ଭାଷଣରେ ଅନୁପ୍ରାଣିତ ହେଲେ ରମାଦେବୀ, ଫଳରେ ସେ ପ୍ରକାଶ୍ୟ ଭାବରେ ଯୋଗଦାନ କଲେ ଆନ୍ଦୋଳନରେ ।

ଜଗତସିଂହପୁରସ୍ଥ ଅଳକା ନଦୀ କୂଳରେ ପ୍ରତିଷ୍ଠା ହେଲା ଅଳକା ଆଶ୍ରମ । ସେତେବେଳେ ଶହ ଶହ ସ୍କୁଲ କଲେଜର ଛାତ୍ର ଗାନ୍ଧିଜୀଙ୍କ ଡାକରାରେ ଲମ୍ଫ ପ୍ରଦାନ କଲେ ଆନ୍ଦୋଳନକୁ । ଏହିସବୁ ଛାତ୍ରମାନଙ୍କୁ ଅଳକା ଆଶ୍ରମରେ ରଖାଯାଇ ଶିକ୍ଷା ଦେବାର ବ୍ୟବସ୍ଥା ହେଲା । ଅରଟରେ ସୂତା କାଟିବା, ରୋଗୀ ସେବା କରିବା ଓ ଦୀନଦରିଦ୍ରଙ୍କ ଯତ୍ନ ନେବା ଆଦି କାର୍ଯ୍ୟରେ ତାଲିମ ଦିଆଗଲା ଅନ୍ତେବାସୀମାନଙ୍କୁ । ଏହି ଶତାଧିକ ଛାତ୍ରକର୍ମୀମାନଙ୍କ ଖାଇବା-ପିଇବା, ରହିବା-ଶୋଇବା ଏବଂ ଶିକ୍ଷା ଓ ସ୍ୱାସ୍ଥ୍ୟ ରକ୍ଷାର ଦାୟିତ୍ୱ ନେଇଥିଲେ ସ୍ୱୟଂ ରମାଦେବୀ । ସେଥିପାଇଁ ଅଳକା ଆଶ୍ରମର କର୍ମୀମାନେ ରମାଦେବୀଙ୍କୁ ମା' ବୋଲି ସମ୍ବୋଧନ କରୁଥିଲେ । ମା' ସମ୍ବୋଧନ ରମାଦେବୀଙ୍କୁ ଅଭିଭୂତ କରାଇଥିଲା । ଆନ୍ଦୋଳନ ଶେଷ ହେଲା, ଭାରତବର୍ଷ ସ୍ୱାଧୀନ ହେଲା ଏବଂ ଚିରଦିନ ପାଇଁ ଓଡ଼ିଶା ମାଟିରେ ରମାଦେବୀ - ମା' ରମାଦେବୀ ନାମରେ ହେଲେ ସୁପରିଚିତା ।

୧୯୩୦ ମସିହା ମାର୍ଚ୍ଚ ୧୨ ତାରିଖରୁ ଆଇନ ଅମାନ୍ୟ ଆନ୍ଦୋଳନ ଚାଲିଲା ଭାରତବର୍ଷରେ । ଉପକୂଳ ଅଞ୍ଚଳରେ ଲବଣ ସତ୍ୟାଗ୍ରହ ଅପୂର୍ବ ସଫଳତା ଲାଭ କଲା । ଗୁଜୁରାଟର ଦାଣ୍ଡିକୁ ଲବଣ ସତ୍ୟାଗ୍ରହ ପାଇଁ ଗାନ୍ଧିଜୀଙ୍କର ପ୍ରସିଦ୍ଧ ଦାଣ୍ଡିଯାତ୍ରା ଆରମ୍ଭ ହୁଏ । ସେହିପରି ଓଡ଼ିଶାର ବାଲେଶ୍ୱରସ୍ଥ ଇଞ୍ଚୁଡ଼ିରେ ଆଚାର୍ଯ୍ୟ ହରିହର ଦାସଙ୍କ ନେତୃତ୍ୱରେ ଲୁଣମରା ଆନ୍ଦୋଳନ ମଧ୍ୟ ଆରମ୍ଭ ହେଲା । ଏହି ଆନ୍ଦୋଳନ ପାଇଁ ଶହ ଶହ ଲୋକ ମାଡ଼ ଖାଇଲେ ଓ ଜେଲ୍ ଗଲେ । ଏସବୁକୁ ଭ୍ରୂକ୍ଷେପ ନକରି ଘରର ଚାରିକାନ୍ଥ ମଧ୍ୟରେ ଆବଦ୍ଧ ଥିବା ମହିଳା ରମାଦେବୀ ଲୁଣ ମରା ଅଭିଯାନରେ ସାମିଲ ହେଲେ । ରମାଦେବୀ ଇଞ୍ଚୁଡ଼ିରୁ ଗଲେ କୁଜଙ୍ଗ । ସେ କୁଜଙ୍ଗ ରାଣୀଙ୍କୁ ଲୁଣମରା ଅଭିଯାନରେ ସାମିଲ କଲେ, କ୍ରମେ ଶହ ଶହ କୁଳଭୁଆଣୁଣୀମାନେ ଘରୁ ବାହାରି ଆସିଲେ ରାଜ ରାସ୍ତାକୁ ଏବଂ ସମସ୍ତେ ରମାଦେବୀଙ୍କ ସହଗାମିନୀ ହେଲେ । ଆଶ୍ଚର୍ଯ୍ୟ କଥା ଘର କୋଣରେ ରହୁଥିବା ଅପାଠୁଆ, ଦରପାଠୁଆ ଏବଂ ଲଜ୍ଜ୍ୟାଶୀଳା ଗୃହିଣୀମାନେ ରମାଦେବୀଙ୍କ କଥାରେ ପ୍ରଭାବିତ ହୋଇ ଯୋଗଦେଲେ ଆନ୍ଦୋଳନରେ । ସେମାନଙ୍କ ସରଳ ମନରେ ମା' ରମାଦେବୀ ସୃଷ୍ଟି କଲେ ଅପୂର୍ବ ରାଷ୍ଟ୍ର ପ୍ରେମ । କେବଳ ରାଷ୍ଟ୍ର ପ୍ରେମ ନୁହେଁ - ପ୍ରଗାଢ଼ ଆତ୍ମ ବିଶ୍ୱାସ ସରଳା ଗାଉଁଲୀ ଝିଅ ବୋହୂଙ୍କ ମନରେ ବସା ବାନ୍ଧିଲା ନିବିଡ଼ ଭାବରେ । ଏହା ନିଃସନ୍ଦେହରେ ଏକ ବିସ୍ମୟକର ଘଟଣା ।

କୌଣସି କଥାକୁ କାନରେ ଶୁଣିବା କିମ୍ବା ବହିପତ୍ରରେ ପଢ଼ିବା ଅପେକ୍ଷା ପ୍ରତ୍ୟକ୍ଷ ଭାବରେ ସ୍ୱଚକ୍ଷୁରେ ଦେଖିବା ଦ୍ୱାରା କଥାଟା ମନୁଷ୍ୟ ମନକୁ ବିଶେଷ ଭାବେ ସ୍ପର୍ଶ କରେ । ବିଶ୍ୱାସର ଭାବଧାରା କ୍ରମେ ସୁସ୍ପଷ୍ଟ ହୁଏ । ରମାଦେବୀ ଥିଲେ ଏକ ସମ୍ଭ୍ରାନ୍ତ ପରିବାରର ଝିଅ ଏବଂ ବୋହୂ । ଧନ ସଂପତ୍ତିର ଅଭାବ ନଥିଲା । ଅଥଚ ଧଳା ଖଦଡ଼ ଲୁଗା ପିନ୍ଧି ଓ ହାତରେ ଦୁଇପଟ ପାଣିକାଚ ନାଇ ଏବଂ ମୁଣ୍ଡରେ ଓଢ଼ଣା ପକାଇ ଜଣେ ସାଧାରଣ ଘରର ସ୍ତ୍ରୀ ରୂପରେ ଯେତେବେଳେ ଉଭା ହେଲେ ଗାଉଁଲୀ ଝିଅ ବୋହୂଙ୍କ ସମ୍ମୁଖରେ ଏବଂ ଅତ୍ୟନ୍ତ ମର୍ମସ୍ପର୍ଶୀ ଭାଷାରେ ସେମାନଙ୍କ ସମ୍ମୁଖରେ ଉପସ୍ଥାପିତ କଲେ ତତ୍କାଳୀନ ବିଦେଶୀ ସରକାରର ଅତ୍ୟାଚାର ଓ ଅନାଚାର କାହାଣୀମାନ, ସେତେବେଳେ ଗାଁର ସରଳା ମହିଳାଗଣ ରମାଦେବୀଙ୍କ କଥାରେ ପ୍ରଭାବିତ ହେଲେ । କେବଳ ପ୍ରଭାବିତ ହେଲେ ନାହିଁ, ତାଙ୍କର ପଦାଙ୍କ ଅନୁସରଣ କଲେ । ସେମାନେ ଜାଣିଲେ ଆନ୍ଦୋଳନ କରିବା ଅର୍ଥ ହୋହାଲ୍ଲା କରିବା ନୁହେଁ । ଶାନ୍ତି ଓ ଅହିଂସାକୁ ପାଥେୟ କରି ନିଜର ଅସୁବିଧା ଓ ଅଭିଯୋଗକୁ ଉପସ୍ଥାପିତ କରିବା ସହ ନିଜେ ଗଠନମୂଳକ କାର୍ଯ୍ୟ କରିବା ଏକାନ୍ତ ଆବଶ୍ୟକ । ଝିଅବୋହୂମାନେ ଅରଟରେ ସୂତା କାଟିଲେ ଓ ଜାତି ଅଜାତି ଭାବ ଭୁଲି ଅନ୍ୟର ସେବା କରିବା ମନୋବୃତ୍ତିରେ ନିଜକୁ ମନେଇ ନେଲେ ।

୧୯୩୦ ମସିହା ନଭେମ୍ବର ମାସ ୮ ତାରିଖରେ ଲୁଣମରା ଆନ୍ଦୋଳନ ପାଇଁ ରମାଦେବୀ କାରାବରଣ କଲେ । ସେହିପରି ୧୯୪୨ ମସିହା ଭାରତଛାଡ଼ ଆନ୍ଦୋଳନରେ ସାମିଲ ହୋଇ ଦ୍ୱିତୀୟବାର କାରାବରଣ କରିଥିଲେ ରମାଦେବୀ ।

୧୯୩୪ ମସିହାରେ ଗାନ୍ଧିଜୀଙ୍କର ପ୍ରସିଦ୍ଧ ହରିଜନ ଯାତ୍ରା ଆରମ୍ଭ ହୁଏ । ବାପୁଜୀ ସେବର୍ଷ ମେ ମାସରେ ସମ୍ବଲପୁର ବାଟ ଦେଇ ଓଡ଼ିଶାରେ ପହଞ୍ଚିଲେ । ହଜାର ହଜାର ଲୋକଙ୍କର ସମାବେଶ ହେଲା । ସେତେବେଳେ ଓଡ଼ିଶା ଶାଖାର ସମ୍ପାଦକ ଦାୟିତ୍ୱ ତୁଲାଉଥିଲେ ରମାଦେବୀ ଅତି ନିଖୁଣ ଭାବରେ । ହରିଜନ ବସ୍ତି ସଫେଇ ଓ ସେମାନଙ୍କର ମନୋବୃତ୍ତିର ପରିବର୍ତ୍ତନ ଏହି ଯାତ୍ରାର ମୂଳଲକ୍ଷ୍ୟ । ଗାନ୍ଧିଜୀଙ୍କ ସହ ସେତେବେଳେ ଏହି ପଦଯାତ୍ରାରେ ଥିଲେ ଠକ୍କରବାପା, ମୀରାବେନ, ପ୍ରଭାବତୀ ଦେବୀ, ଗୋପବନ୍ଧୁ ଚୌଧୁରୀ ଓ ମା' ରମାଦେବୀ । ଏହି ପଦଯାତ୍ରା ସମୟରେ ରମାଦେବୀ ଗାନ୍ଧିଜୀଙ୍କ ସହ

ଖୋଲାଖୋଲି କଥାବାର୍ତ୍ତା ହେବାର ସୌଭାଗ୍ୟ ଅର୍ଜନ କରିଥିଲେ । ସେସମୟରେ ରମାଦେବୀ ହରିଜନ ପାଣ୍ଠିକୁ ତାଙ୍କର ୧୫୦ ଭରି ଓଜନର ସୁନା ଗହଣା ମୁକ୍ତ ହସ୍ତରେ ଦାନ କରିଥିଲେ ।

ଗାନ୍ଧିଜୀ ରମାଦେବୀଙ୍କ ନେତୃତ୍ୱରେ ହୋଇଥିବା ହରିଜନ ଯାତ୍ରା କାର୍ଯ୍ୟରେ ଅତ୍ୟନ୍ତ ପ୍ରୀତ ହୋଇ ଉଚ୍ଛ୍ୱସିତ ପ୍ରଶଂସା କରିଥିଲେ । ନିଜର ମନକଥା ଗାନ୍ଧିଜୀ ଏକ ସାମ୍ବାଦିକ ସମ୍ମିଳନୀରେ ପ୍ରକାଶ କରିଥିବାର ଶୁଣାଯାଏ ।

ରମାଦେବୀ ଗାନ୍ଧିଜୀଙ୍କ ପ୍ରଭାବରେ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇ ଜାତି, ଧର୍ମ ବନ୍ଧନରୁ ନିଜକୁ ଊର୍ଦ୍ଧ୍ୱରେ ରଖି କାର୍ଯ୍ୟ କରିଗଲେ ଚିରଦିନ ପାଇଁ । ଏପରିକି ନ୍ୟାୟ ବିଚାରରେ ସେ ପୁରୁଷ ନାରୀ ମଧ୍ୟରେ ପ୍ରଭେଦ ଦେଖୁ ନଥିଲେ । ଗାଁଗହଳରେ ଅଶିକ୍ଷିତ, ଗରିବ, ଉତ୍ପୀଡ଼ିତ ଏବଂ ରୋଗୀଙ୍କ ମୁହଁରେ ହସ ଫୁଟାଇବା ଲାଗି ସେ ଆପ୍ରାଣ ଚେଷ୍ଟା କରୁଥିଲେ । ସେ କଦାପି ହତୋତ୍ସାହ ନହୋଇ ଧୈର୍ଯ୍ୟ ଓ ସାହସର ସହିତ କାର୍ଯ୍ୟ କରିଥିଲେ ସାରା ଜୀବନ । ଓଡ଼ିଶାର ନାରୀମାନଙ୍କ ମନରେ ସେ ବିପ୍ଳବର ମଂଜି ବୁଣି ଦେଇଥିଲେ ସ୍ୱାଧୀନତା ସଂଗ୍ରାମ ସମୟରେ । ସେହିପରି ହରିଜନ କଲ୍ୟାଣ, ମୌଳିକ ଶିକ୍ଷା ପ୍ରଦାନ ଓ ଗ୍ରାମ ସଂଗଠନ ପାଇଁ ସର୍ବଦା ବ୍ୟସ୍ତ ରହୁଥିଲେ ।

ଜୀବନବ୍ୟାପୀ କରିଥିବା ସେବା ଓ ତ୍ୟାଗ ପାଇଁ ତାଙ୍କୁ ୧୯୮୧ରେ ଯମୁନାଲାଲ ବଜାଜ୍ ପୁରସ୍କାର ପ୍ରଦାନ କରି ସମ୍ମାନିତ କରାଯାଇଥିଲା । କଟକ ସହରଠାରୁ ଅଳ୍ପ କିଛି ଦୂରରେ ଅବସ୍ଥିତ ସତ୍ୟଭାମାପୁରରେ ଏକ ସମ୍ଭ୍ରାନ୍ତ ବଂଶରେ ସେ ଜନ୍ମଲାଭ କରିଥିଲେ ୧୮୯୯ ମସିହା ଡିସେମ୍ବର ୩ ତାରିଖରେ । କିନ୍ତୁ ସେ ଆଜି ନାହାନ୍ତି ଆମ ଗହଣରେ । ୧୯୮୫ ମସିହା ଜୁଲାଇ ୨୨ ତାରିଖ ଦିନ ସେ ଚାଲି ଯାଇଛନ୍ତି ଅଫେରା ରାଇଜକୁ । ବିଂଶ ଶତାବ୍ଦୀର ଶକ୍ତି ସ୍ୱରୂପିଣୀ ମା' ରମାଦେବୀ ଓଡ଼ିଆ ଜାତିର ଚିର ନମସ୍ୟା । ସେ ଆମ ପାଇଁ ଅଭୁଲା ସ୍ମୃତି ।

ସହାୟକ ପୁସ୍ତକ - 'ବିଂଶ ଶତାବ୍ଦୀର ବିଂଶ ଓଡ଼ିଆ' ।

ଏସ୍.-୩/୬୦୩
ନୀଳାଦ୍ରି ବିହାର, ଭୁବନେଶ୍ୱର-୨୧

---

## ସଫଳ କାହାଣୀ

ପଦ୍ମ ପ୍ରଧାନ, କନ୍ଧମାଳ ଜିଲ୍ଲାର ଘୁ.ଉଦୟଗିରି ତହସିଲ ଅନ୍ତର୍ଗତ ଲିଙ୍ଗାଗଡ଼ ପଂଚାୟତର ବେଟିକୋଲା ଗ୍ରାମରେ ରହନ୍ତି । ବର୍ଷ ବର୍ଷ ଧରି ସେ ନିଜର ଏବଂ ନିଜ ପରିବାରର ଭରଣପୋଷଣ ନିମନ୍ତେ ଦିନ ମଜୁରୀ କରି ଅତି କଷ୍ଟରେ ଚଳୁଥିଲେ । ତାଙ୍କର ପାଞ୍ଚପ୍ରାଣୀ କୁଟୁମ୍ବ ଅତି ଦୁଃଖ କଷ୍ଟ ଅଭାବ ଅନାଟନରେ ଜୀବିକା ନିର୍ବାହ କରୁଥିବା ଦେଖି ଘୁ.ଉଦୟଗିରି ବ୍ଲକ୍‌ର ରେଶମ ସଂପ୍ରସାରଣ ଅଧିକାରୀ ତାଙ୍କୁ ତୁତ ଚାଷ କରିବା ନିମନ୍ତେ ପ୍ରେରିତ କରିଥିଲେ । ତାଙ୍କ ପ୍ରଚେଷ୍ଟାରେ ଶ୍ରୀ ପ୍ରଧାନ ଏସ୍.ଜି.ଏସ୍.ୱାଇ ସ୍କିମ୍‌ରେ ଷ୍ଟେଟବ୍ୟାଙ୍କର ଏ.ଡି.ବି. ଶାଖାଠାରୁ ଟ.୨୦,୦୦୦ଙ୍କା (କୋଡ଼ିଏ ହଜାର) ଋଣ ନେଇ ତୁତ ଚାଷ କରି ବର୍ଷକୁ ଏକର ପିଛା ୩୦,୦୦୦ରୁ ୪୦,୦୦୦ ଟଙ୍କା ମଧ୍ୟରେ ରୋଜଗାର କରି ଆନନ୍ଦରେ ଚଳୁଛନ୍ତି । ଏହି ତୁତ ଚାଷ ସେ ବର୍ଷକୁ ପ୍ରାୟ ୪ ଥର କରିଥାନ୍ତି । ଏଥିନିମନ୍ତେ ତାଙ୍କୁ ପ୍ରତ୍ୟେକ ଥର ମାତ୍ର ୧୫ ଦିନ କାର୍ଯ୍ୟ କରିବାକୁ ପଡ଼ିଥାଏ । ବର୍ତ୍ତମାନ ଖାଲି ସମୟରେ ପଦ୍ମ ପ୍ରଧାନ ମୂଲିଆ କାମ କରି ବେଶ୍ ଦି' ପଇସା ରୋଜଗାର କରନ୍ତି । ତୁତ ଚାଷ କାମରେ ତାଙ୍କୁ ପରିବାରର ସଦସ୍ୟମାନଙ୍କ ସହ ତାଙ୍କ ସ୍ତ୍ରୀ ମଧ୍ୟ ସାହାଯ୍ୟ କରନ୍ତି ।

ସୌଜନ୍ୟ : ଗୁରୁବୀର ସିଂହ, ଉପଖଣ୍ଡ ସୂଚନା ଓ ଲୋକ ସଂପର୍କ ଅଧିକାରୀ, ଘୁ. ଉଦୟଗିରି

# ନିମାପଡ଼ାରେ ଭାରତଛାଡ଼ ଆନ୍ଦୋଳନ

ଶ୍ରୀନିବାସ ଆଚାର୍ଯ୍ୟ

୧୯୪୨ ମସିହାର ଭାରତଛାଡ଼ ଆନ୍ଦୋଳନ ଥିଲା ଇଂରେଜ ସରକାରଙ୍କ ବିରୁଦ୍ଧରେ ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଏକ ଗଣ ବିପ୍ଳବ । ପ୍ରଜା ଶୋଷଣକାରୀ ଇଂରେଜ ସରକାରର ବର୍ବରୋଚିତ ଓ ଅକଥନୀୟ ଅତ୍ୟାଚାରକୁ ଭ୍ରୂକ୍ଷେପ ନକରି ଶହ ଶହ ନିରୀହ ଭାରତୀୟ ଜନତା ଶହୀଦ ହେବା ସଂଗେସଂଗେ ହଜାର ହଜାର ଆହତ ଓ କାରାବରଣ କରିଥିଲେ । ମହାତ୍ମା ଗାନ୍ଧୀଙ୍କ ଅହିଂସା ମନ୍ତ୍ରରେ ଦୀକ୍ଷିତ ହୋଇ ଏକାଗ୍ରତା ସହିତ ଅଗଣିତ ସତ୍ୟାଗ୍ରହୀ ଅସୀମ ତ୍ୟାଗ ଓ ଅତୁଳନୀୟ ବୀରତ୍ୱ ପ୍ରଦର୍ଶନ କରି ସମଗ୍ର ପୃଥିବୀକୁ ସ୍ତମ୍ଭୀଭୂତ କରାଇ ଦେଇଥିଲେ । ଏହି ସତ୍ୟାଗ୍ରହ ଫଳରେ ଇଂରେଜ ସରକାର ଶାସନଗାଦୀ ଛାଡ଼ିବା ପାଇଁ ବାଧ ହୋଇଥିଲେ । ଏହି ଆନ୍ଦୋଳନରେ ଅବିଭକ୍ତ ପୁରୀ ଜିଲ୍ଲା ନିମାପଡ଼ାବାସୀଙ୍କର ଅବଦାନ ଇତିହାସରେ ଚୀର ସ୍ମରଣୀୟ ହୋଇ ରହିଅଛି ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ତଥା କ୍ରିପସ୍ ମିଶନ୍ ବିଫଳ ହେବା ପରେ ସର୍ବଭାରତୀୟ ନେତୃବୃନ୍ଦମାନଙ୍କର ଇଂରେଜ ସରକାରଙ୍କ ଉପରେ ଆଉ ବିଶ୍ୱାସ ରହିଲା ନାହିଁ । ସରକାରଙ୍କର ଦୋ ମୁହାଁ ନୀତିକୁ ଜାଣିବାରେ ସଂଗ୍ରାମର କର୍ଣ୍ଣଧାର ତଥା ମହାରଥୀ ମହାତ୍ମା ଗାନ୍ଧୀଙ୍କୁ ବେଶି ସମୟ ଲାଗିଲା ନାହିଁ । ତେଣୁ ସେ ଅତିଷ୍ଠ ହୋଇ ଇଂରେଜଙ୍କ ବିରୁଦ୍ଧରେ 'ଭାରତଛାଡ଼ ଆନ୍ଦୋଳନ' କରିବାକୁ ବାଧ ହୋଇଥିଲେ । ଏହାଫଳରେ ୧୯୪୨ ମସିହା ଜୁଲାଇ ୧୪ ତାରିଖରେ ଅଖିଳ ଭାରତୀୟ କଂଗ୍ରେସ ଅଧିବେଶନ ୱାର୍ଦ୍ଧାଠାରେ ବସି ଭାରତଛାଡ଼ ଆନ୍ଦୋଳନ ପ୍ରସ୍ତାବ ଗ୍ରହଣ କରାଯାଇଥିଲା । ପୁନରାୟ ସେହିବର୍ଷ ଅଗଷ୍ଟମାସ ଆଠ ତାରିଖରେ ଏହି ଅଧିବେଶନ ମୁମ୍ବାଇଠାରେ ବସି ସର୍ବସମ୍ମତିକ୍ରମେ ଗୃହୀତ ହୋଇଥିଲା । ଏଥିପାଇଁ ଗାନ୍ଧିଜୀ ଏକ ବିରାଟ ଜନଆନ୍ଦୋଳନ ପାଇଁ ଦେଶବାସୀଙ୍କୁ ଆହ୍ୱାନ ମାଧ୍ୟମରେ 'କର ବା ମର'ର ଡାକରା ଦେଇଥିଲେ । ଠିକ୍ ତା'ପରଦିନ ଅଗଷ୍ଟ ୯ ତାରିଖରେ ପ୍ରତ୍ୟୁଷରୁ ସର୍ବଭାରତୀୟ ନେତା, ଯଥା- ଗାନ୍ଧିଜୀଙ୍କ ସମେତ ପଣ୍ଡିତ ଜବାହରଲାଲ ନେହେରୁ, ମୌଲାନ ଆଜାଦ୍, ଆଚାର୍ଯ୍ୟ କୃପାଳିନୀ, ଡଃ ହରେକୃଷ୍ଣ ମହତାବ ପ୍ରଭୃତିଙ୍କୁ ଇଂରେଜ ସରକାର ଗିରଫ କରି ନେଲେ । ଏହି



ନିମାପଡ଼ା ସ୍ୱାଧୀନତା ସଂଗ୍ରାମୀ ସମ୍ମିଳନୀ

ସମ୍ବାଦ ବିଜୁଳିଭଳି କ୍ଷଣକ ମଧ୍ୟରେ ଭାରତର ପ୍ରତ୍ୟେକ କୋଣ ଅନୁକୋଣରେ ପ୍ରଚାର ହୋଇଗଲା । ଆଉ ମଧ୍ୟ ଇଂରେଜ ସରକାର କଂଗ୍ରେସ ଦଳକୁ ବେଆଇନ ଘୋଷଣା କରିଥିଲେ । ଜାତି, ଧର୍ମ, ବର୍ଣ୍ଣ ଓ ସାନବଡ଼ର ଭେଦଭାବ ନିର୍ବିଶେଷରେ ଭାରତୀୟଙ୍କ ଶିରାପ୍ରଶିରାରେ ସ୍ୱାଧୀନତାର ବହ୍ନି ପ୍ରଜ୍ୱଳିତ ହୋଇଥିଲା । ପ୍ରାଦେଶିକ ଓ ଜିଲ୍ଲାସ୍ତରୀୟ ବହୁ ତୁଙ୍ଗ ନେତାଙ୍କୁ ସେହି ୯ ତାରିଖରେ ବିଭିନ୍ନ ସମୟରେ ଓ ସ୍ଥାନରେ ଗିରଫ କରାଯାଇଥିଲା । ଆମ ଓଡ଼ିଶାରେ ୨୬ ଜଣଙ୍କ ଉପରେ ଗିରଫ ପରୱାନା ଜାରି ହୋଇଥିଲେ ମଧ୍ୟ ୨୪ ଜଣଙ୍କୁ ଗିରଫ୍ କରାଯାଇଥିଲା । ସେହିପରି ନିମାପଡ଼ାର ପ୍ରବୀଣ ସ୍ୱାଧୀନତା ସଂଗ୍ରାମୀ, ଦକ୍ଷ କୃଷକ ନେତା ମୋହନ ଦାଶ ଓ କାକଟପୁରର ସଂଗ୍ରାମୀ ଗତିକୃଷ୍ଣ ସ୍ୱାଇଁଙ୍କୁ ସେହି ମାସରେ ଗିରଫ କରାଯାଇଥିଲା ।

ଅତୀତରେ ଘଟି ଯାଇଥିବା ୧୯୨୦ ମସିହାର ଅସହଯୋଗ ଆନ୍ଦୋଳନ, ୧୯୩୦ର ଲବଣ ସତ୍ୟାଗ୍ରହ, ୧୯୩୪ର ଚାଷୀ ଆନ୍ଦୋଳନ ଓ ସ୍ୱତନ୍ତ୍ର ଓଡ଼ିଶା ଗଠନ ଆନ୍ଦୋଳନଗୁଡ଼ିକ ନିମାପଡ଼ାର ସାଂଗଠନିକ ଦକ୍ଷତା ଓ ଏକତା ଭାରତଛାଡ଼ ଆନ୍ଦୋଳନକୁ ସକ୍ରୀୟ କରିବାରେ ଖୋରାକ ଯୋଗାଇଥିଲା । ଗିରଫ ଦାବୀର ପ୍ରତିବାଦ କରିବା ପାଇଁ ସ୍ୱତଃସ୍ଫୁର୍ତ ଭାବେ ନିମାପଡ଼ା ଅର୍ଥାତ୍ ବଳଙ୍ଗା, ଗୋପ, କାକଟପୁର, ଅସ୍ତରଙ୍ଗ, ନୟାହାଟ ଓ କୋଣାର୍କ ଅଞ୍ଚଳ ସମେତ ଅନ୍ୟ ଗ୍ରାମଗୁଡ଼ିକର

ଜନସାଧାରଣ ଅଗ୍ନିଶିଖା ପରି ଆନ୍ଦୋଳନରେ ଝାସ ଦେଇଥିଲେ । ଏହାକୁ ତୀବ୍ରତର କରାଇବା ପାଇଁ ନିମାପଡ଼ା ଉଚ୍ଚବିଦ୍ୟାଳୟର ଛାତ୍ରମାନେ ଧର୍ମଘଟରେ ସାମିଲ ହୋଇଥିଲେ । ଫଳରେ ସମଗ୍ର ନିମାପଡ଼ାର ଜନତାଙ୍କ ମଧ୍ୟରେ ଉତ୍ତେଜନା ଦ୍ୱିଗୁଣିତ ହୋଇଥିଲା ।

ଏହି ସମୟରେ କଟକର ରେଭେନ୍ସା କଲେଜରେ ଦେଶ ସ୍ୱାଧୀନତା ପାଇଁ ଛାତ୍ର ଆନ୍ଦୋଳନ ମୁଣ୍ଡ ଟେକିଥିଲା । କଲେଜ ଓ ଛାତ୍ରାବାସ ଅନିର୍ଦ୍ଦିଷ୍ଟ ଦିନ ପାଇଁ ବନ୍ଦ ହୋଇଯାଇଥିଲା । ସେହି ଛାତ୍ରମାନେ ନିଜ ନିଜ ଅଞ୍ଚଳକୁ ଯାଇ, ସେଠାରେ ସ୍ୱାଧୀନତା ଆନ୍ଦୋଳନର ନେତୃତ୍ୱ ନେଇଥିଲେ । ସେହିପରି ନିମାପଡ଼ାର ଦୁଇ ଜଣ ଛାତ୍ର ଲୋକନାଥ ସେନାପତି (ଭିଲିଗ୍ରାମ) ଓ ଉପେନ୍ଦ୍ର ମହାନ୍ତି (ବିରିତୁଙ୍ଗ) କଟକ ଛାଡ଼ି ରାତିରେ ଭୁବନେଶ୍ୱରରେ ପହଞ୍ଚିଥିଲେ । ସେମାନେ ଭୁବନେଶ୍ୱରର ବିନ୍ଦୁସାଗରଠାରେ ପୋଲିସ ହାବୁଡ଼ରେ ପଡ଼ିଥିଲେ । ପୋଲିସ ସେମାନଙ୍କୁ ସନ୍ଦେହ କରି ଆନ୍ଦୋଳନ ସମ୍ପର୍କରେ କିଛି ପ୍ରଶ୍ନ ପଚାରି ଛାଡ଼ି ଦେଇଥିଲେ । ତତ୍‌ପରେ ସେହି ଦୁଇଜଣଙ୍କର ହଠାତ୍ ସାକ୍ଷାତ ହୋଇଥିଲା ଦୁଇଜଣ ଦେଶପ୍ରେମୀ ସୁରେନ୍ଦ୍ରନାଥ ଦ୍ୱିବେଦୀ ଓ ମାଳତୀ ଚୌଧୁରୀଙ୍କ ସହିତ । ସେମାନଙ୍କ ମଧ୍ୟରେ ଗୁପ୍ତ ସଂଗଠନ ମାଧ୍ୟମରେ ଆନ୍ଦୋଳନ କରିବା ପାଇଁ ଆଲୋଚନା ହୋଇଥିଲା । ସେହି ୪ ଜଣ ଓଡ଼ିଶାର ଲବ୍‌ଧପ୍ରତିଷ୍ଠିତ ରାଜନୀତିଜ୍ଞ ଭୁବନାନନ୍ଦ ଦାସଙ୍କ ଘରେ ରାତ୍ରିଯାପନ କରି ଆନ୍ଦୋଳନ ସମ୍ପର୍କରେ ବିସ୍ତୃତ ଆଲୋଚନା କରିଥିଲେ । ସେଦିନ ରାତିରେ ସେହି ଦୁଇ ଜଣ ନେତାଙ୍କ ଉତ୍ସାହ ଓ ପ୍ରେରଣା ଏହି ଦୁଇ ଜଣ ଛାତ୍ରଙ୍କୁ ଜାତି ଓ ଦେଶର ସେବା କରିବା ପାଇଁ ଆଗ୍ରହ ଜନ୍ମାଇ ଥିଲା । ଦୃଢ଼ ମନୋବଳ ସହ ସେ ଦୁଇଜଣ ଛାତ୍ର ସଂଗ୍ରାମରେ ଝାସ ଦେବାପାଇଁ ପ୍ରତିଜ୍ଞା କରିଥିଲେ । ଦ୍ୱିବେଦୀଙ୍କ ପ୍ରଥମ ସ୍ୱାଧୀନତା ଆନ୍ଦୋଳନର ବାର୍ତ୍ତାବହ ରୂପେ କାର୍ଯ୍ୟ କରିଥିଲେ ଲୋକନାଥ । ତା'ପରଦିନ ପ୍ରତ୍ୟୁଷରୁ ଦ୍ୱିବେଦୀଙ୍କର ଗୁପ୍ତ ବାର୍ତ୍ତାକୁ ରେଳ ଲାଇନ କଡ଼େ କଡ଼େ ପାଦରେ ଚାଲି ଚାଲି ଲୋକନାଥ କଟକର ସୁରଜମଲ୍ଲ ସାହାଙ୍କୁ ଦେଇ ଫେରିଥିଲେ ନିମାପଡ଼ା ଓ ଉପେନ୍ଦ୍ର ନିଜ ଗ୍ରାମକୁ ଯାଇଥିଲେ । ସେହିପରି ମଧ୍ୟ ରେଭେନ୍ସା କଲେଜର ଛାତ୍ର ବ୍ରଜ ମୋହନ ମହାନ୍ତି ତାଙ୍କର ଜନ୍ମସ୍ଥାନ ଗୋପର ବରମୁଣ୍ଡାକୁ ଆସି ସ୍ୱାଧୀନତା ଆନ୍ଦୋଳନରେ ନେତୃତ୍ୱ ନେଇଥିଲେ ।

ବ୍ରଜମୋହନ ମହାନ୍ତି, ଅଲେଖପାତ୍ର ଓ ସୋମନାଥ ପଣ୍ଡା ପ୍ରଭୃତି କେତେଜଣ ସହକର୍ମୀଙ୍କ ସହିତ ଲୋକନାଥ ବାବୁ ମିଶି ନିମାପଡ଼ାର ରାଜନୀତି, ଗ୍ରାମ ସଂଗଠନ ଓ ଛାତ୍ର ସଂଗଠନକୁ ସୁଦୃଢ଼ କରିଥିଲେ । ସେମାନଙ୍କର ପ୍ରେରଣାର ଉତ୍ସ ଥିଲେ ସଂଗ୍ରାମୀ ମୋହନ ଦାଶ । ମୋହନ ବାବୁ ଥିଲେ ସତ୍ୟବାଦୀ ବନବିଦ୍ୟାଳୟର ଛାତ୍ର । ଉତ୍କଳମଣି ଗୋପବନ୍ଧୁ ଦାସ, ପଣ୍ଡିତ ନୀଳକଣ୍ଠ ଦାସ ଓ ନବକୃଷ୍ଣ ଚୌଧୁରୀଙ୍କ ପ୍ରେରଣା ଓ ଉତ୍ସାହରେ ଅନୁପ୍ରାଣିତ ହୋଇ ମୋହନବାବୁ ଏକ ଦକ୍ଷ ସଂଗଠକ ଭାବେ ପ୍ରାଦେଶିକ ସ୍ତରରେ ଖ୍ୟାତି ଅର୍ଜନ କରିଥିଲେ । ତେଣୁ ମୋହନ ବାବୁଙ୍କ ସାଂଗଠନିକ ଦକ୍ଷତା, ନିର୍ଭୀକତା ଓ ସାହସିକତାର ପ୍ରଭାବ ପଡ଼ିଥିଲା କେତେଜଣ ନିମାପଡ଼ାର ସଂଗ୍ରାମୀଙ୍କ ଉପରେ । ତତ୍କାଳୀନ ସମୟରେ ନିମାପଡ଼ାର ଅଗ୍ରଗାମୀ ନେତା ମୋହନ ବାବୁ ଥିଲେ କାରଗାର ଭିତରେ । ସେତେବେଳେ ଯେଉଁ କେତେଜଣ ଯୁବକର୍ମୀ ସକ୍ରୀୟ ଭାବରେ ଅଂଶଗ୍ରହଣ କରିଥିଲେ, ତନ୍ମଧ୍ୟରେ ପଦ୍ମଚରଣ ସାମନ୍ତ ସିଂହାର ଓ ଭବାନୀଚରଣ ପଟ୍ଟନାୟକ ଥିଲେ ଅଗ୍ରଗାମୀ । ଏହି କେତେଜଣ ଅଗ୍ରଗାମୀ କର୍ମୀଙ୍କ ବଳିଷ୍ଠ ନେତୃତ୍ୱ ସାହସିକତା ଓ ବୀରତ୍ୱ ଫଳରେ ନିମାପଡ଼ା ଭିଟାମାଟିରେ ଶହ ଶହ ଉତ୍ସାହୀ କର୍ମୀ ସୃଷ୍ଟି ହେବା ସଂଗେ ସଂଗେ ଆନ୍ଦୋଳନକୁ ସମଗ୍ର ଭାରତବର୍ଷର ଶୀର୍ଷସ୍ଥାନରେ ପହଞ୍ଚାଇ ପାରିଥିଲେ ।

ମଣିଜଙ୍ଗ ଗଡ଼ର ସାଆନ୍ତାଣୀ ସୁଲକ୍ଷଣା ମାଳୀ ଯେମା ନିମାପଡ଼ାର ଶହ ଶହ ଆନ୍ଦୋଳନ ପ୍ରେମୀଙ୍କର ଥିଲେ ସାହାଭରଷା । ତାଙ୍କର ସ୍ନେହ, ଶ୍ରଦ୍ଧା ଓ ସହାନୁଭୂତି ସଂଗ୍ରାମୀମାନଙ୍କୁ ଦେଇଥିଲା ଉତ୍ସାହ ଓ ପ୍ରେରଣା । ଯେଉଁକର୍ମୀ ତାଙ୍କ ଘରେ ପହଞ୍ଚନ୍ତି, ସେମାନଙ୍କୁ ଦରକାର ପଡ଼ିଲେ ପୋଲିସ ଉପଦ୍ରବଠାରୁ ଲୁଚାଇ ରଖନ୍ତି ଓ ଆର୍ଥିକ ସାହାଯ୍ୟ ଦିଅନ୍ତି । ତାଙ୍କରି ଉତ୍ସାହ, ପ୍ରେରଣା ଓ ଆଶୀର୍ବାଦ ବଳରେ ତାଙ୍କର ଜ୍ୟେଷ୍ଠ ପୁତ୍ର ପଦ୍ମଚରଣ ସାମନ୍ତସିଂହାର ହୋଇପାରିଥିଲେ ଏକ ସୁସଂଗଠକ, ନିଷ୍ଠାପର ଦେଶପ୍ରେମୀ ଓ ବୀର ସ୍ୱାଧୀନତା ସଂଗ୍ରାମୀ ।

ଧୀଶକ୍ତି ସମ୍ପନ୍ନ କେତେଜଣ ସକ୍ରୀୟ ସଂଗ୍ରାମୀ ଆନ୍ଦୋଳନକୁ ତୀବ୍ରତର କରାଇବା ପାଇଁ ସମସ୍ତ କର୍ମୀମାନଙ୍କ ସହିତ ଗୁପ୍ତ ଭାବରେ ଯୋଗାଯୋଗ କରି ଏକ ଗୁପ୍ତ ବୈଠକ ଡାକିବା ପାଇଁ ସ୍ଥିର କଲେ । ଏହି ବୈଠକ ୧୯୪୨ ମସିହା ସେପ୍ଟେମ୍ବର ୧୦ ତାରିଖରେ ହଂସପଡ଼ା କେଉଟତୋଟା ମେଲଣ ପଡ଼ିଆଠାରେ ଥିବା କଂଗ୍ରେସ ଆଶ୍ରମରେ ଅନୁଷ୍ଠିତ ହୋଇଥିଲା । ଏହି ସ୍ଥାନ ଥିଲା କର୍ମୀମାନଙ୍କର ଅତୀତରେ ଘଟିଯାଇଥିବା ଚାଷୀ ଆନ୍ଦୋଳନର କେନ୍ଦ୍ରସ୍ଥଳୀ, ଲବଣ ସତ୍ୟାଗ୍ରହ ଓ ଅସହଯୋଗ ଆନ୍ଦୋଳନ ଇତ୍ୟାଦିର ଥିଲା ପୀଠ ଭୂମି । ଆଉ ମଧ୍ୟ ଅତୀତରେ କଟକର ଜମିଦାର ରାଧାପ୍ରସାଦ ଭଗତ୍‌ଙ୍କ ଅତ୍ୟାଚାରକୁ ଦମନ କରିବା ପାଇଁ ଏହି ଅଞ୍ଚଳରୁ ବହୁତ ସଂଗ୍ରାମୀ ଯୋଗ ଦେଇଥିଲେ । ଏହି ଆଶ୍ରମର ପବିତ୍ରତା ସ୍ୱତନ୍ତ୍ର ହୋଇଥିବାରୁ, ଏଠାରେ ହୋଇଥିଲା ଗୁପ୍ତ ବୈଠକ । ଏହି ବୈଠକରେ ନିମାପଡ଼ା ସମେତ ବହୁଗ୍ରାମର ପ୍ରତିନିଧିମାନେ ଯୋଗ ଦେଇଥିଲେ । କେତେଜଣ ଯୁବକର୍ମୀ ଭାରତର ଅନ୍ୟାନ୍ୟ ସ୍ଥାନରେ ହେଉଥିବା ଆନ୍ଦୋଳନକୁ ନଜିର ଦେଇ ବିକଳ୍ପ ପନ୍ଥା ଗ୍ରହଣ କରିବାକୁ ମତପୋଷଣ କରିଥିଲେ । ବିଭିନ୍ନ ପ୍ରକାର ଆଲୋଚନା ପରେ ସର୍ବସମ୍ମତିକ୍ରମେ ଯୁବକର୍ମୀଙ୍କ ମତ ଗୃହୀତ ହୋଇଥିଲା । ସେଥିପାଇଁ ନିମ୍ନରେ ପ୍ରଦତ୍ତ କାର୍ଯ୍ୟପନ୍ଥା ଗ୍ରହଣ କରିବା ପାଇଁ କାର୍ଯ୍ୟସୂଚୀ ଗୃହୀତ ହୋଇଥିଲା । ୧. ସରକାରଙ୍କୁ କର ବା ଖଜଣା ନ ଦେବା, ୨. ଥାନା ଓ ସରକାରୀ କାର୍ଯ୍ୟାଳୟ ଦଖଲ କରିବା, ୩. ପଞ୍ଚାୟତ ଶାସନ ପ୍ରଚଳିତ କରାଇବା, ୪. ଏକ ମରଣ ବାହିନୀ

(ମରଣ ସେନା) ଗଠନ କରିବା, ୫. ନିମାପଡ଼ାକୁ ସବୁ ସଂଯୋଗ ରାସ୍ତା ବନ୍ଦ କରିବା ଓ ୬. ପୋଲିସ ଓ ଅନ୍ୟାନ୍ୟ ସରକାରୀ କର୍ମଚାରୀଙ୍କୁ ଆନ୍ଦୋଳନରେ ସାମିଲ କରାଇବା ।

ଯେଉଁଦିନ ଥାନା ଦଖଲ ଓ ଉଚ୍ଛବ ମଲ୍ଲିକ ଶହୀଦ ହୋଇଥିଲେ, ସେ ଦିନ ଥିଲା ୧୯୪୨ ମସିହା ସେପ୍ଟେମ୍ବର ୧୬ ତାରିଖ, ଷଷ୍ଠୀ ଓଷା, ସଂକ୍ରାନ୍ତି, ବୁଧବାର ଓ ନିମାପଡ଼ା ହାଟ । ଅଗଣିତ ସଂଗ୍ରାମୀ ଦେଶପ୍ରେମୀ ସମେତ ନରନାରୀ, ଯୁବକ ଯୁବତୀ ଓ ଛାତ୍ରମାନଙ୍କ ସମାବେଶରେ ଦିନ ୩ ଘଣ୍ଟିକା ସମୟରେ ନିମାପଡ଼ା ବାରବାଟୀ ପଡ଼ିଆରେ ଏକ ଖୋଲା ବିଶାଳ ସାଧାରଣ ସଭା ଅନୁଷ୍ଠିତ ହୋଇଥିଲା । ପ୍ରାରମ୍ଭରେ ନରହରି ସାହୁ ତ୍ରିରଙ୍ଗ ପତାକା ଉତ୍ତୋଳନ କଲାପରେ ସଂଗ୍ରାମୀ ଲୋକନାଥ ସେନାପତି କିଛି ସ୍ଲୋଗାନ ମାଧ୍ୟମରେ ନିର୍ଦ୍ଦେଶ ଦେଇଥିଲେ ଥାନା ଅଭିମୁଖେ ଯିବା ପାଇଁ । ବଳିଷ୍ଠ ସଂଗଠକ ପଦ୍ମଚରଣ ସାମନ୍ତସିଂହାରଙ୍କ ସମେତ ଅନ୍ୟାନ୍ୟ କର୍ମୀମାନେ ବୀର ଦର୍ପରେ ଅଗ୍ରସର ହୋଇଥିଲେ ଥାନା ଅଭିମୁଖେ । ବିଭିନ୍ନ ଦଳରେ ବିଭକ୍ତ ହୋଇ ଏକ ସମୟରେ ଥାନା, କଚେରୀ, ଡାକବଙ୍ଗଳା ଓ ଡାକଘର ଦଖଲ ପାଇଁ ଜଳର ପ୍ରଖର ସ୍ରୋତ ପରି ଆଗେଇ ଯାଇଥିଲେ ଲଢ଼ୁଆ ଓ ବୀର ସଂଗ୍ରାମୀମାନେ ।

ପୂର୍ବରୁ ଏହାର ସୁରାକ୍ ପାଇ ଥାନା ଅଫିସରବାବୁ ବିଭିନ୍ନ ଗ୍ରାମର ଗ୍ରାମରକ୍ଷୀ ସମେତ ଜିଲ୍ଲାସ୍ତରରୁ କେତେକ ପୋଲିସ ବାହିନୀ ମହଜୁଦ୍ କରି ରଖିଥିଲେ ଥାନା ଭିତରେ । ପ୍ରଥମେ ଥାନା ଫାଟକ ପାଖରେ ବିକ୍ଷୋଭକାରୀଙ୍କୁ ପୋଲିସ ବାହିନୀ ପ୍ରତିରୋଧ କରି ଭିତରକୁ ଛାଡ଼ି ନଥିଲେ । ତତ୍କ୍ଷଣାତ୍ ଥାନା ଅଫିସର ସତୀଶବାବୁ ଓ ରଘୁନାଥ ବାବୁ ଏହି କାର୍ଯ୍ୟରୁ ନିବୃତ୍ତ ରହିବା ପାଇଁ ବୁଝାଇଥିଲେ ବିକ୍ଷୋଭକାରୀଙ୍କୁ । କିଛି ସମୟ ଧରି ଆନ୍ଦୋଳନକାରୀଙ୍କ ସହ ପୋଲିସ ବାବୁଙ୍କର ଚାଲିଥିଲା ବାକ୍ ଯୁଦ୍ଧ । ଆନ୍ଦୋଳନକାରୀମାନେ ଭାରତମାତାର ସନ୍ତାନ ହିସାବରେ ଗଣଆନ୍ଦୋଳନରେ ସାମିଲ୍ ହେବା ପାଇଁ ଅନୁରୋଧ କରିଥିଲେ ପୋଲିସ ବାବୁଙ୍କୁ । ଶହ ଶହ ଉତ୍ତେଜିତ ସଂଗ୍ରାମୀମାନଙ୍କର ଜାତୀୟ ସ୍ଲୋଗାନ ଓ ସଂଗୀତର ସ୍ୱର ମାଧ୍ୟମରେ ଜୀବନକୁ ପାଣି ଛଡ଼ାଇ ପ୍ରଥମେ ଲୋକନାଥ ବାବୁ, ନରହରି ସାହୁ, ଅଲେଖ ପାତ୍ର, ନିତ୍ୟାନନ୍ଦ ଓଝା, ଫକୀରଚରଣ ସ୍ୱାଇଁ, ବୈକୁଣ୍ଠନାଥ ସେନାପତି ଓ ପୂର୍ଣ୍ଣଚନ୍ଦ୍ର ସାହୁ ଥାନା ଭିତରେ ଧସେଇ ପଶିଥିଲେ । ପୋଲିସ୍ ବାହିନୀ ସେମାନଙ୍କୁ ଠେଙ୍ଗା ଓ ବନ୍ଧୁକ ପଛରେ ଠେଲି ଠେଲି ହାଜତ ଭିତରେ ପୂରାଇ ଦେଇଥିଲେ । ଆରମ୍ଭ ହୋଇଯାଇଥିଲା ସେମାନଙ୍କ ଉପରେ ତୁହାକୁ ତୁହା ଗୋଇଠା ଓ ଲାଠିପ୍ରହାରର ମାଡ଼ । ଆଉ ମଧ୍ୟ ଫାଙ୍କା ଗୁଳି କରି ଭୟଭୀତ କରାଇ ଦେଇଥିଲେ ସଂଗ୍ରାମୀମାନଙ୍କୁ । ତତ୍ପରେ ଭବାନୀଚରଣ ପଟ୍ଟନାୟକ, ଚକ୍ରଧରପାତ୍ର ଇତ୍ୟାଦି ବିପ୍ଳବୀ ଯୋଦ୍ଧା ସଂଗ୍ରାମୀମାନଙ୍କୁ ଏକାଠି କରାଇ ଥାନା ଆଡ଼କୁ ଯିବାପାଇଁ ନିର୍ଦ୍ଦେଶ ଦେଇଥିଲେ । ସଂଗ୍ରାମୀମାନଙ୍କ ଭିତରେ ଉତ୍ତେଜନାର ବାତାବରଣ ସୃଷ୍ଟି କରିଥିଲେ । ପୁନରାୟ ଭବାନୀବାବୁ ଓ ପଦ୍ମଚରଣ ବାବୁଙ୍କ ନେତୃତ୍ୱରେ ପୋଲିସ ଅଫିସରଙ୍କୁ ଘେରାଉ କରିଥିଲେ । କିଛି ସମୟ ପାଇଁ ସେଠାରେ ଚାଲିଥିଲା ଠେଲାଠେଲି ଓ ପେଲାପେଲି ଉଭୟଙ୍କ ମଧ୍ୟରେ । ଆଉମଧ୍ୟ ଥାନା ପ୍ରାଙ୍ଗଣଟି ହୋଇଯାଇଥିଲା ଏକ ରଣାଙ୍ଗନର କ୍ଷେତ୍ର ଓ ବିପଜ୍ଜନକ ପରିବେଶ ।

ଶହ ଶହ ଉତ୍ୟକ୍ତ ବିକ୍ଷୋଭକାରୀଙ୍କ ବିକ୍ଷୋଭକୁ ଆୟତ୍ତ କରିବା ପାଇଁ ପୋଲିସ ୧୨ ରାଉଣ୍ଡ ଗୁଳି ଚଳାଇ ଥିଲେ । ଚାହୁଁ ଚାହୁଁ କ୍ଷଣକମଧ୍ୟରେ ସମ୍ମୁଖରେ ଥିବା ସଂଗ୍ରାମୀ ଉଚ୍ଛବ ମଲ୍ଲିକ ୫୨ ବର୍ଷ ବୟସରେ (ଗ୍ରାମ: ଡିହବାରୀ) ଗୁଳିର ଆଘାତରେ ସେଠାରେ ଟଳି ପଡ଼ିଥିଲେ ଚିରଦିନ ପାଇଁ । ନିଜର ସ୍ୱାର୍ଥରୁ ଊର୍ଦ୍ଧ୍ୱରେ ରହି ଦେଶ ଓ ଜାତି ପାଇଁ ପ୍ରାଣବଳୀ ଦେଇ ଚିରଦିନ ଅମର ହୋଇ ରହିଗଲେ ଶହୀଦ ଉଚ୍ଛବ ମଲ୍ଲିକ । ଆଉ ମଧ୍ୟ ନିମାପଡ଼ାର ସ୍ୱାଧୀନତା ଆନ୍ଦୋଳନ ଭାରତ ଇତିହାସରେ ଏକ ସ୍ୱତନ୍ତ୍ର ଭାବେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଗଲା । ଏହି ଗୁଳିମାଡ଼ରେ ପ୍ରାୟ ୨୭ ଜଣ ଆହତ ହୋଇଥିଲେ । ସନ୍ଧ୍ୟା ହୋଇ ଆସୁଥିବାରୁ କ୍ରମଶଃ ଲୋକସଂଖ୍ୟା କମିଗଲେ । ଶହୀଦ ମଲ୍ଲିକଙ୍କ ପୁଅ ଗଜେନ୍ଦ୍ର ମଲ୍ଲିକ ସମେତ ୪୩ ଜଣ ବିଭିନ୍ନ ଦଫାରେ ଓ ବିଭିନ୍ନ ସମୟରେ ଗିରଫ ହୋଇ ପୁରୀ ଜେଲ୍‌ରେ ରହିଥିଲେ ।

ଏହାପରେ ନିମାପଡ଼ା, ମଣିଜଙ୍ଗ, ହଂସପଡ଼ା, ଚଅଁରପଦା, ରଟିଲୋ ଇତ୍ୟାଦି ଗ୍ରାମ ଉପରେ ପୋଲିସ୍‌ର ଚାଲିଲା ଦମନଲୀଳା ଓ ଅମାନୁଷିକ ଅତ୍ୟାଚାର । ବିଭିନ୍ନ ଆଳ ମାଧ୍ୟମରେ ଆର୍ଥିକ ଦଣ୍ଡ ସହିତ ମାନସିକ, ସାମାଜିକ ଦଣ୍ଡ ଗ୍ରାମବାସୀଙ୍କୁ ଦେଉଥିଲେ । ଜେଲ୍‌ରେ ଥିବା ଆନ୍ଦୋଳନକାରୀଙ୍କ ବିରୁଦ୍ଧରେ ବିଭିନ୍ନ ଦଫାରେ କେସ୍ ରୁଜୁ ହୋଇଥିଲା । ଏହି ୪୩ ଜଣ ବନ୍ଦୀ ଜେଲ ଭିତରେ ଥିବାବେଳେ ମଧ୍ୟ ସରକାରଙ୍କ ବିରୁଦ୍ଧରେ ଯୁଦ୍ଧର ଡାକରା ଦେଉଥିଲେ । ଜେଲ୍ କର୍ମଚାରୀଙ୍କ କାର୍ଯ୍ୟ ଉପରେ ଅସହଯୋଗ କରୁଥିଲେ । ଏପରିକି ଜେଲ୍‌ରୁ ବିଚାର ପାଇଁ କଚେରୀକୁ ଆସିବା ବାଟରେ ଓ ନ୍ୟାୟାଳୟରେ ହାକିମଙ୍କ ପାଖରେ ଉପସ୍ଥିତ ଥିବା ସମୟରେ ହାକିମଙ୍କ ପ୍ରଶ୍ନର ଉତ୍ତର ନଦେଇ ଏକସ୍ୱରରେ ଦେଶାତ୍ମକ ଗୀତ ଓ ସ୍ଲୋଗାନମାନ ଦେଇ ବିଚାରରେ ବାଧା ସୃଷ୍ଟି କରାଉଥିଲେ । ଫଳରେ ଉପସ୍ଥିତ ଥିବା ଜନତା ଉତ୍ତେଜିତ ହୋଇ ବନ୍ଦୀମାନଙ୍କୁ ସମର୍ଥନ କରୁଥିଲେ । ଶେଷରେ ଗଣ୍ଡଗୋଳ ଦଫାରେ ପାଞ୍ଚ ମାସ ଓ ଅନ୍ୟାନ୍ୟ ଦଫାରେ ଏକ ବର୍ଷରୁ ତିନି ବର୍ଷ ମଧ୍ୟରେ ଜେଲ ଦଣ୍ଡ ଭୋଗି ଖଲାସ ହୋଇଥିଲେ ।

ନବକୃଷ୍ଣ ଚୌଧୁରୀଙ୍କ ଇଙ୍ଗିତରେ ଓ ପଦ୍ମଚରଣ ସାମନ୍ତସିଂହାର, ଭଗବାନ ପ୍ରତିହାରୀଙ୍କ ସାହାଯ୍ୟରେ ୧୯୪୩ ମସିହା ଜାନୁଆରୀ ୨୫ ତାରିଖରେ ବନ୍ଦୀ ଲୋକନାଥ ସେନାପତି ଓ ଅଲେଖ ପାତ୍ର ଜେଲ ପ୍ରାଚୀର ଡେଇଁ ଖସି ପଳାଇ ଯାଇଥିଲେ । ଲୋକନାଥବାବୁ ଛଦ୍ମବେଶରେ ଉତ୍ତର ବାଲେଶ୍ୱରର ଭୋଗରାଇ, ଜଳେଶ୍ୱର,

ବାଲିଆପାଳ ଅଞ୍ଚଳରେ ସ୍ୱାଧୀନତା ସଂଗ୍ରାମରେ ନେତୃତ୍ୱ ନେଇଥିଲେ । ପୁନରାୟ ୨୮.୮.୧୯୪୩ରେ ଗିରଫ ହୋଇଥିଲେ ଓ ତା.୨୫.୪.୧୯୪୬ରେ ଖଲାସ ହୋଇଥିଲେ । ସେହିପରି ଅଲେଖ ବାବୁ ୧୯୪୩ରେ ଗାନ୍ଧିଜୀଙ୍କ ଆମରଣ ଅନଶନରେ ଗୁପ୍ତ ଭାବରେ ଯୋଗଦେବା ପାଇଁ ପୁରୀ ଜେଲ୍‌ରେ ଥିବା ନବକୃଷ୍ଣ ଚୌଧୁରୀଙ୍କ ପରାମର୍ଶ ନେବାପାଇଁ ଆସି ଧରା ପଡ଼ିଥିଲେ ଓ ୧୯୪୬ ମସିହା ଫେବୃଆରୀ ମାସରେ ଖଲାସ ହୋଇଥିଲେ ।

ଏହି ମହାନ ଐତିହାସିକ ଓ ବୈପ୍ଳବିକ ଘଟଣାକୁ ସ୍ମରଣ କରିବା ଅବସରରେ ଯେଉଁ କେତେଜଣ ତ୍ୟାଗପୂତ ସଂଗ୍ରାମୀମାନେ ନିମାପଡ଼ାରେ ବିଭିନ୍ନ ପର୍ଯ୍ୟାୟରେ ସ୍ୱାଧୀନତା ଆନ୍ଦୋଳନରେ ଅଂଶ ଗ୍ରହଣକରି କାରାବରଣ କରିଥିଲେ, ସେମାନଙ୍କ ମଧ୍ୟରୁ କେତେଜଣଙ୍କ ନାମ ନିମ୍ନରେ ପ୍ରଦତ୍ତ ହୋଇଅଛି । ଶହୀଦ ଉଚ୍ଛବ ମଲ୍ଲିକ, ମୋହନ ଦାଶ, ଲୋକନାଥ ସେନାପତି, ଭବାନୀଚରଣ ପଟ୍ଟନାୟକ, ପଦ୍ମଚରଣ ସାମନ୍ତସିଂହାର, ବୈକୁଣ୍ଠନାଥ ସେନାପତି, ପୂର୍ଣ୍ଣଚନ୍ଦ୍ର ସାହୁ, ଘନ ଦାଶ, ଚକ୍ରଧର ପାତ୍ର, ନରହରି ସାହୁ, କୃଷ୍ଣ ବେହେରା, ଲକ୍ଷ୍ମଣ ବାରିକ, ମହେଶ୍ୱର ମହାନ୍ତି, ପ୍ରହଲ୍ଲାଦ ସାହୁ, ବାଞ୍ଛାନିଧି ସିଠ, ଯଦୁମଣି ପରିଡ଼ା, ଯାଦବ ବିଶ୍ୱାଳ, ଦୀନବନ୍ଧୁ ଭୁତି, କୁଞ୍ଜ ସେନାପତି, ଅଲେଖ ପାତ୍ର, ଯଦୁମଣି ମିଶ୍ର, ସୋମନାଥ ପଣ୍ଡା, ଗଜେନ୍ଦ୍ର ମଲ୍ଲିକ, ଫକୀର ଚରଣ ସ୍ୱାଇଁ, ଫକୀର ଚରଣ ସାହୁ, ଭଜନି ବେହେରା, ନିତ୍ୟାନନ୍ଦ ଓଝା, ପିତବାସ ସାହୁ, ଧନେଶ୍ୱର ସାହୁ, ଭୁବନାନନ୍ଦ ମହାନ୍ତି, ଚୈତନ୍ୟ ରାଉତ, ଲକ୍ଷ୍ମଣ ସ୍ୱାଇଁ, ସନମଲ୍ଲିକ, ସଦେଇ ମହାନ୍ତି, ପରମାନନ୍ଦ ସ୍ୱାଇଁ, ନରୋତ୍ତମ ସେଠି, ଲକ୍ଷ୍ମୀଧର ମହାପାତ୍ର, କେଶବ ଭୋଇ, କୃଷ୍ଣନାୟକ, ଅଭିରାମ ମହାନ୍ତି, ନୀଳମଣି ଦାସ, ଗୋପୀନାଥ ମୁଦୁଲି, କେଶବ ଭୋଇ, କୁଞ୍ଜବିହାରି ସାହୁ, ଭୋଳି ମିଶ୍ର, ମୁଳି ବେହେରା, ନରସିଂହ ତ୍ରିପାଠୀ, ଗଙ୍ଗାଧର ମହାନ୍ତି ଇତ୍ୟାଦି ଅନ୍ୟତମ ।

ସମଗ୍ର ଭାରତର କୋଣ ଅନୁକୋଣରେ ଘଟି ଯାଇଥିବା ସ୍ୱାଧୀନତା ଆନ୍ଦୋଳନର ଐତିହାସିକ ଘଟଣାବଳୀ ମଧ୍ୟରେ ନିମାପଡ଼ାର ବିଭିନ୍ନ ପର୍ଯ୍ୟାୟ ଆନ୍ଦୋଳନର ପଟ୍ଟାନ୍ତର ନାହିଁ । ୧୯୪୨ ମସିହା ସେପ୍ଟେମ୍ବର ୧୬ ତାରିଖରେ ଏକ ସାମ୍ରାଜ୍ୟବାଦୀ ସରକାରର ବନ୍ଧୁକ ମୁନରେ ଶହୀଦ ହୋଇଥିଲେ ୫୨ ବର୍ଷ ବୟସର ବୃଦ୍ଧ ଉଚ୍ଛବ ମଲ୍ଲିକ ଥାନା ସନ୍ନିକଟ ନିମାପଡ଼ା ଭିଟାମାଟି ଉପରେ । ତେଣୁ ଶହୀଦ ଉଚ୍ଛବ ମଲ୍ଲିକ ଏକ ଯୁଗ ସୃଷ୍ଟିକରି ଗଲେ ନିମାପଡ଼ା ତଥା ଭାରତ ଇତିହାସରେ । ତାଙ୍କରି ସେହି ଅମ୍ଳାନ ସ୍ମୃତି ଚିରଦିନ ପାଇଁ ଅମର ହୋଇ ରହିଗଲା ଭାରତ ବକ୍ଷରେ । ଯେଉଁ ମହାନ ଦେଶପ୍ରେମୀ ତଥା ବୀର ଓ ଲଢୁଆ ସଂଗ୍ରାମୀମାନେ ତାଙ୍କର ବହୁମୂଲ୍ୟ ସମୟ ଉତ୍ସର୍ଗ କରିଥିଲେ ଓ ଜୀବନକୁ ପାଣି ଛଡ଼ାଇ ଦେଶ ମାତୃକାର ସେବା କାର୍ଯ୍ୟ କରି ଦେଶ ସ୍ୱାଧୀନ କରିପାରିଥିଲେ, ସେମାନଙ୍କ ପାଖରେ ଆଜିର ଜନସମାଜ ଚିର ଋଣୀ । ସେମାନଙ୍କର ଆଶା ଓ ଆକାଂକ୍ଷାକୁ ସାକାର କରିବା ଅର୍ଥାତ୍ ଗାନ୍ଧିଜୀଙ୍କ ରାମରାଜ୍ୟ ପ୍ରତିଷ୍ଠା କରିବା ହେଉଛି ଆଜିର ଯୁବସମାଜ ଓ ଭବିଷ୍ୟତ ନାଗରିକମାନଙ୍କର ପ୍ରଧାନ କର୍ତ୍ତବ୍ୟ ।

ଘ.ନଂ.- ଟୁ.ଆର୍.ଏ.- ୩୫/୭
ଆଠ ନମ୍ବର, ଭୁବନେଶ୍ୱର



ବାତ୍ୟା ଆଶ୍ରୟସ୍ଥଳୀ

# ସ୍ୱାଧୀନତା ସଂଗ୍ରାମୀ ହାରାମଣି କାନୁନ୍‌ଗୋ

କୃଷ୍ଣ ଚନ୍ଦ୍ର ସୁଆର

**ଦେ**ବୀ-କନ୍ଦଳ ଦ୍ୱୀପାଞ୍ଚଳର ଉନ୍ନତି ନିମନ୍ତେ ଯେଉଁମାନଙ୍କର ତ୍ୟାଗ, ନିଷ୍ଠା ଓ ସେବା ଜାତିସ୍ମର ସେମାନଙ୍କ ମଧ୍ୟରେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ତଥା କ୍ରାନ୍ତିକାରୀ ନେତ୍ରୀ ହାରାମଣି କାନୁନ୍‌ଗୋ ଅନ୍ୟତମ ।

କଟକ ଜିଲ୍ଲାର ଗୋବିନ୍ଦପୁର ବିଧାନସଭା ନିର୍ବାଚନ ମଣ୍ଡଳୀ ଅନ୍ତର୍ଗତ ଅଂଚଳର ପ୍ରଥମ ମହିଳା ସ୍ୱାଧୀନତା ସଂଗ୍ରାମୀ ଭାବେ ସେ ଗଣ୍ୟ ହୁଅନ୍ତି । ଏଠାକାର ପୂର୍ବତନ ବିଧାୟକ ତଥା ଜନପ୍ରିୟ ନେତା ସ୍ୱର୍ଗତଃ ମୁରଲୀଧର କାନୁନ୍‌ଗୋ ହେଉଛନ୍ତି ତାଙ୍କ ସ୍ୱାମୀ । ସେ ମଧ୍ୟ ଥିଲେ ପ୍ରଖ୍ୟାତ ସ୍ୱାଧୀନତା ସଂଗ୍ରାମୀ । ତାଙ୍କରି ଆଦର୍ଶରେ ଅନୁପ୍ରାଣିତ ହୋଇ ସେ ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇ ଥିଲେ ।

ସେ ଥିଲେ ଏକାଧାରରେ ସରଳ, ଶାନ୍ତ ଶିଷ୍ଟ ଓ ନମ୍ର ସ୍ୱଭାବର । ମୋଟା ଧଡ଼ିଥିବା ଧଳାଶାଢ଼ୀ ଖଣ୍ଡିଏ ପିନ୍ଧିବାକୁ ସେ ପସନ୍ଦ କରୁଥିଲେ । ଏତଦ୍‌ବ୍ୟତୀତ ଲୋକାଲ ବୋର୍ଡ଼ର ସଦସ୍ୟା, ସୁନ୍ଦର ଗ୍ରାମ ମଧ୍ୟ ଇଂରାଜୀ, କସର୍ଦ୍ଦା ମଧ୍ୟ ଇଂରାଜୀ ବିଦ୍ୟାଳୟ, ଉତ୍ତାରଣ ଉଚ୍ଚ ବିଦ୍ୟାଳୟ ଓ ଗୋବିନ୍ଦପୁର ସ୍ୱାସ୍ଥ୍ୟ କେନ୍ଦ୍ର ଆଦିର ପରିଚାଳନା କମିଟିର ସଭ୍ୟା, କଟକ ଜିଲ୍ଲା ମହିଳା କଂଗ୍ରେସ କମିଟିର ସଭାପତି ସହ ବହୁ ଅନୁଷ୍ଠାନରେ ତାଙ୍କର ସଂପୃକ୍ତି ରହିବା ସହିତ ସମାଜସେବୀ, ସ୍ୱାଧୀନତା ସଂଗ୍ରାମୀ ସର୍ବୋପରି ଧୋୟା ଅଂଚଳର ମା' ଭାବେ ସେ ସମସ୍ତଙ୍କ ନିକଟରେ ପରିଚିତ ଥିଲେ ।

ମୁରଲୀ ବାବୁଙ୍କ ସହ ଦେଶପାଇଁ କାମ କରୁଥିବା ବେଳେ ସେ ଜାତୀୟ ସ୍ତରର ବହୁ ମାନ୍ୟଗଣ୍ୟ ନେତା ଯଥା- ଖାଁ ଅବଦୁଲ ଗଫର୍ ଖାଁ, ଜବାହରଲାଲ ନେହେରୁ ଓ ଲାଲବାହାଦୂର ଶାସ୍ତ୍ରୀଙ୍କ ସଂପର୍କରେ ଆସିଥିଲେ । ଇନ୍ଦିରା ଗାନ୍ଧୀଙ୍କୁ ମଧ୍ୟ ସେ ମାଡ୍ରାସ, ଆବେଦୀ ଆସାମ ଓ କଲିକତା କଂଗ୍ରେସ ଅଧିବେସନରେ ଭେଟି ଥିଲେ । ବିବାହ ପୂର୍ବରୁ ସମାଜସେବା ଓ ସ୍ୱେଚ୍ଛାସେବୀ କାର୍ଯ୍ୟରେ ବକୁଳ ବନ ବିଦ୍ୟାଳୟକୁ ଯାଇ ସେଠାରେ ଜାତିର ପୂଜ୍ୟ ପିତା ମହାତ୍ମା ଗାନ୍ଧୀ ଓ ଗୋପବନ୍ଧୁଙ୍କ ସହ ମିଶି ବିଭିନ୍ନ ଅଂଚଳ ବୁଲି ଦେଖିବା ସାଂଗକୁ ଲୋକମାନଙ୍କ ଅଭାବ ଅସୁବିଧା କଥା ପଚାରି ବୁଝୁଥିଲେ । ସାଂଗଠନିକ କାର୍ଯ୍ୟରେ ସେ ଦିଲ୍ଲୀ ବ୍ୟତୀତ ଭାରତର ଅନ୍ୟାନ୍ୟ ବଡ଼ ବଡ଼ ସ୍ଥାନ ଭ୍ରମଣ କରିଥିଲେ ।

ସ୍ୱର୍ଗତା ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କଠାରୁ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଭାବେ ତାମ୍ରପଦକ ପାଇବା ସହ ସ୍ୱର୍ଗତା ହାରାମଣି କାନୁନ୍‌ଗୋ ବହୁ ରାଜ୍ୟ ଓ ଜିଲ୍ଲାସ୍ତରୀୟ ସମ୍ମାନର ଅଧିକାରୀ ହୋଇଛନ୍ତି ।

ତାଙ୍କର କର୍ମସ୍ଥଳୀ ଥିଲା ଡିମିରି । ପର ମୁହୂର୍ତ୍ତରେ ସେ ସ୍ଥାୟୀ ଭାବରେ ବାବଜାଠାରେ ବସବାସ କରି ରହୁଥିଲେ ।

ଏହି ପ୍ରତିଭା ସଂପନ୍ନାଙ୍କର ଆବିର୍ଭାବ ହୁଏ ୧୯୧୭ ମସିହା ଫେବୃଆରୀ ମାସ ୧୫ ତାରିଖ, ଫଗୁଦଶମୀ, ଗୁରୁବାର ଦିନ ଖୋର୍ଦ୍ଧା ଜିଲ୍ଲା ଅନ୍ତର୍ଗତ ବାଲିପାଟଣା ବ୍ଲକ୍ ଅଧୀନସ୍ଥ ନୂଆଗାଁ (ଅଠାନ୍ତର) ଗ୍ରାମରେ । ସେତେବେଳର ସମାଜର ରକ୍ଷଣଶୀଳତା ଓ ଶିକ୍ଷାର ପ୍ରସାର ଅଭାବରୁ ସେ ମାତ୍ର ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ପାଠ ପଢ଼ିଥିଲେ । ତାଙ୍କ ପିତାଙ୍କ ନାମ ଜୟକୃଷ୍ଣ ମହାନ୍ତି ଓ ମାତାଙ୍କ ନାମ ଥିଲା ସାଧବାଣୀ । ସେ ପିତାମାତାଙ୍କର ଅଲିଅଳ ଝିଅ ଥିଲେ ।

ଯେତେବେଳେ ଜାତିର ପୂଜ୍ୟ ପିତା ମହାତ୍ମା ଗାନ୍ଧୀଙ୍କ ଡାକରା ଆକୁମାରୀ ହିମାଚଳ ଦେଶପ୍ରେମୀଙ୍କୁ ବ୍ରିଟିଶ ଶକ୍ତି ବିରୋଧରେ ଏକଜୁଟ ହେବାର ଆହ୍ୱାନ ଦେଉଥାଏ, ସେହି ସମୟରେ ହାରାମଣି ଡିମିରି ଗ୍ରାମକୁ ବୋହୂ ହୋଇ ଆସିଥିଲେ । ୧୯୩୯ରେ ବୋଧହୁଏ ଏହି ବିବାହ ଉତ୍ସବ ଅତ୍ୟନ୍ତ ନିରାଡ଼ମ୍ବରପୂର୍ଣ୍ଣ ଭାବରେ ସଂପନ୍ନ ହୋଇଥିଲା । ସେତେବେଳେ ଯୁବ ନେତୃତ୍ୱ ନେଇଥାନ୍ତି ମୁରଲୀବାବୁ । ସେ ଥିଲେ ନୀତି ଓ ଆଦର୍ଶବାଦୀ । ତାଙ୍କ ବିବାହର ପ୍ରାୟ ଦେଢ଼ବର୍ଷ ପରେ ତାଙ୍କର ଝିଅଟିଏ ହୋଇଥିଲା, ଆଉ ତା'ର ନାଁ ଥିଲା ସ୍ୱାଧୀନ । ସ୍ୱାଧୀନ ଛୋଟ ଥିଲାବେଳେ ସେ ୧୯୪୨ ମସିହା ଅଗଷ୍ଟ ୯ ଭାରତଛାଡ଼

ଆନ୍ଦୋଳନରେ ଯୋଗ ଦେଇଥିଲେ ଏବଂ ଜଗତସିଂହପୁରର ଗ୍ରାମକୁ ଗ୍ରାମ ଯାଇ ଭାରତଛାଡ଼ ଆନ୍ଦୋଳନର କାର୍ଯ୍ୟକ୍ରମ ପ୍ରଚାର କରିଥିଲେ । ଅସୀମ ଶକ୍ତି ଓ ସାହସର ସହିତ ବ୍ରିଟିଶ ଶକ୍ତି ବିରୋଧରେ ବିଭିନ୍ନ ସଭାସମିତି, ଥାନା ପୋଡ଼ି ତଥା ଅନ୍ୟାନ୍ୟ କାର୍ଯ୍ୟକରି ଅଗଷ୍ଟ ୨୬ ତାରିଖରେ ଗିରଫ ହୋଇ କଟକ ଜେଲରେ ସଶ୍ରମ କାରାଦଣ୍ଡ ଭୋଗ କରିଥିଲେ । ସେ ପ୍ରଥମେ ଜେଲ ଗଲାବେଳେ ତାଙ୍କର ଶ୍ୱଶୁର ଅଚେତ ହୋଇ ପଡ଼ିଥିଲେ ଓ ପରିବାରର ସମସ୍ତେ ଅଧିକ ମର୍ମାହତ ହୋଇଥିଲେ । ତାଙ୍କଠାରୁ କ୍ଷୀର ଖାଉଥିବା ଝିଅ ସ୍ୱାଧୀନକୁ ସେ ଛାଡ଼ିକରି ଯେଉଁଭଳି ଜେଲ ଯାଇ ଉଭୟ ଶାରୀରିକ ଓ ମାନସିକ ଯନ୍ତ୍ରଣା ଭୋଗ କରୁଥିଲେ, ତାହା ସଂଗ୍ରାମୀ ଇତିହାସରେ ବାସ୍ତବରେ ଏକ ଅବିସ୍ମରଣୀୟ ଘଟଣା ବୋଲି ମନେହୁଏ ।

ଜେଲରେ ପ୍ରଥମେ ବିଚାରାଧୀନ ଓ ପରେ ଅଟକବନ୍ଦୀ ଭାବରେ ତାଙ୍କୁ ଦୁଇ ବର୍ଷ ତିନିମାସ ରହିବାକୁ ପଡ଼ିଥିଲା । ଜେଲରେ ତାଙ୍କ ସହ ରମା ଦେବୀ, ମାଳତୀ ଦେବୀ, ଅନ୍ନପୂର୍ଣ୍ଣା ମହାରଣା, ହରିପ୍ରିୟା ଦେବୀ ଓ ସୁନାମଣି ଦେବୀଙ୍କ ସମେତ ବହୁ ମହିଳା ସଂଗ୍ରାମୀ ଥିଲେ । କିନ୍ତୁ ଭାରତଛାଡ଼ ଆନ୍ଦୋଳନରେ ପ୍ରଥମ ମହିଳା ବନ୍ଦୀ ଥିଲେ ରମା ଦେବୀ । ତାଙ୍କ ପରେ ପରେ ଏ ସମସ୍ତ ବନ୍ଦୀ କଟକ ଜେଲର ବାର ନମ୍ବର ଖୁଆଡ଼ିରେ ରହିଥିଲେ । ତାଙ୍କ ସହିତ କେତେ ମାସ କଟକ ଜେଲରେ କଟାଇବା ପରେ ଭୂଦାନ ନେତ୍ରୀ ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା ବ୍ରହ୍ମପୁର ଜେଲକୁ ବଦଳି ହୋଇଥିଲେ । ମୁକ୍ତି ସଂଗ୍ରାମର ସ୍ମୃତି ରୋମନ୍ଥନ କରି ବର୍ଷୀୟାନ ସଂଗ୍ରାମୀ ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା କହନ୍ତି 'ବନ୍ଦୀ ଜୀବନରେ ମୁକ୍ତ ପରିବେଶରୁ ଆସିଥିବା ନୂଆ ବନ୍ଦୀଙ୍କୁ ଖୁଆଡ଼କୁ ଅଣାଯିବା ବେଳେ ନୂଆ ବୋହୂର ମୁହଁ ଦେଖିଲାପରି ଆମେ ଉତ୍ସୁକ ହୋଇଯାଉ । ପ୍ରଥମେ ହିସାବ ହୁଏ ସେ କି କାମ କରି ଏ ପୁରସ୍କାର ପାଇଛନ୍ତି । ତାହା ପରେ ପଚରାପଚରି କରି ବୁଝିବାକୁ ହୁଏ ସେ ଆମର ଭାଉଜ ହେବେ କି ଭଉଣୀ ହେବେ । ଶ୍ରୀମତୀ ହାରାମଣି କାନୁନ୍‌ଗୋ ଆସିଲାରୁ ହିସାବ କରି ଦେଖାଗଲା ଯେହେତୁ ଆମେ ମୁରଲୀବାବୁଙ୍କୁ ବହୁ ବର୍ଷ ଆଗରୁ ଜାଣିଥିଲୁ, ତେଣୁ ସେ ହେବେ ଭାଉଜ ।'

ବହୁ ଦୁଃଖ ଯନ୍ତ୍ରଣାରେ ସେ ଭାଙ୍ଗି ପଡ଼ିଥିଲେ ମଧ୍ୟ ତାଙ୍କ ହସ ହସ ମୁହଁ କେବେ ମଳିନ ପଡ଼ି ନଥିଲା । ଜେଲ ଖାନାରେ ବିଷାଦ ଲାଗୁଥିବା ମୁହୂର୍ତ୍ତଗୁଡ଼ିକୁ କଟାଇବା ପାଇଁ ଅଭିଜ୍ଞ ନେତୃ ସ୍ଥାନୀୟ ବ୍ୟକ୍ତିମାନେ ବନ୍ଦୀମାନଙ୍କୁ ବିଭିନ୍ନ କାର୍ଯ୍ୟରେ ନିୟୋଜିତ କରୁଥିଲେ । ସିଲେଇ କରିବା, ସୂତା କାଟିବା ସାଂଗକୁ ହିନ୍ଦୀ, ଇଂରାଜୀ, ଓଡ଼ିଆ ଭଜନ, ଜଣାଣ ବିଭିନ୍ନ ମହାପୁରୁଷମାନଙ୍କ ଜୀବନୀ ଶିକ୍ଷା ଆଦି ଯେ ଯାହା ଜାଣିଥିଲେ ସେତେବେଳେ ପରସ୍ପରକୁ ପଢ଼ାଇ ଦେଉଥିଲେ । କଟକ ଜେଲର ସେହି ବାର ନମ୍ବର ଖୁଆଡ଼ିରେ ହାରାମଣି ଦେବୀ ରହିଥିଲାବେଳେ ହିନ୍ଦୀ ପଢ଼ିବା ଆରମ୍ଭ କରିଥିଲେ ଓ ତାକୁ ଖୁବ୍ ଶୀଘ୍ର ଆୟତ୍ତ କରିପାରିଥିଲେ ।



ହାରାମଣି ଦେବୀଙ୍କ ମରଣ ଉପରାନ୍ତେ

ସେ କିଛି କାଳ ଚୌଦ୍ୱାର, ଅନୁଗୋଳ ଓ ବ୍ରହ୍ମପୁର ଜେଲ୍‌ରେ ମଧ୍ୟ କାରାବରଣ କରିଥିଲେ । ଜେଲରୁ ମୁକ୍ତି ହେବାପରେ ମଧ୍ୟ ସେ ଗାଁ ଗହଳର ଲୋକଙ୍କ ସହିତ ସଂପର୍କ ରକ୍ଷା କରୁଥିଲେ ଓ ଗ୍ରାମାଞ୍ଚଳର ସମସ୍ୟା ସମାଧାନ ପାଇଁ ଉଦ୍ୟମ କରୁଥିଲେ । (ସେତେବେଳେ ମୁରଲୀବାବୁ ବ୍ରହ୍ମପୁର ଜେଲ୍‌ରେ ଥାଆନ୍ତି) ନିଜ ଝିଅ ତାଙ୍କୁ ଚିହ୍ନପାରି ନଥିଲା । ତତ୍‌ପରେ ପରେ ହାରାମଣି ରମା ଦେବୀଙ୍କ ପରାମର୍ଶକ୍ରମେ ସାକ୍ଷୀଗୋପାଳର କାଦୁଆ ଆଶ୍ରମରେ କିଛିକାଳ ଅବସ୍ଥାନ କରିଥିଲେ । ସେତେବେଳେ କୃପାସିନ୍ଧୁ ହୋତା ଓ ସୁନାମଣି ଦେବୀଙ୍କ ଦ୍ୱାରା ଏହି ଆଶ୍ରମ ପରିଚାଳିତ ହେଉଥିଲା । ବିଶେଷକରି ଏଠାରେ ଜେଲ୍‌ରେ ଥିବା ସ୍ୱାଧୀନତା ସଂଗ୍ରାମୀମାନଙ୍କର ସ୍ତ୍ରୀମାନଙ୍କୁ ଶିକ୍ଷା ଓ ବିଭିନ୍ନ କ୍ଷେତ୍ରରେ ବୈଷୟିକ ତାଲିମ ଦିଆଯାଉଥିଲା । ଆଶ୍ରମ ତରଫରୁ ହାରାମଣିଙ୍କୁ ସୂତାକଟା, ହରିଜନ ସେବା, ରାସ୍ତା ସଫେଇ ଓ ଦୁଃସ୍ଥ ଲୋକମାନଙ୍କ ସ୍ୱାସ୍ଥ୍ୟ ଉନ୍ନତି ନିମନ୍ତେ ସଚେତନତା ସୃଷ୍ଟି କରିବା ବ୍ୟତିରେକେ ସ୍ତ୍ରୀ ଲୋକମାନଙ୍କୁ ତାଲିମ ଦେଉଥିଲେ । ସେଠାରୁ ଫେରି ସେ ଲୋକାଲ ବୋର୍ଡ଼ର ସଦସ୍ୟା ହୋଇଥିଲେ । ତତ୍‌ପରେ ପରେ ହାରାମଣି କଟକ ଜିଲ୍ଲା ମହିଳା କଂଗ୍ରେସ କମିଟିର ସଭାପତି ଦାୟିତ୍ୱ ମଧ୍ୟ ସୂଚାରୁ ରୂପେ ଚଳାଇଥିଲେ ।

ଇତିମଧ୍ୟରେ ମୁରଲୀବାବୁ ଜେଲରୁ ଫେରିଥାନ୍ତି । ବର୍ଷ ବର୍ଷ ଧରି ସ୍ୱାମୀ ସ୍ତ୍ରୀ ଦେଶ ସେବା କାର୍ଯ୍ୟରେ ପୃଥକ୍ ପୃଥକ୍ ଭାବରେ ଜେଲରେ ରହୁଥିବାବେଳେ କିଛି ଦିନ ଏକାଠି ରହିବା ପାଇଁ ମନସ୍ଥ କରିଥିଲେ କିନ୍ତୁ ନିୟତିର ନିର୍ଦ୍ଦେଶ ଥିଲା ଭିନ୍ନ ଧରଣର । ଏହି ସମୟରେ ମୁରଲୀବାବୁଙ୍କୁ ପୁନଶ୍ଚ ଗିରଫ କରାଗଲା । ତାଙ୍କର ଦୋଷ ଥିଲା ପୂର୍ବରୁ ସେ ଖଲାସ ହେବା ସମୟରେ ଥାନା ଭିତରେ ରହି କାର୍ଯ୍ୟ କରିବେ କିନ୍ତୁ ନିର୍ଦ୍ଦେଶ ନମାନି ଥାନା ବାହାରକୁ ଯାଇ ଆଇନ ଅମାନ୍ୟ କରିଥିବାରୁ ତାଙ୍କୁ ପୁରୀ ଜେଲ ଏବଂ ପରେ କଟକ ଜେଲ୍‌କୁ ବଦଳି କରାଯାଇଥିଲା । ଏଣେ ହାରାମଣି ଦେବୀଙ୍କୁ ମାଳତୀ ଦେବୀ ଛୁଆଁ ଅଛୁଆଁ ଭେଦଭାବ ଦୂର କରିବା, ଗ୍ରାମ ସଫେଇ, ସୂତାକଟା ଓ ଛୋଟ ପିଲାଙ୍କ ବିଦ୍ୟାଶିକ୍ଷା ପାଇଁ ଅନୁଗୋଳସ୍ଥିତ ବାଜିରାଉତ ଛାତ୍ରାବାସକୁ ନେଇଗଲେ । ସେଠାରେ ସେ ପ୍ରାୟ ଦୁଇ ବର୍ଷ ରହି ଏ ସମସ୍ତ କାର୍ଯ୍ୟ ସୁରୁଖୁରୁରେ ନିର୍ବାହ

କରିଥିଲେ । ବିଶେଷକରି ଜାତି-ବର୍ଣ୍ଣ-ନିର୍ବିଶେଷରେ ଅସ୍ପୃଶ୍ୟତା ଦୂର କରିବା ପାଇଁ ସେ ଏଠାରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ।

ମୁରଲୀବାବୁଙ୍କ ଆଦର୍ଶକୁ ଆପଣେଇ ନେଇ ସେ ଯେତେବେଳେ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଲେ, ସେତେବେଳେ ତାଙ୍କୁ କମ୍ ଶରବ୍ୟର ଶୀକାର ହେବାକୁ ପଡ଼ି ନଥିଲା । ଯେତେବେଳେ ଗାଁରୁ ଗାଁ ବୁଲି କଂଗ୍ରେସ ସଦସ୍ୟ ସଂଗ୍ରହ କରୁଥିଲେ, ସେତେବେଳେ କେହି କେହି କଂଗ୍ରେସ ସଦସ୍ୟ ଟଙ୍କା ପଇସା ନେଇ ପାରିବାର ପୋଷୁଛି ବୋଲି ଆକ୍ଷେପ କରୁଥିଲେ ମଧ୍ୟ ସେ ଏଥିପ୍ରତି ଆଦୌ ଭ୍ରୂକ୍ଷେପ କରିନଥିଲେ । କାରଣ ଲୋକମାନଙ୍କର ଶିକ୍ଷାଦୀକ୍ଷା ଓ ସଚେତନତା ସେତେବେଳେ ଉନ୍ନତ ନଥିଲା । କେତେକ ଅସହିଷ୍ଣୁ ମଧ୍ୟ ହୋଇ ପଡୁଥିଲେ । ତେଣୁ ସେ ମନପ୍ରାଣ ଦେଇ ସମାଜ କାମରେ ନିମଗ୍ନ ରହୁଥିଲେ । ଲୋକାଲ ବୋର୍ଡ଼ ସଦସ୍ୟା ଥିଲାବେଳେ ସେ ନିଜ ଅଂଚଳରେ କୂଅ, ପୋଖରୀ, ରାସ୍ତାଘାଟ, ବିଦ୍ୟାଳୟ ଆଦି ଉନ୍ନୟନମୂଳକ କାର୍ଯ୍ୟ କରିଥିଲେ ।

ହାରାମଣି ଦେବୀ ଯେଉଁ ନାରୀ ନେତ୍ରୀମାନଙ୍କ ସହ ମିଶି କାର୍ଯ୍ୟ କରୁଥିଲେ, ସେମାନଙ୍କ ମଧ୍ୟରେ ବିମଳା ଦେବୀ, ଅନ୍ନପୂର୍ଣ୍ଣା ମହାରଣା, ଉତ୍ତରା ଚୌଧୁରୀ, ଶଶୀ ଦେବୀ, ସୁଶୀଳା ଦେବୀ, ବେଲ ଦେବୀ, ନିଶାମଣି ଦେବୀ, କ୍ଷୀପ୍ରମଣି ଦେବୀ, ବିଳାସୀ ଦେବୀ ଓ ପ୍ରିୟମ୍ବଦା ଦେବୀ ଅନ୍ୟତମ ।

ଗତ ୨୦୦୩ ଅଗଷ୍ଟ ୯ ତାରିଖ ଦିନ ଭାରତଛାଡ଼ ଆନ୍ଦୋଳନର ସ୍ମାରକୀ ଉପଲକ୍ଷେ ରାଷ୍ଟ୍ରପତିଙ୍କ ଦ୍ୱାରା ସମ୍ବର୍ଦ୍ଧିତ ହେବାକୁ ଯାଇଥିବା ଓଡ଼ିଶାର ଦଶଜଣ ସ୍ୱାଧୀନତା ସଂଗ୍ରାମୀଙ୍କ ମଧ୍ୟରୁ ହାରାମଣି ନୂଆଦିଲ୍ଲୀର ଓଡ଼ିଶା ଭବନଠାରେ ଗତ ତା.୮.୮.୧୯୦୩ ଦିନ ହୃଦଘାତରେ ପରଲୋକ ଗମନ କରିଥିଲେ ।

କ୍ରାନ୍ତିକାରୀ ନେତ୍ରୀ ହାରାମଣିଙ୍କର ଶେଷକୃତ୍ୟ ରାଷ୍ଟ୍ରୀୟ ମର୍ଯ୍ୟାଦା ସହ ଗୋବିନ୍ଦପୁର ନିର୍ବାଚନମଣ୍ଡଳୀ ଅନ୍ତର୍ଗତ ଉତ୍ତାରଣ ପଞ୍ଚାୟତରେ ବାବଜା (ଛିଣ୍ଡାକୂଳ) ଗ୍ରାମ ଶ୍ମଶାନରେ ସଂପନ୍ନ ହୋଇଥିଲା ।

ମୁରଲୀଧରଙ୍କ ବିୟୋଗର ପ୍ରାୟ ବାର ବର୍ଷ ପରେ ହାରାମଣି କାନୁନ୍‌ଗୋଙ୍କ ବିୟୋଗ ହୋଇଥିଲା । ତାଙ୍କ ଅନ୍ତିମ ଜୀବନ ପର୍ଯ୍ୟନ୍ତ ଏ ମାଟି ଓ ଏ ଦେଶକୁ ସେ ଭଲ ପାଇ ଚାଲିଥିଲେ ।

ସେ ଅତ୍ୟନ୍ତ ସ୍ନେହମୟୀ, ସରଳ, ଅକପଟ ଭଲ ପାଇବା ନେଇ ଗାନ୍ଧୀ ଆଦର୍ଶରେ ସମର୍ପିତା ଥିଲେ । ତାଙ୍କ ଭଳି ଗାନ୍ଧୀବାଦୀ ନେତ୍ରୀ, ସ୍ୱାଧୀନତା ସଂଗ୍ରାମୀ, ବୟୋଜ୍ୟେଷ୍ଠା ଆଜି ନାହାନ୍ତି ସତ ହେଲେ ରଖି ଦେଇ ଯାଇଛନ୍ତି ଚିରନ୍ତନ ସ୍ମୃତି ... ଏହି ମହାନ୍ ସଂଗ୍ରାମୀ ଓଡ଼ିଆ ନାରୀର ଗର୍ବ ଓ ଗୌରବ ... ବ୍ରିଟିଶ ପୋଲିସ ଦ୍ୱାରା ବହୁବାର ଗିରଫ ହୋଇ ତିନିବର୍ଷରୁ ଊର୍ଦ୍ଧ୍ୱ ସମୟ ଜେଲ ଦଣ୍ଡ ଭୋଗ କରି ସେ ନାନା ନିର୍ଯ୍ୟାତନା ମଥାପାତି ସହିବା ସାଂଗକୁ ଦେଶର ଘଡ଼ିସନ୍ଧି ମୁହୂର୍ତ୍ତରେ ଯେଉଁଭଳି ସାହସର ସହିତ ଉତ୍ସର୍ଗୀକୃତ ମନୋବଳ ନେଇ ସଂଗ୍ରାମ ଚଳାଇଥିଲେ ତାଙ୍କର ଆଦର୍ଶ, ତ୍ୟାଗ ଓ ଦେଶ ପ୍ରୀତି ଆମର ଧ୍ୟେୟ ହେଉ ।

ଏମ୍.ଆଇ.ଜି.- ୱାନ୍-୪୨/୧
ଚନ୍ଦ୍ରଶେଖରପୁର ହାଉସିଂ ବୋର୍ଡ଼ କଲୋନୀ
ଭୁବନେଶ୍ୱର-୧୬



ମହିଳା ସଶକ୍ତିକରଣ


ମାଧବଚନ୍ଦ୍ର ରାଉତରାୟ

# ସ୍ୱାଧୀନତା ସଂଗ୍ରାମୀ ମାଧବଚନ୍ଦ୍ର ରାଉତରାୟ୍

ବ୍ରଜ ପାଇକରାୟ

ସଂଗ୍ରାମୀ ମାଧବଚନ୍ଦ୍ର ରାଉତରାୟ ଖୋର୍ଦ୍ଧା ଜିଲ୍ଲା ଅନ୍ତର୍ଗତ ବାଘମାରୀ ଗ୍ରାମର ଏକ ସମ୍ଭ୍ରାନ୍ତ ଖଣ୍ଡାୟତ ପରିବାରରେ ୧୯୨୩ ମସିହାରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଥିଲା ଦୀନବନ୍ଧୁ ରାଉତରାୟ । ତୁଳସୀ ଦୁଇପତ୍ରରୁ ବାସିଲା ଭଳି ମାଧବଚନ୍ଦ୍ର ବାଲ୍ୟକାଳରୁ ଅତ୍ୟନ୍ତ ଅମାୟିକ, ମେଧାବୀ ଏବଂ ଶାନ୍ତ ଚରିତ୍ରର ବାଳକ ଥିଲେ । ମାମୁଁ ଘର ଗ୍ରାମରେ ପ୍ରାଥମିକ ଶିକ୍ଷା ଲାଭ କରି ପୁରୁଣା ଭୁବନେଶ୍ୱରସ୍ଥିତ ପ୍ରସିଦ୍ଧ ଭକ୍ତ ମଧୁ ବିଦ୍ୟାପୀଠରୁ ୧୯୪୦ ମସିହାରେ ମାଟ୍ରିକ୍ୟୁଲେସନ ପାଶ୍ କରିବା ପରେ ସେ ଉଚ୍ଚଶିକ୍ଷା ପାଇଁ ପୁରୀର ସାମନ୍ତ ଚନ୍ଦ୍ରଶେଖର କଲେଜରେ ନାଁ ଲେଖାଇଥିଲେ । ପୁରୀରେ କଲେଜଛାତ୍ର ଥିବା ଅବସ୍ଥାରେ ସେ ଗାନ୍ଧିଜୀଙ୍କ ଆହ୍ୱାନରେ ଅନୁପ୍ରାଣିତ ହୋଇ ୧୯୪୨ ମସିହାରେ ସଂଗଠିତ ଭାରତଛାଡ଼ ଆନ୍ଦୋଳନରେ ଝାସ ଦେଇଥିଲେ । ସଂଗ୍ରାମୀ ମାଧବଚନ୍ଦ୍ର ସେହି ସମୟଠାରୁ କଲେଜ ଶିକ୍ଷାରେ ଡୋରି ବାନ୍ଧି ଜନସେବାରେ ନିଜକୁ ନିୟୋଜିତ କରିଥିଲେ । ସ୍ୱାଧୀନତା ସଂଗ୍ରାମୀମାନଙ୍କ ବିରୁଦ୍ଧରେ ବ୍ରିଟିଶ ସରକାରଙ୍କ କଠୋର ଦମନ ନୀତି ପ୍ରୟୋଗର କଡ଼ା ସମାଲୋଚନା କରି ବକ୍ତୃତା ଦେଉଥିବାରୁ ସେ ବ୍ରିଟିଶ ପୋଲିସ୍‌ର ରୋଷ ଦୃଷ୍ଟିରେ ପଡ଼ିଥିଲେ ।

ଭାରତ ସ୍ୱାଧୀନତା ଲାଭ କରିବା ପରେ ୧୯୫୨ ମସିହାରେ ପ୍ରଥମ ସାଧାରଣ ନିର୍ବାଚନରେ ଅଂଶ ଗ୍ରହଣ କରି ସଂଗ୍ରାମୀ ମାଧବଚନ୍ଦ୍ର ଖୋର୍ଦ୍ଧା ନିର୍ବାଚନ ମଣ୍ଡଳୀରୁ ବିଧାୟକ ଭାବେ ନିର୍ବାଚିତ ହେବାର ସୌଭାଗ୍ୟ ଲାଭ କରିଥିଲେ । ୧୯୫୨ ମସିହାରୁ ୧୯୫୭ ମସିହା ପର୍ଯ୍ୟନ୍ତ ଖୋର୍ଦ୍ଧାର ବିଧାୟକ ଭାବେ ସେ ଦକ୍ଷତାର ସହ କାର୍ଯ୍ୟ କରିଥିଲେ । ତାଙ୍କ କାର୍ଯ୍ୟକାଳ ମଧରେ ଖୋର୍ଦ୍ଧା ଅଞ୍ଚଳର ରାସ୍ତାଘାଟ ଓ ପ୍ରାଥମିକ ଶିକ୍ଷାର ଉନ୍ନତି, ନୂତନ ପୋଷ୍ଟ ଅଫିସ ଏବଂ ସ୍ୱାସ୍ଥ୍ୟ କେନ୍ଦ୍ର ସ୍ଥାପନ ପାଇଁ ସେ ବିଶେଷ ଦୃଷ୍ଟି ଦେଇଥିଲେ । ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ସ୍ୱର୍ଗତଃ ନବକୃଷ୍ଣ ଚୌଧୁରୀ, ଡଃ ହରେକୃଷ୍ଣ ମହତାବ, ଡଃ ରାଧାନାଥ ରଥ ଏବଂ କମ୍ୟୁନିଷ୍ଟ ନେତା ସ୍ୱର୍ଗତଃ ଗଙ୍ଗାଧର ପାଇକରାୟଙ୍କ ସହ ତାଙ୍କର ଘନିଷ୍ଠ ସଂପର୍କ ରହିଥିଲା ।

ଭୋଟ ରାଜନୀତି ପ୍ରତି ବୀତସ୍ପୃହ ମାଧବଚନ୍ଦ୍ର କାଳକ୍ରମେ ସକ୍ରୀୟ ରାଜନୀତିରୁ ଦୂରେଇ ଯାଇ ସମାଜସେବା କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ । ନିଜର ଜନ୍ମସ୍ଥାନ ବାଘମାରୀ ଗ୍ରାମରେ ୟୁ:ପି: ସ୍କୁଲର ସେ ପ୍ରତିଷ୍ଠାତା ସଭାପତି ଥିଲେ । ଅଣବନ୍ଦୀ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ରାଜ୍ୟ ଓ କେନ୍ଦ୍ର ସରକାର ସଂଗ୍ରାମୀ ଭତ୍ତା ବା ପେନସନ୍ ପ୍ରଦାନ କରିବା ପାଇଁ ସେ ସରକାରଙ୍କ ନିକଟରେ ଦୃଢ଼ ଦାବୀ ଉପସ୍ଥାପିତ କରିଥିଲେ । ଓଡ଼ିଶା ପ୍ରଦେଶ ସ୍ୱାଧୀନତା ସଂଗ୍ରାମୀ ସେବା ସଂଘର କାର୍ଯ୍ୟକାରୀ ସଭାପତି ଭାବେ ନିର୍ବାଚିତ ହୋଇ ସ୍ୱର୍ଗତଃ ମାଧବଚନ୍ଦ୍ର ସ୍ୱାଧୀନତା ସଂଗ୍ରାମୀମାନଙ୍କ ମଂଗଳ ନିମିତ୍ତ କାର୍ଯ୍ୟ କରୁଥିଲେ । ଓଡ଼ିଶାରେ କୃଷି ଓ କୃଷକର ଉନ୍ନତି ନିମିତ୍ତ 'ଭାରତ କୃଷକ ସମାଜ' ଓଡ଼ିଶା ଶାଖାର ରାଜ୍ୟ ସଂଗଠକ ଭାବେ ସେ ଦୀର୍ଘଦିନ କାର୍ଯ୍ୟ କରିଥିଲେ । ସମାଜରେ ଦଳିତମାନଙ୍କ ନ୍ୟାୟସଂଗତ ଅଧିକାର ହାସଲ ପାଇଁ ଗଠିତ 'ସମାଜ ସଂଯୋଜକ ମଣ୍ଡଳୀ' ଅନୁଷ୍ଠାନ ସହ ସେ ଗଭୀର ଭାବେ ସଂପୃକ୍ତ ଥିଲେ ।

ଏତଦ୍‌ବ୍ୟତୀତ ସେ 'ଉତ୍କଳ ବାହିନୀ' ସଂଗଠନର ଉପସଭାପତି, ଉତ୍କଳ ସମ୍ମିଳନୀର ଆଜୀବନ ସଦସ୍ୟ ଏବଂ ଓଡ଼ିଶା ଖଣ୍ଡାୟତ, କ୍ଷତ୍ରିୟ ମହାସଭାର କର୍ମକର୍ତ୍ତା ଥିଲେ । ସ୍ୱର୍ଗତଃ ମାଧବଚନ୍ଦ୍ର ଖୋର୍ଦ୍ଧା ଅଞ୍ଚଳର ସୁବିଖ୍ୟାତ ତାପଙ୍ଗ ଦଳବେହେରା ବଂଶର ଜାମାତା ଥିଲେ ଏବଂ ନିଜକୁ ଜଣେ ନିଷ୍ଠାପର, ଜନପ୍ରିୟ ଓ ଆଦର୍ଶ ନେତା ଭାବରେ ପ୍ରତିଷ୍ଠିତ କରିପାରିଥିଲେ ।

ସ୍ୱର୍ଗତଃ ମାଧବଚନ୍ଦ୍ର ରାଉତରାୟ ଜାନୁଆରୀ ମାସ ୧୦ ତାରିଖ ୨୦୦୨ ମସିହାରେ ନଶ୍ୱର ଶରୀର ତ୍ୟାଗ କରି ପରଲୋକ ଗମନ କରିଥିଲେ । ସ୍ୱର୍ଗତଃ ରାଉତରାୟ ଏକାଧାରରେ ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ଦକ୍ଷ ଜନନାୟକ, ସମାଜସେବୀ ଏବଂ ଅମାୟିକ ବ୍ୟକ୍ତିତ୍ୱ ଭାବେ ଖୋର୍ଦ୍ଧା ଅଞ୍ଚଳରେ ସୁପରିଚିତ ଥିଲେ ।

ସରକାରୀ ଅଧିବକ୍ତା ଏବଂ ଉପସଭାପତି
ନିଖିଳ ଓଡ଼ିଶା ଆଇନଜୀବୀ ସଂଘ
୩୪୨/ବି, ଜାଗମରା (ବରବାରି)
ଭୁବନେଶ୍ୱର-୩୦



# ବେରବୋଇର ସେବାଶ୍ରମ ଓ ଅଗଷ୍ଟ ବିପ୍ଳବ

ଅଧ୍ୟାପକ ସରୋଜ କୁମାର ପଣ୍ଡା

**ପୁ**ରୀ ଜିଲ୍ଲା ଡେଲାଙ୍ଗ ଥାନା ଅନ୍ତର୍ଗତ ବେରବୋଇ (ବୀରଭୂଇଁ) ଥିଲା ସ୍ୱାଧୀନତା ସଂଗ୍ରାମର ଏକ ଅଜ୍ଞାତ ଦୁର୍ଗ । ୧୯୪୨ ମସିହାର ଭାରତଛାଡ଼ ଆନ୍ଦୋଳନରେ ସଂଶ୍ଳିଷ୍ଟ ହୋଇ ବେରବୋଇର କେତେଜଣ ବିପ୍ଳବୀ ନିଜର ଅବଶିଷ୍ଟ ଜୀବନ ଦେଶମାତୃକାର ମୁକ୍ତି ପାଇଁ ଉତ୍ସର୍ଗ କରିଥିଲେ ।

ବାସ୍ତବରେ କହିବାକୁ ଗଲେ ଡେଲାଙ୍ଗରେ ଜାତୀୟତାବାଦର ସ୍ୱର ୧୮୧୭ ପାଇକ ବିଦ୍ରୋହ ପରଠାରୁ ତୀବ୍ରତର ହୋଇଥିଲା । ଡେଲାଙ୍ଗ ଖୋର୍ଦ୍ଧାର ନିକଟବର୍ତ୍ତୀ ହୋଇଥିବାରୁ ଏବଂ ଖୋର୍ଦ୍ଧାଗଡ଼ ଅଧୀନସ୍ଥ ଅଧିକାଂଶ କ୍ଷୁଦ୍ରଗଡ଼ ଏହି ଅଞ୍ଚଳରେ ଅବସ୍ଥିତ ଥିବାରୁ, ସ୍ଥାନୀୟ ଅଧିକାରୀ ସଦାସର୍ବଦା ବିଦେଶୀ ରାଜତ୍ୱକୁ ବିରୋଧ କରି ଆସୁଥିଲେ । ଏପରିକି ଏହା ପୂର୍ବରୁ ମୋଗଲ ଓ ମରହଟ୍ଟାମାନଙ୍କ ବିରୁଦ୍ଧରେ ଅସ୍ତ୍ରଚାଳନା କରି ସେମାନେ ଜାତୀୟତାବାଦର ପରିଚୟ ଦେଇ ସାରିଥିଲେ ।

୧୯୩୪ ମସିହାରେ ପଣ୍ଡିତ କୃପାସିନ୍ଧୁ ହୋତା ବେରବୋଇକୁ ନିଜର କର୍ମକ୍ଷେତ୍ର ଭାବରେ ବାଛି ନେଇଥିଲେ । ସେଠାରେ ସେବାକୁଟୀର ସ୍ଥାପନ କରି ସେ ସ୍ଥାନୀୟ ଯୁବକମାନଙ୍କୁ ଗାନ୍ଧିଜୀଙ୍କ ଆଦର୍ଶରେ ଅନୁପ୍ରାଣିତ କରାଇ ଭିନ୍ନ ଭିନ୍ନ ଗଠନମୂଳକ କାର୍ଯ୍ୟପନ୍ଥା ଗ୍ରହଣ କରିବାକୁ ପ୍ରବର୍ତ୍ତାଇ ଥିଲେ । ଏଥିରେ ତାଙ୍କର ବିଧବା ଭାଉଜ ସୁନାମଣି ପୂର୍ଣ୍ଣମାତ୍ରାରେ କୃପାସିନ୍ଧୁଙ୍କୁ ସାହାଯ୍ୟ କରିଥିଲେ । ଆଶ୍ରମରେ ସୁନାମଣିଙ୍କ ମୁଖ୍ୟକାର୍ଯ୍ୟ ଥିଲା ସୂତାକାଟି ଲୁଗା ବୁଣିବା ଓ ଅସ୍ପୃଶ୍ୟତା ନିବାରଣ ପାଇଁ କାର୍ଯ୍ୟ କରିବା । ମହାତ୍ମା ଗାନ୍ଧୀ ୧୯୩୮ରେ ବେରବୋଇ ଆସିଥିଲେ । ମାର୍ଚ୍ଚ ୨୫ ତାରିଖରୁ ମାର୍ଚ୍ଚ ୩୧ ତାରିଖ ସାତ ଦିନକାଳ ରହିଥିଲେ ସେଠାରେ । ରହଣୀକାଳ ମଧ୍ୟରେ ଜନତାଙ୍କୁ ଆତ୍ମନିର୍ଭରଶୀଳତା, ସମୟାନୁବର୍ତ୍ତୀତା, ଗୋଷ୍ଠୀକନ୍ଦଳର ମନ୍ଦ ପ୍ରଭାବ ଆଦି ସମ୍ପର୍କରେ ସେ ବୁଝାଇଥିଲେ ।

ଗାନ୍ଧିଜୀଙ୍କ ଅବସ୍ଥାନ ଡେଲାଙ୍ଗରେ ଜାତୀୟତାବାଦ ଆନ୍ଦୋଳନକୁ ଅଧିକ ବ୍ୟାପକ କରିଥିଲା । ୧୯୪୨ରେ ଏହି ଅଞ୍ଚଳର ବିପ୍ଳବୀ ଯୁବକ ବାସୁଦେବ ଗଜେନ୍ଦ୍ର, ନୀଳମଣି ପୁଷ୍ପାଳକ, ବିଶ୍ୱନାଥ ପ୍ରଧାନ, ବାବନ ସ୍ୱାଇଁ, କସ୍ତୁରୀ ଚରଣ ନାୟକ, ରଘୁନାଥ ବାରିକ, ଘନଶ୍ୟାମ ରାଉତ ଓ ରବୀନ୍ଦ୍ରନାଥ ନାୟକ ପ୍ରମୁଖ ଏଥିରେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ । ସେମାନେ ଥିଲେ ଆଖପାଖ ଗ୍ରାମ ଆଙ୍କୋଇ, ବ୍ରାହ୍ମଣ ତରାବୋଇ, ପୁରୁଣା ଡେଲାଙ୍ଗ, ରେଞ୍ଚ ଓ ବେରବୋଇର ଅଧିବାସୀ । ବିଶ୍ୱନାଥ ପାହାଡ଼ ପାଖ ମୋଟରୀ ରେଳପୋଲ ଉପରେ ସେମାନଙ୍କ ମଧ୍ୟରୁ କେତେଜଣ ଟେଲିଫୋନ ତାର କାଟି ଯୋଗାଯୋଗ ବିଚ୍ଛିନ୍ନ କରି ଦେଇଥିଲେ । ଉଦ୍ଦେଶ୍ୟ ଥିଲା, ଇଂରେଜ ଶାସନକୁ ଅସୁବିଧାରେ ପକାଇବା । ସେହିଦିନ ନିକଟସ୍ଥ ଆଙ୍କୋଇ ଗ୍ରାମରେ ସେମାନେ ଏକ ନୈଶ ଭୋଜିରେ ମିଳିତ ହୋଇ ତାର କଟା ପାଇଁ ଯୋଜନା ପ୍ରସ୍ତୁତ କରିଥିଲେ । ଭ୍ରମର ନାୟକ ନାମକ ଜନୈକ ବ୍ୟକ୍ତି କିନ୍ତୁ ବିଶ୍ୱାସ ଘାତକତା କରିଥିଲା । ସେ ସମସ୍ତ ଗୁପ୍ତ ମନ୍ତ୍ରଣା ଇଂରେଜ ଅଫିସରଙ୍କୁ ଜଣାଇ ଦେଇଥିଲା । ତା'ର ବୟାନକୁ ଭିତ୍ତି କରି ପୋଲିସ ରବୀନ୍ଦ୍ର ନାୟକଙ୍କୁ ଗିରଫ କରିଥିଲା । ଅବଶ୍ୟ ପରେ ରବୀନ୍ଦ୍ର ନିଜକୁ ନିର୍ଦ୍ଦୋଷ ପ୍ରମାଣିତ କରିପାରିଥିଲେ । ମାତ୍ର ଅସୁସ୍ଥ ଅବସ୍ଥାରେ ସେ ଶୀଘ୍ର ପ୍ରାଣ ହରାଇଲେ ।

ଘନଶ୍ୟାମ ରାଉତଙ୍କ ବିରୁଦ୍ଧରେ ଗିରଫ ପରଓ୍ୱାନା ଜାରି ହୋଇଥିଲା । ତେଣୁ ସେ ହୋଇଯାଇଥିଲେ ନିରୁଦ୍ଦିଷ୍ଟ । କୌଣସିମତେ ସେ ଚାଲି ଯାଇଥିଲେ କୋରାପୁଟର ଲକ୍ଷ୍ମଣ ନାୟକଙ୍କ କର୍ମଭୂମି ମାଟିଲିକୁ । ସେଠାରେ ଗୈରିକ ବସ୍ତ୍ର ପରିଧାନ କରି ସନ୍ନ୍ୟାସୀ ଭାବରେ ଦିନ କଟାଇଥିଲେ ଓ ଆଦିବାସୀଙ୍କ ଜୀବନ ଶୈଳୀରେ ନିଜକୁ ଅଭ୍ୟସ୍ତ କରାଇ ସ୍ୱାଧୀନତା ଅପେକ୍ଷାରେ ରହିଥିଲେ । ଏଣେ, ବହୁଦିନ ନିଖୋଜ ରହିବାରୁ ଘନଶ୍ୟାମଙ୍କୁ ମୃତ ଭାବି ବେରବୋଇରେ ତାଙ୍କର ପରିବାର ଶୁଦ୍ଧିକ୍ରିୟା ସମାପନ କରି ଦେଇଥିଲେ । ସ୍ୱାଧୀନତା ପରେ ସ୍ୱଗୃହ ପ୍ରତ୍ୟାବର୍ତ୍ତନ କରିଥିଲେ ଘନଶ୍ୟାମ । ଲୋକେ ତା'ପରେ ଜାଣିଥିଲେ ତାଙ୍କର ବିଗତ କୋରାପୁଟ ଅବସ୍ଥାନ ସମ୍ପର୍କରେ । ଏଣିକି ମୁକ୍ତ ଭାରତରେ ସେ ପୁନଶ୍ଚ ଆରମ୍ଭ କଲେ ଗୃହସ୍ଥ ଜୀବନ । ଶୁଣାଯାଏ ଯେ ଆତ୍ମଗୋପନ ସମୟରେ ଧରାପଡ଼ିଥିଲେ ସେ ସମ୍ଭବତଃ ଫାଶୀ ପାଇ ଥାଆନ୍ତେ ।

ଇତ୍ୟବସରରେ ୧୯୪୨ ଅଗଷ୍ଟ ୯ରେ ଇଂରେଜ ସରକାର ବେରବୋଇର ଗାନ୍ଧୀ ସେବା ସଂଘକୁ ବେଆଇନ ଘୋଷଣା କରିଥିଲେ । ଏଥି ସହିତ କାଦୁଆର ଗୋପବନ୍ଧୁ ସେବା ସଦନ ଏବଂ ଜଟଣୀର ପ୍ରାଥମିକ କଂଗ୍ରେସ ସଭାକୁ ମଧ୍ୟ ଅବୈଧ ଘୋଷଣା କରାଯାଇଥିଲା । ବେରବୋଇରେ କୃପାସିନ୍ଧୁ ଏବଂ ତାଙ୍କ ସହ ସୁନାମଣି, ବାସୁଦେବ ଗଜେନ୍ଦ୍ର, କସ୍ତୁରୀ ଚରଣ ନାୟକ, ରଘୁନାଥ ବାରିକ, ପୂର୍ଣ୍ଣଚନ୍ଦ୍ର ବେହେରା ପ୍ରମୁଖ ଗିରଫ ହୋଇଥିଲେ । ସେମାନେ ଗିରଫ ହେବାରେ ବେରବୋଇର ସ୍ୱାଧୀନତା ସଂଗ୍ରାମର ଦୁର୍ଗ ଭୁଷୁଡ଼ି ପଡ଼ିଥିଲା ।

ଇତିହାସ ବିଭାଗ
ଗାଦିବ୍ରହ୍ମ କଲେଜ, ଡେଲାଙ୍ଗ, ପୁରୀ





# ସଂଘର୍ଷର ଇତିହାସ ଓ ଅମର ଶହୀଦ କଷ୍ଟି ଡ଼ାକୁଆ

ବୈକୁଣ୍ଠନାଥ ମହାପାତ୍ର

**ବିଂ**ଶ ଶତାବ୍ଦୀ ଆରମ୍ଭରୁ ୧୯୩୮ ଖ୍ରୀଷ୍ଟାବ୍ଦରେ ସମାଜବାଦୀ ନେତାମାନଙ୍କ ଅଧ୍ୟକ୍ଷତାରେ ନୟାଗଡ଼ ଓ ରଣପୁରରେ ଜାତୀୟ ଆନ୍ଦୋଳନ ତୀବ୍ରତର ହେଲା । ସେସମୟରେ ମଧ ଢେଙ୍କାନାଳ, ଅନୁଗୋଳ, ତାଳଚେରରେ ଏହା ଘଟିଥିଲା । ରାଜାମାନଙ୍କ ଅତ୍ୟାଚାରରୁ ସ୍ୱାଧୀନ ହେବାକୁ ଥିଲା ଏ ପ୍ରଜାମାନଙ୍କ ଆନ୍ଦୋଳନ । ଏହା ପ୍ରଜା ଆନ୍ଦୋଳନ ନାମରେ ଖ୍ୟାତ ଥିଲା । ବିଂଶ ଶତାବ୍ଦୀ ଆରମ୍ଭରେ ଅର୍ଥାତ୍ ୧୯୨୧ ମସିହା କଂଗ୍ରେସ ଅସହଯୋଗ ଆନ୍ଦୋଳନରେ ବହୁକର୍ମୀ ଯୋଗଦେଇ ନୟାଗଡ଼କୁ ରାଜନୈତିକ ମାନଚିତ୍ରରେ ସ୍ଥାନ ଦେଇଥିଲେ । ୧୯୩୧ରୁ ୧୯୩୪ ମସିହା ମଧ୍ୟରେ ଗଡ଼ଜାତ ମିଶ୍ରଣରେ ଏହି ଚାରିଗୋଟି ଗଡ଼ଜାତର ମିଶ୍ରଣ ଥିଲା ଅଭୁତପୂର୍ବ । ସ୍ୱତନ୍ତ୍ର ଓଡ଼ିଶା ଗଠନ କ୍ଷେତ୍ରରେ ନୟାଗଡ଼ର ଆନ୍ଦୋଳନାତ୍ମକ କାର୍ଯ୍ୟ ୧୯୩୯ ମସିହାରେ ଏ ଅଞ୍ଚଳରେ କନ୍ଧମେଳି ହୋଇ ପ୍ରଜାଆନ୍ଦୋଳନ ହେଲା । ଖଣ୍ଡପଡ଼ା, ଦଶପଲ୍ଲା ଓ ରଣପୁରକୁ ସାମିଲ କରି ଏହା ଏକ ଭୟାବହ ରୂପ ନେଲା । ରଣପୁରରେ ପ୍ରଜାମାନେ ଏକ ଶବକୁ ଶଗଡ଼ରେ ପକାଇ ଗ୍ରାମ ପରିକ୍ରମା କରି ଲୋକଙ୍କୁ କହିଲେ ଗୋରା ସାହେବ ମାରିଛନ୍ତି । ଏହା ଶୁଣି ନୟାଗଡ଼ ରାଜାଙ୍କ ପାଖେଥିବା ପଲଟିକାଲ ଏଜେଣ୍ଟ ରଣପୁର ରାଜାଙ୍କ ପାଖକୁ ଗଲା କିନ୍ତୁ ରାଜାଙ୍କ କଥା ନମାନି ଉତ୍ତ୍ୟକ୍ତ ଜନତାଙ୍କ ପାଖକୁ ଏକାକି ମାଡ଼ି ଆସିଲେ । ଫଳରେ ଉତ୍ତ୍ୟକ୍ତ ଜନତାଙ୍କ ଘେରରେ ପଡ଼ି ନିଜକୁ ବଞ୍ଚାଇବାକୁ ଜଣେ ଲୋକର ଦ୍ୱାରସ୍ଥ ହେଲେ । ନିଜ ଅଣ୍ଟାରୁ ପିସ୍ତଲ ବାହାର କରିବା ପୂର୍ବରୁ ସେ ଲୋକ ପଛରୁ କବାଟ ବନ୍ଦ କରି ଦେଲା । ଫଳରେ ଉତ୍ତ୍ୟକ୍ତ ଜନତା ମାଡ଼ି ଯାଇ ବାଉଁଶ ଠେଙ୍ଗାରେ ପିଟି ପିଟି ପଲଟିକାଲ ଏଜେଣ୍ଟ ମେଜର ବେଜଲଗେଟଙ୍କୁ ମାରି ଦେଲେ । ଏହା ଥିଲା ତା.୫.୧.୧୯୩୯ ମସିହା । ତା'ପରେ ବ୍ରିଟିଶ ବାହିନୀ ରଣପୁରକୁ ଜାଳି ଦେବାକୁ କହିବାରୁ ରଣପୁର ରାଜା କହିଲେ - ପ୍ରଥମେ ମୋତେ ମାର ତା'ପରେ ପ୍ରଜାମାନଙ୍କୁ ମାରିବ । ବ୍ରିଟିଶ ବାହିନୀ ନୟାଗଡ଼କୁ ଆସିବା ଶୁଣି ନୟାଗଡ଼ ସୀମାରେ ବତିଶି ପୋଲିଆ ଶଂଖକୁ ଭାଙ୍ଗି ଦିଆଯାଇ ତାଙ୍କ ଗତିପଥକୁ ବନ୍ଦ କରି ଦିଆଗଲା । ଏହି ହତ୍ୟାକାଣ୍ଡରେ ପ୍ରଜାମଣ୍ଡଳ ସମ୍ପାଦକ ରଘୁନାଥ ମହାନ୍ତି ଓ ଦିବାକର ପରିଡ଼ାଙ୍କୁ ମିଥ୍ୟାଭାବରେ ଜଡ଼ିତ କରି ଶାସକବର୍ଗ ବିଚାର କରି ଭାଗଲପୁର ଜେଲ୍‌ରେ ତା.୪.୪.୧୯୪୧ ମସିହାରେ ଫାଶୀ ଦେଇଥିଲେ । ଗାନ୍ଧିଜୀଙ୍କ ଆହ୍ୱାନରେ ଭାରତଛାଡ଼ ଆନ୍ଦୋଳନ ସଂଗଠିତ ହୋଇ କାର୍ଯ୍ୟ କରୁଥିବାବେଳେ ଉତ୍ତ୍ୟକ୍ତ ଜନତାଙ୍କୁ ବ୍ରିଟିଶ ବାହିନୀ ଗୁଳି କରିବାରୁ ଜଣେ ମୃତ୍ୟୁବରଣ କଲେ ଓ କେତେକଙ୍କୁ ଧରି ନେଇଥିଲେ । ଏହି ଆନ୍ଦୋଳନ ତିନିଜଣଙ୍କ ନେତୃତ୍ୱରେ କରାଯାଇଥିବା ଭାବି ତାଙ୍କ ଉପରେ ଅତ୍ୟାଚାର କରାଗଲା । ଏ ଅତ୍ୟାଚାର ଏଭଳି ଥିଲା ଯେ ସେ ତିନିଜଣ ପରବର୍ତ୍ତୀ ସମୟରେ ମୃତ୍ୟୁବରଣ କଲେ । ତା'ପରେ ପରେ ନୟାଗଡ଼ର ନନ୍ଦିପୁର ଗ୍ରାମରେ ପ୍ରଜାମଣ୍ଡଳର କର୍ମୀମାନେ ପ୍ରଥମେ ଏକତ୍ର ହୋଇଥିଲେ । ଉକ୍ତ ସଭାରେ ନୟାଗଡ଼ ଅଞ୍ଚଳ ଗୋଡ଼ିପଡ଼ାର ଶ୍ରୀଧର ଦାଶ ଥିଲେ ଅନ୍ୟତମ ନେତା । ତାଙ୍କୁ ସାହାଯ୍ୟ କରୁଥାନ୍ତି ବାହାଡ଼ାଝୋଲା ଗ୍ରାମର ବାଞ୍ଛାନିଧି ସେନାପତି, ଓଡ଼ଗାଁର ଲକ୍ଷ୍ମଣନନ୍ଦ, ଭାଲିଆ ଡିହର ମୁଲା ଇତ୍ୟାଦି । ଏହି ପ୍ରଜା ଆନ୍ଦୋଳନର ଅନ୍ୟତମ ନେତା ଗୋପପୁର ଗ୍ରାମର ନାରାୟଣ ବେହେରାଙ୍କୁ ଦେଶଦ୍ରୋହୀ ଆଇନ ଓ ଦେଶରକ୍ଷା ଆଇନ ଦ୍ୱାରା ପୂର୍ବରୁ ଧରି ନେଇ ଜେଲ୍‌ରେ ଅଟକ ରଖାଯାଇଥାଏ । ଶ୍ରୀଧର ଦାଶ, ବାଞ୍ଛାନିଧି ସେନାପତି, ନାରାୟଣ ନନ୍ଦ, ଶୁକ୍ର ବେହେରା, ଲକ୍ଷ୍ମଣ ମହାରଣା, କୁବେର ସାହୁ, ଉଦୟନାଥ ପୃଷ୍ଟି ଇତ୍ୟାଦି ୧୯ ଜଣଙ୍କୁ ଗିରଫ କରାଯାଇ ଜେଲ୍‌ରେ ରଖାଗଲା । ଫଳରେ ନୟାଗଡ଼ରେ ଘୋର ଉତ୍ତେଜନା ପ୍ରକାଶ ପାଇଲା । ଏଇ ପ୍ରଜାମଣ୍ଡଳର ନେତାମାନଙ୍କୁ ମୁକ୍ତି କରିବା ପାଇଁ ପ୍ରଜାମାନେ ତତ୍ପର ହୋଇ ଉଠିଲେ । ସର୍ବଶ୍ରୀ ଆନନ୍ଦଚନ୍ଦ୍ର ସ୍ୱାଇଁ, ନାରାୟଣ ଉପାଧ୍ୟାୟ, ସଦାଶିବ ଷଡଙ୍ଗୀ, ପୂର୍ଣ୍ଣଚନ୍ଦ୍ର ମଲିକ ପ୍ରମୁଖଙ୍କ ନେତୃତ୍ୱରେ ପ୍ରଜା ଜାଗରଣ କାର୍ଯ୍ୟ ଚାଲିଲା । ତା.୧୯.୯.୧୯୪୨ରିଖ ଦିନ ଶତାଧିକ ପ୍ରଜା ଗଂଜାମ ଜିଲ୍ଲାର କୁମ୍ଭାପଡ଼ାରେ ଏକ ସଭା କରି ସେମାନଙ୍କ ନେତାମାନଙ୍କୁ ମୁକ୍ତ କରିବା ପାଇଁ ଶପଥ ଦେଲେ ।

୧୯୪୨ ମସିହା ଅକ୍ଟୋବର ୧୦ ତାରିଖ ଦିନ ଅନେକ କର୍ମୀ ନେତା, ଜନତା ନୟାଗଡ଼ର ଗୋଡ଼ିପଡ଼ା ଥାନା ଅନ୍ତର୍ଗତ ମହୁଲିଆଠାରେ ଏକତ୍ରିତ ହୋଇ ବିଚାରାଳୟ, ଥାନା ଓ ଅନ୍ୟାନ୍ୟ ସରକାରୀ ଦପ୍ତର ଓ ରାଜାଙ୍କ ବିଚାର ବିଭାଗକୁ ନିଜ ଅକ୍ତିଆରକୁ ଆଣିବା ପାଇଁ ଶପଥ ନେଲେ । ଏଥିରେ ନୟାଗଡ଼ର ବିଭିନ୍ନ ପ୍ରାନ୍ତରୁ

ପ୍ରଜାମାନେ ସଂଗଠିତ ହୋଇ ରାଜପ୍ରାସାଦ ଅଭିମୁଖେ ଆସିବା ପାଇଁ ସ୍ଥିର ହେଲା । ଏହା ଦୁଇଟି ଦଳରେ ବିଭକ୍ତ ହୋଇ ମାଳ ଅଞ୍ଚଳରୁ ବାହାରିବା ପ୍ରସ୍ତାବ ନିଆଗଲା । ଆନନ୍ଦ ଚନ୍ଦ୍ର ସ୍ୱାଇଁ ବରଗୋଳା ମାଳ ଅଞ୍ଚଳର ଓ ସଦାଶିବ ଷଡଙ୍ଗୀ ଗୋଛାମାଳ ଅଞ୍ଚଳର ଦାୟିତ୍ୱରେ ରହିଲେ । ଗୋଟିଏ ଦଳ ସଡ଼କ ଦେଇ ନୂଆଗାଁ ବାଟେ ନୟାଗଡ଼ ଯିବ ଓ ଅନ୍ୟଟି ମାଳଅଞ୍ଚଳରୁ ବାହାରି ବାହାଡ଼ାଝୋଲା ଦେଇ ମହିପୁର ବାଟେ ନୟାଗଡ଼ରେ ପହଞ୍ଚିବେ । ଏହି ଦୁଇଦଳ ବିଭକ୍ତ ହୋଇ ଓସ୍ତିଆ ମାଳ ଅଞ୍ଚଳ ଜନସାଧାରଣଙ୍କୁ ଏକତ୍ରିତ କରି ନୟାଗଡ଼ଠାରେ ସମବେତ ହେବା ପାଇଁ ମଧ ପ୍ରସ୍ତାବ ଦିଆଗଲା । ଏହାକ୍ରମେ ଓଡ଼ଗାଁ, ବାହାଡ଼ାଝୋଲା, ବାରାବୋଲା ଗ୍ରାମମାନଙ୍କୁ ବ୍ୟାପିଗଲା ।

ନୟାଗଡ଼ ଓ ନୂଆଗାଁ ଦଳକୁ ନେବା ନିମନ୍ତେ ବରବୋଇମାଳ ଅଞ୍ଚଳରେ ଏକ ବଡ଼ସଭା ହେଲା । କଷ୍ଟି ଡାକୁଆ ହେଲେ ଏ ଦଳର ଦଳପତି । ଏଇ କଷ୍ଟିଡାକୁଆଙ୍କ ଘର ନୟାଗଡ଼ ମହିପୁରଠାରୁ ପ୍ରାୟ ୧୦/୧୧ କି.ମି. ଦୂର ଜଙ୍ଗଲ ମାଳ ଅଞ୍ଚଳ ପାହାଡ଼ ପର୍ବତର ପାଦ ଦେଶରେ କୁସବିଡ଼ା ଗ୍ରାମରେ । ସେ ୧୮୯୭ ଖ୍ରୀଷ୍ଟାବ୍ଦରେ ପିତା ଅର୍ଜୁନ ଡାକୁଆ ଓ ମାତା ନାରବାଙ୍କର ଦ୍ୱିତୀୟ ସନ୍ତାନ । ସେହି କଷ୍ଟି ଡାକୁଆ ମହାତ୍ମା ଗାନ୍ଧୀଙ୍କ 'କର ବା ମର' କଥା ସମସ୍ତଙ୍କୁ ଶୁଣାଇ ଅନୁପ୍ରାଣିତ କରିପାରିଥିଲେ । ୧୯୪୨ ମସିହା ଅକ୍ଟୋବର ୯ ତାରିଖରେ ଗୋରା ଶାସନ ଓ ରାଜତନ୍ତ୍ର ଶାସନ ହେବା ପାଇଁ ସମସ୍ତଙ୍କୁ ବୁଝାଇଥିଲେ । ସେଦିନ ଆନନ୍ଦଚନ୍ଦ୍ର ସ୍ୱାଇଁଙ୍କ ନେତୃତ୍ୱରେ ସେଠାକୁ ଆସିଥିବା ପ୍ରଜାମଣ୍ଡଳ କର୍ମୀଙ୍କ ସହ ସ୍ଥାନୀୟ କର୍ମୀମାନେ କଷ୍ଟି ଡାକୁଆଙ୍କ ଆତିଥ୍ୟ ଗ୍ରହଣ କରିଥିଲେ । ପରଦିନ କଷ୍ଟି ଡାକୁଆଙ୍କ ଗ୍ରାମର ବରକୋଳାମାଳ ଅଞ୍ଚଳର ବିପ୍ଳବୀ ଜନତାଙ୍କୁ ଦୁଇ ଭାଗ କରାଯାଇ ଗୋଟିଏ ଦଳର ନେତୃତ୍ୱ ନେଲେ ଆନନ୍ଦଚନ୍ଦ୍ର ସ୍ୱାଇଁ ଓ ଅନ୍ୟଟିର ନେତୃତ୍ୱ ନେଲେ କଣ୍ଡୁରୀ ପରିଡ଼ା । ନୂଆଗାଁ ଥାନାକୁ ଭାଙ୍ଗିବା, ସରକାରୀ କୋଠାବାଡ଼ି ଧ୍ୱଂସ କରିବା ଓ ଏ ଅଞ୍ଚଳରୁ ରାଜତନ୍ତ୍ର ଲୋପ କରିବାକୁ ସେହି ଦିନ ପ୍ରସ୍ତାବ ନିଆଗଲା । ଏ ପଟୁଆରରେ ଅନେକ ଥିଲେ ଆଦିବାସୀ ଓ କନ୍ଧ ସଂପ୍ରଦାୟର ଲୋକ । ଆନନ୍ଦ ସ୍ୱାଇଁଙ୍କ ଦଳ ପ୍ରଥମେ ମାଳ ଅଞ୍ଚଳ ବରକୋଳା ଡାକବଙ୍ଗଳାରେ ପହଞ୍ଚିଲେ । ଡାକବଙ୍ଗଳା କର୍ମଚାରୀ ଓ ୭/୮ ଜଣ ପୋଲିସ ଏମାନଙ୍କ ଡାକ ଶୁଣି ନିଜର ବନ୍ଧୁକ, ଗୁଳିଗୋଳା ଛାଡ଼ି ଜଙ୍ଗଲକୁ ଦୌଡ଼ି ପଳାଇ ଗଲେ । ପରେ ବଙ୍ଗଳାରେ ବିପ୍ଳବୀମାନେ ନିଆଁ ଲଗାଇ ଦେଲେ । ଅନ୍ୟ ଦଳଙ୍କୁ ଧରି ପଟୁଆରରେ ଆସି ମିଳିତ ହେଲେ ବିପ୍ଳବୀ କଷ୍ଟି ଡାକୁଆ । ସେ ହାତରେ ପତାକା ଧରି ଲୋକଙ୍କୁ ଉତ୍ସାହିତ କରୁଥାନ୍ତି । ଏ ସମସ୍ତେ ଥାନା ପାଖରେ ପହଞ୍ଚିଲାପରେ ଥାନାର ଭାରପ୍ରାପ୍ତ ପୋଲିସ ସବ୍-ଇନିସ୍‌ପେକ୍ଟର ବେଣୁଧର ପଟ୍ଟନାୟକ ଶୋଭାଯାତ୍ରାର ଜୟଧ୍ୱନି ଶୁଣି ଓ ତାଙ୍କର ଗତିବିଧି ଲକ୍ଷ୍ୟ କରି ଗୁଳି ଚଳାଇବାକୁ ଆଦେଶ ଦେଲେ । ଏଣେ କଷ୍ଟି ଡାକୁଆଙ୍କ ଦଳ ଆଗକୁ ଆଗକୁ ମାଡ଼ି ଚାଲିଥାନ୍ତି । ଅପରପକ୍ଷରୁ ଶିଖ୍ ମନାଇଙ୍କ ସହ ପୋଲିସ ବାହିନୀ ପହଞ୍ଚିଥାନ୍ତି । ଭାରପ୍ରାପ୍ତ ପୋଲିସ ଅଫିସର, ସବ-ଇନିସ୍‌ପେକ୍ଟର ବେଣୁଧର ପଟ୍ଟନାୟକଙ୍କ ପାଟିରୁ କଥା ନସରୁଣୁ ଲିଙ୍ଗା ନାୟକ ଧଡ଼ପଡ଼ ହୋଇ ଗୁଳି ଚଳାଇଥିଲେ । ସେ ଗୁଳି କଷ୍ଟି ଡାକୁଆଙ୍କ ପେଟରେ ବାଜିଲା । ସେ ପେଟରେ ହାତ ରଖି ଉଚ୍ଚକଣ୍ଠରେ କହି ଉଠିଲେ - ଭାରତ ମାତାକି ଜୟ, ମହାତ୍ମା ଗାନ୍ଧୀ କି ଜୟ । ମୁକ୍ତି ସଂଗ୍ରାମୀ ଜନତାଙ୍କୁ କୌଣସି ସଙ୍କେତ ନଦେଇ ପୋଲିସର ବନ୍ଧୁକରୁ ଗୁଳି ଫୁଟି ଉଠିଲା । ଏଥିରେ କେତେ ଆହତ ହେଲେ । ଆହାତ ଅବସ୍ଥାରେ କ୍ଷେତ୍ରବାସୀ ପରିଡ଼ା, ବାଉରୀବନ୍ଧୁ ପରିଡ଼ା ଓ ମଙ୍ଗୁ ପଳାଇବାରୁ ଅନ୍ୟମାନେ ମଧ୍ୟ ପଳାଇଲେ । ଏକଥା ବେଣୁଧର ପଟ୍ଟନାୟକ ରାଜାଙ୍କୁ ଜଣାଇବାରୁ ରାଜା ବେଣୁଧର ପଟ୍ଟନାୟକଙ୍କୁ ବୀରବର ଉପାଧି ଓ ଲିଙ୍ଗା ନାୟକଙ୍କୁ ଧପଡ଼ ସିଂହ ଉପାଧି ଦେଇଥିଲେ ।

ତିରିଶ ବର୍ଷ ବୟସରେ ବିପ୍ଳବୀ କଷ୍ଟି ଡାକୁଆ ୧୯୪୨ ମସିହା ଅକ୍ଟୋବର ୧୦ ତାରିଖରେ ଦେଶ ପାଇଁ ପ୍ରାଣବଳୀ ଦେଇ ନୟାଗଡ଼ ଇତିହାସରେ ଏକ ଜ୍ୱଳନ୍ତ ତାରକା ଓ ଅମର ହୋଇ ରହିଛନ୍ତି ।

ପୁରୁଣା ଟାଉନ
ନୟାଗଡ଼



# ସ୍ୱରାଜ୍ୟ ପ୍ରେମୀ ଠାକୁର ଶ୍ରୀ ଅଭିରାମ ପରମହଂସ ଦେବ

ଅଧ୍ୟାପକ ପବିତ୍ର ମୋହନ ବାରିକ

୧୯୦୫ ଖ୍ରୀଷ୍ଟାବ୍ଦରେ ଇଂରେଜ ସାମ୍ରାଜ୍ୟବାଦୀ ସରକାରଙ୍କ ବିରୁଦ୍ଧରେ ଭାରତୀୟ ଜାତୀୟ କଂଗ୍ରେସର ଦ୍ୱିତୀୟ ପର୍ଯ୍ୟାୟ ଲୋମହର୍ଷକାରୀ କାର୍ଯ୍ୟପନ୍ଥା ଇତିହାସରେ ଏକ କାଳଜୟୀ ଅଧ୍ୟାୟ । ଏହି ସମୟରେ ଉଗ୍ରଜାତୀୟବାଦୀ ନେତାମାନଙ୍କର ଭାରତୀୟ ରାଜନୈତିକ ଦୃଶ୍ୟପଟରେ ଆବିର୍ଭାବ ଏକ ଉଲ୍ଲେଖନୀୟ ଐତିହାସିକ ଘଟଣା । ଆବେଦନ, ନିବେଦନ, ଅନୁରୋଧ, ବିନୟ ଓ ପ୍ରାର୍ଥନାର ପନ୍ଥା ପରିହାର କରି ଚରମପନ୍ଥୀମାନେ ବିପ୍ଳବ, ଆନ୍ଦୋଳନ, ଶୋଭାଯାତ୍ରା, ବିଦ୍ରୋହ ଓ ବିକ୍ଷୋଭ ମାଧ୍ୟମରେ ଭାରତୀୟମାନଙ୍କର ନ୍ୟାଯ୍ୟ ଦାବିକୁ ଇଂରେଜମାନଙ୍କଠାରୁ ହାସଲ କରିବାକୁ ଶ୍ରେୟସ୍କର ମନେ କରି ଥିଲେ । ଏହି ଜାତୀୟ ଜାଗରଣ ସମୟରେ ଭାରତୀୟ ଯୁବକମାନଙ୍କ ହୃଦୟରେ ଅଭିନବ ବିପ୍ଳବାତ୍ମକ ମନୋଭାବ ଜାଗ୍ରତ କରିଥିଲା । ନିଜର ଜୀବନକୁ ବିସର୍ଜନ କରିବା ପାଇଁ ଅଦମ୍ୟ ସାହସୀ ଓ ପ୍ରଗାଢ଼ ଦେଶ ଭକ୍ତ ଯୁବକମାନେ କେବେ କୁଣ୍ଠାବୋଧ କରିନଥିଲେ । ୧୯୦୫ ମସିହା ଅକ୍ଟୋବର ୧୬ ତାରିଖ ଦିନ ଲର୍ଡ଼ କର୍ଜନଙ୍କ ଅପରିମାଣଦର୍ଶୀ ତଥା ଅଭିସନ୍ଧିମୂଳକ ପଦକ୍ଷେପ 'ବଙ୍ଗ ବିଭାଜନ' ନିଷ୍ପତ୍ତି କାର୍ଯ୍ୟକାରୀ ହେଲା । ଏହାର ପ୍ରତିବାଦରେ ବଙ୍ଗ ପ୍ରଦେଶ ତଥା ସମଗ୍ର ଦେଶରେ ଏକ ବୃହତ୍ ଆନ୍ଦୋଳନର ସୂତ୍ରପାତ ହୋଇଥିଲା । ବିଦେଶୀ ଦ୍ରବ୍ୟ ବର୍ଜନ ଏହି ଆନ୍ଦୋଳନର ମୂଳମନ୍ତ୍ର ଥିବାରୁ ଏହାକୁ ମଧ୍ୟ ସ୍ୱଦେଶୀ ଆନ୍ଦୋଳନ କୁହାଯାଏ । ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ଇଂରେଜ ସରକାରଙ୍କ ବିରୁଦ୍ଧରେ ସଂଘର୍ଷ କରିବାକୁ ଚରମପନ୍ଥୀମାନେ ଜନସାଧାରଣଙ୍କୁ ଆହ୍ୱାନ ଦେଲେ । ଏହି ସମୟରେ ଜାତୀୟ କଂଗ୍ରେସର ନେତୃତ୍ୱ ଚରମବାଦୀ ନେତାମାନଙ୍କ ଦ୍ୱାରା ପରିଚାଳିତ ହେଉଥିଲା । ସେମାନେ ଜନସାଧାରଣଙ୍କ ହୃଦୟରେ 'ସ୍ୱରାଜ'ର ଭାବନା ସୃଷ୍ଟି ପାଇଁ ଅନେକ ବୈପ୍ଳବିକ କାର୍ଯ୍ୟକ୍ରମ ଗ୍ରହଣ କଲେ । ସେହି ସମର ଯୁଗର ଅମର ସନ୍ତାନ ଥିଲେ ଚରମବାଦୀ ନେତା ଚିର ବିପ୍ଳବୀ ପ୍ରଚଣ୍ଡ ଦେଶ ପ୍ରେମୀ, ଲୋକମାନ୍ୟ ବାଳ ଗଙ୍ଗାଧର ତିଳକ । ସେ ଯଥାର୍ଥରେ କହିଥିଲେ 'ଆମର ଜାତିକୁ ଏକ ବୃକ୍ଷ ରୂପେ କଳ୍ପନା କଲେ, ସ୍ୱରାଜ ତା'ର ଗଣ୍ଡି । ବାଳ ଗଙ୍ଗାଧର ତିଳକ ଗର୍ବର ସହିତ କହିଥିଲେ - 'ସ୍ୱରାଜ ଆମର ଜନ୍ମଗତ ଅଧିକାର ଏବଂ ମୁଁ ତାକୁ ହାସଲ କରିବି ।' ସ୍ୱରାଜ୍ୟରେ ଭାରତୀୟ ଜନସାଧାରଣ ସ୍ୱରାଜ ପ୍ରଚଳନ କରିବା ନିମନ୍ତେ ଯେକୌଣସି ବଳିଦାନ କରିବାକୁ ପ୍ରସ୍ତୁତ ରହିବା ପାଇଁ ଚରମପନ୍ଥୀ ନେତାମାନେ ଆବେଦନ କରିଥିଲେ । ସ୍ୱଦେଶୀ ଆନ୍ଦୋଳନ ସମୟରେ ଅନ୍ୟ ଜଣେ ପ୍ରଖ୍ୟାତ ବିପ୍ଳବୀ ଥିଲେ ଅରବିନ୍ଦ ଘୋଷ, ଯେ ପରବର୍ତ୍ତୀ ସମୟରେ ଯୋଗୀ ଶ୍ରୀଅରବିନ୍ଦ ନାମରେ ସୁପରିଚିତ ହେଲେ । ଅରବିନ୍ଦ 'ବନ୍ଦେ ମାତରମ୍' ନାମକ ଏକ ପତ୍ରିକାର ସଂପାଦକ ଥିଲେ । ସେହି ପତ୍ରିକା ନିର୍ଭୀକ ଭାରତୀୟ ଯୁବକମାନଙ୍କୁ ବିପ୍ଳବରେ ଯୋଗଦାନ କରିବାକୁ ଆହ୍ୱାନ ଦେଇ ଆସୁଥିଲା । ଅରବିନ୍ଦ ସେହି ପତ୍ରିକା ମାଧ୍ୟମରେ ଘୋଷଣା କରିଥିଲେ - 'ବଞ୍ଚି ରହିବା ପାଇଁ ଭାରତର ଆବଶ୍ୟକ ହେଉଛି ସ୍ୱରାଜ, ସୁଖମୟ ଓ ଉତ୍ତମ ଜୀବନ ପାଇଁ ଭାରତ ଆବଶ୍ୟକ କରେ ସ୍ୱରାଜ, ବିଶ୍ୱ ପାଇଁ ବଞ୍ଚିବା ପାଇଁ ଭାରତ ଆବଶ୍ୟକ କରେ ସ୍ୱରାଜ ।' ସ୍ୱଦେଶୀ, ସ୍ୱରାଜ୍ୟ ଓ ସ୍ୱରାଜ ଭାବନା ଜନସାଧାରଣଙ୍କ ନିକଟରେ ପହଞ୍ଚାଇବା ପାଇଁ 'ଚରମପନ୍ଥୀ' ନେତାମାନେ ଆପ୍ରାଣ ଉଦ୍ୟମ କରିଥିଲେ । 'ସ୍ୱରାଜ୍ୟ' ଭାବନାକୁ ଅଧିକ ଆକର୍ଷଣୀୟ ଶୈଳୀରେ ଜନମାନସରେ ଦୀନଦରିଦ୍ରର ବନ୍ଧୁ ପଣ୍ଡିତ ଗୋପବନ୍ଧୁ ଦାସ ଉପସ୍ଥାପନ କରିଥିଲେ । ସେ ଏକ ଉତ୍ସର୍ଗୀକୃତ ଓ ସମର୍ପିତ ଭାବର ପରିଚୟ ଦେଇ ଉଲ୍ଲେଖ କରିଥିଲେ -



'ଦେଶର ସ୍ୱରାଜ୍ୟ ପଥେ ଯେତେ ଗାଡ଼
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ।'

ଭାରତୀୟ ମୁକ୍ତିଯୁଦ୍ଧରେ ଯୋଗଦାନ କରିଥିବା ସାଧୁ ଓ ସନ୍ନ୍ୟାସୀମାନଙ୍କ ମଧ୍ୟରେ ଓଡ଼ିଶାର ଠାକୁର ଶ୍ରୀ ଅଭିରାମ ପରମହଂସ ଦେବ ଥିଲେ ଅନ୍ୟତମ । ଆଧ୍ୟାତ୍ମିକ ଓ ଶରୀର ତତ୍ତ୍ୱ ମାଧ୍ୟମରେ 'ସ୍ୱରାଜ୍ୟ' ଶବ୍ଦର ମାର୍ମିକ ବ୍ୟବହାର କରି ମୁକ୍ତି ପ୍ରେମୀ ଜନସାଧାରଣଙ୍କ ହୃଦୟରେ ବୈପ୍ଳବିକ ଝଡ଼ ସୃଷ୍ଟି କରିଥିଲେ । ଯୋଗଜନ୍ମା, ଅବତାରୀ

ପୁରୁଷ ଠାକୁର ଶ୍ରୀ ଅଭିରାମ ପରମହଂସ ଦେବ ଥିଲେ ସ୍ୱାଧୀନତା ସଂଗ୍ରାମୀ । 'କଳି-ଭାଗବତ ନାମକ ଏକ ତତ୍ତ୍ୱ-ଦର୍ଶନ ସମ୍ବଳିତ ପୁସ୍ତକ ରଚନା କରି ଇଂରେଜ ସରକାରଙ୍କର ବିଷ ଦୃଷ୍ଟିରେ ପଡ଼ିଥିଲେ । ଏହି ପୁସ୍ତକର କେତେକ ପଂକ୍ତି ଇଂରେଜ ସରକାରଙ୍କର ବିରୋଧାଚରଣ କରୁଥିବାର ଦର୍ଶାଯାଇ, ଠାକୁର ଶ୍ରୀ ଅଭିରାମ ପରମହଂସ ଦେବଙ୍କୁ କାରାଦଣ୍ଡରେ ଦଣ୍ଡିତ କରାଯାଇଥିଲା । ମୁକ୍ତି ଯୁଦ୍ଧରେ ଜଣେ ନିର୍ଭୀକ ଓଡ଼ିଆ ସଂଗ୍ରାମୀ ସନ୍ନ୍ୟାସୀ ରୂପେ ସେ ଏକ କୀର୍ତ୍ତିମାନ ଅଧ୍ୟାୟ ରଚନା କଲେ । 'କଳି ଭାଗବତ'ରେ ଠାକୁର ଶ୍ରୀ ଅଭିରାମ ପରମହଂସ ଦେବ ବ୍ରହ୍ମଜ୍ଞାନ ଓ ଶରୀର ତତ୍ତ୍ୱ ମାଧ୍ୟମରେ ଅତ୍ୟାଚାରୀ ଇଂରେଜ ସରକାରଙ୍କର ଯେଉଁ ସମାଲୋଚନା କରିଥିଲେ ଏଭଳି ଦୃଷ୍ଟାନ୍ତ ଅନ୍ୟତ୍ର ବିରଳ । ଇଂଲଣ୍ଡର ତତ୍କାଳୀନ ଅହଂକାରୀ ସମ୍ରାଟ ପଞ୍ଚମଜର୍ଜଙ୍କୁ ପଞ୍ଚମନ ଓ ନିଷ୍ଠୁର ଗୋରା ପଲଟନକୁ ପଚିଶ ପ୍ରକୃତି ସହିତ ସେ ତୁଳନା କରିଥିଲେ । ଏମାନେ ଆତ୍ମା ବିବେକ, ସ୍ୱାଧୀନତା ଓ ସ୍ୱରାଜ୍ୟକୁ କଳୁଷିତ କରିଥାନ୍ତି । ତେଣୁ ଠାକୁର କଳି ଭାଗବତରେ ଉଲ୍ଲେଖ କରିଛନ୍ତି -

'ପଞ୍ଚ ମନଟିଯାକୁ କହି । ପଞ୍ଚମ ଜର୍ଜ ଅଟେ ସେହି ।।
ଗୋରା ପଲଟନ ଯାକୁ କହି । ପଚିଶ ପ୍ରକୃତିଟି ଏହି ।।
ଏହି ତ ବିଦେଶୀ ଅଟନ୍ତି । ସ୍ୱରାଜ୍ୟ ଉଜାଡ଼ିଣଦ୍ୟନ୍ତି ।।'

ବରେଣ୍ୟ ସ୍ୱରାଜ୍ୟ ପ୍ରେମୀଭାବେ ଠାକୁର ଶ୍ରୀ ଅଭିରାମ ପରମହଂସ ଦେବ ଖ୍ୟାତ । ତାଙ୍କର ରଚନାବଳୀର ଅନେକ ସ୍ଥାନରେ 'ସ୍ୱରାଜ୍ୟ' ଶବ୍ଦକୁ ନିଗୂଢ଼ ଆଧ୍ୟାତ୍ମିକ ରହସ୍ୟ ଓ ଶରୀର ତତ୍ତ୍ୱ ମାଧ୍ୟମରେ ଉପସ୍ଥାପନା କରିଛନ୍ତି । ଅତ୍ୟାଚାରୀ ଓ ଅହଂକାରୀ ଇଂରେଜ ଶକ୍ତିକୁ ଠାକୁରେ ମ୍ଳେଚ୍ଛ ଓ ଦୈତ୍ୟ ରୂପେ ଅଭିହିତ କରିଛନ୍ତି । ସେମାନଙ୍କୁ ସ୍ୱରାଜ୍ୟରୁ ବିତାଡ଼ିତ କରି ସ୍ୱରାଜ୍ୟର ବିଜୟ ବୈଜୟନ୍ତୀ ବାନା ଉଡ଼ାଇବାକୁ ଆହ୍ୱାନ ଜଣାଇ 'ଚଉତିଷା ମଂଜୁଷା'ରେ ଉଲ୍ଲେଖ କରିଛନ୍ତି -

'ସ୍ୱରାଜ୍ୟ ପତାକା ଉଡ଼ା । ସ୍ୱରାଜ୍ୟ ଅଶ୍ୱକୁ ପିଟ କୋରଡ଼ା ।।
ଲୋ ଚମ୍ପା ଫୁଲ । ମ୍ଳେଚ୍ଛ ଦୈତ୍ୟ ଘର ବୁଡ଼ା ।।'

ପୁନଶ୍ଚ ଠାକୁରେ ବର୍ଣ୍ଣନା କରିଛନ୍ତି - ସମୟ ଆସିବ ବିଦେଶୀ ଇଂରେଜମାନେ ସ୍ୱରାଜ୍ୟ ପରିତ୍ୟାଗ କରିବେ । ଦେଶବାସୀ ନିର୍ଭୟ ଓ ନିରାପଦରେ କାଳାତିପାତ କରିବେ । ଆଧ୍ୟାତ୍ମିକ ଦୃଷ୍ଟିଭଙ୍ଗୀରେ ଠାକୁର ଶ୍ରୀ ଅଭିରାମ ପରମହଂସ ଦେବ କାମ, କ୍ରୋଧ, ଲୋଭ, ମୋହ ଓ ମାୟାକୁ ଅସୁର ସହିତ ତୁଳନା କରିଛନ୍ତି । ଏହି ଅସୁରମାନେ ସ୍ୱରାଜ୍ୟ ରୂପକ ଶରୀରରୁ ବିତାଡ଼ିତ ହେଲେ ସ୍ୱଂୟ ନାରାୟଣ ଶରୀରରେ ବିରାଜମାନ କରିବେ । ଭକ୍ତମାନଙ୍କୁ ଶାନ୍ତି, ଆନନ୍ଦ ଓ ଐଶ୍ୱରୀୟ ଚେତନାରେ ବିମୋହିତ କରିବେ । ତେଣୁ ଠାକୁରେ ବର୍ଣ୍ଣନା କରିଛନ୍ତି -

'ଅଣଆୟତ୍ତ ଆସିଯିବ ପଡ଼ି, ଅସୁରେ ଚଳିବେ ସ୍ୱରାଜ୍ୟେ ଛାଡ଼ି
ଅଭୟ ହୋଇବେ ଭକତେ ମୋର, ଅକଳିତପୁର ଅମରପୁର
ଦିଶୁଥିବ ଅତି ଶୋଭା ଯେ
ଅଭିନ୍ନମୂରତି ଅନନ୍ତ ମୂର୍ତ୍ତିଙ୍କି ଦେଖିକେ ନୋହିବ ଲୋଭା ଯେ ।''

ଠାକୁର ଶ୍ରୀ ଅଭିରାମ ପରମହଂସ ଦେବ ତାଙ୍କ ସ୍ୱରାଜ୍ୟ ପ୍ରୀତିର ପ୍ରକୃତ ପାରାକାଷ୍ଠା ସ୍ୱରଚିତ ପଦ୍ୟାବଳୀରେ ପ୍ରମାଣିତ କରିଛନ୍ତି । ସ୍ୱରାଜ୍ୟ ପ୍ରତି ଶ୍ରଦ୍ଧା, ସମ୍ମାନ ଓ ଆନୁଗତ୍ୟ ପ୍ରଦର୍ଶନ କରି ବିଦେଶୀମାନଙ୍କର ମୂଳୋତ୍ପାଟନ ପାଇଁ ଆହ୍ୱାନ ଜଣାଇଛନ୍ତି । ଯେଉଁମାନେ ପ୍ରକୃତ ସତ୍ୟାଗ୍ରହୀ ଓ ସଂଗ୍ରାମୀ ସମସ୍ତ ପ୍ରତିବନ୍ଧକ ଦୂର କରି ମାତୃଭୂମିର ମମତାକୁ ମହିମାନ୍ୱିତ କରିବେ । ତେଣୁ ଠାକୁରଙ୍କ ଭାଷାରେ -

'ଫୁଲ ଚିହ୍ନି ବସୁ ଥିବ ଭ୍ରମର, ଫକୀର ଗତି ପ୍ରଭୁଙ୍କ ସଙ୍ଗର
ଫିଟୁ ସିଦ୍ଧିରସ୍ତୁ ଚତୁରବାଟ, ସ୍ୱରାଜ୍ୟେ ରସି ବିଦେଶୀଙ୍କୁ କାଟ
ଫମ୍ପା ଧାନ ମୃତ୍ୟୁ ବାଇରେ
ପ୍ରକୃତ ଧାନ ପବନେ ନ ଉଡ଼ିବ ତିନି ଭାଗ ଯିବ ଖାଇରେ ।'

ସତ୍ୟ, ଶାନ୍ତି, ନ୍ୟାୟ, ଆଦର୍ଶ ଓ ମୂଲ୍ୟବୋଧ ପ୍ରଭୃତି ଚିନ୍ତାଧାରାକୁ ଆଧାର କରି ସ୍ୱରାଜ୍ୟ ପ୍ରତିଷ୍ଠିତ । ତେଣୁ ଠାକୁରଙ୍କ ଭାଷାରେ ସ୍ୱରାଜ୍ୟ ସହିତ ସମ୍ପର୍କ ଏକାନ୍ତ ଅପରିହାର୍ଯ୍ୟ । ଦୁଷ୍ଟ ବୁଦ୍ଧି, ଖଳ ପ୍ରକୃତି, ନିଷ୍ଠୁର ଆଚାର, ବିଚାର ଓ ବ୍ୟବହାର ରୂପକ ବିଦେଶୀଙ୍କୁ ପରିତ୍ୟାଗ କଲେ ଜଗତକର୍ତ୍ତା ସ୍ୱୟଂ ଭଗବାନଙ୍କର କରୁଣା ଭିକ୍ଷା କରାଯାଇ ପାରିବ । ତେଣୁ ପ୍ରେମମୟ ଓ ଦିବ୍ୟପୁରୁଷ ଠାକୁର ଶ୍ରୀ ଅଭିରାମ ପରମହଂସ ଦେବ ବର୍ଣ୍ଣନା କରିଛନ୍ତି -

'ସ୍ୱରାଜ୍ୟରେ ରହି ବିଦେଶୀଙ୍କ ସଙ୍ଗ ତେଜି
ସହଜାନନ୍ଦଙ୍କୁ ଦେଖ ଚାହିଁ ନେତ୍ର ବୁଜି ।'

ସ୍ୱରାଜ୍ୟ ସୂତ୍ରରେ ସୃଷ୍ଟିକର୍ତ୍ତା ଆବଦ୍ଧ । ତାଙ୍କର ଲୀଳା ଅସୀମ ଓ ବ୍ୟାପକ । ଭଗବତ ପ୍ରାପ୍ତି ନିମନ୍ତେ ସ୍ୱରାଜ୍ୟ ମାର୍ଗ ଅବଲମ୍ବନ କରିବା ପ୍ରୟୋଜନ । ନିଜସ୍ୱ ବୁଦ୍ଧି, ବିବେକ, ଜ୍ଞାନ, ଅଭିଜ୍ଞତା ଓ ପ୍ରଜ୍ଞାକୁ କେନ୍ଦ୍ର କରି ସ୍ୱରାଜ୍ୟ ଆଧାରିତ । ମାନବଜାତି ସ୍ୱରାଜ୍ୟ ଭାବକୁ ସଫଳ ମାର୍ଗରେ ପ୍ରୟୋଗ କରିପାରିଲେ ଜୀବନ ସାର୍ଥକ ହୋଇପାରିବ । ଠାକୁର ଶ୍ରୀ ଅଭିରାମ ପରମହଂସ ଦେବ ବର୍ଣ୍ଣନା କରିଛନ୍ତି -

'ସ୍ୱରାଜ୍ୟ ସୂତ୍ରରେ ପ୍ରଭୁ ଅଛନ୍ତି
ସକାର ହ-କାର ନାମେ ଖେଳନ୍ତି ।'

ପୁଣ୍ୟ, ନିର୍ମଳ, ପବିତ୍ର, ନିଷ୍କପଟ ଓ ନିରଅହଂକାରୀ ହୃଦୟରେ ଭକ୍ତବତ୍ସଳ ଭଗବାନଙ୍କର ଆସ୍ଥାନ । ଶ୍ରଦ୍ଧାଳୁ ଭକ୍ତମାନଙ୍କର ହିତପାଇଁ ପ୍ରଭୁ ନାନାରଙ୍ଗ ଓ ରୂପରେ ଲୀଳା ଖେଳା ଆରମ୍ଭ କରନ୍ତି । ଘୋର କଳି କାଳ ସମଗ୍ର ବିଶ୍ୱକୁ ଆଚ୍ଛାଦିତ କରିଛି । କଳିର ଅହଂକାରୀ ରାଜତ୍ୱରେ ସମସ୍ତେ ଅସ୍ତ, ବ୍ୟସ୍ତ ଓ ବିବ୍ରତ । ସ୍ୱରାଜ୍ୟ ଘଟରେ ଶାନ୍ତି ଯୁଦ୍ଧରେ ନିମଜ୍ଜିତ ହେବା ପାଇଁ ଠାକୁରେ ସମଗ୍ର ବିଶ୍ୱବାସୀଙ୍କୁ ପରାମର୍ଶ ଦେଇଛନ୍ତି -

'କୋଇଲି ! ଘୋଟିଗଲା ଘୋର କଳି ଆସି
ଘୋଷନ୍ତୁ ସ୍ୱରାଜ୍ୟ ଘଟ ଶାନ୍ତି ଯୁଦ୍ଧେ ରସି, ଲୋ କୋଇଲି
କୋଇଲି ! ସ୍ୱରାଜ୍ୟ ଘଟରେ ପ୍ରଭୁ ଥିବେ
ଭକତଙ୍କ ହିତେ ନାନା ରଙ୍ଗେ ଖେଳୁ ଥିବେ, ଲୋ କୋଇଲି ।'

ସତ୍ୟ, ଶାନ୍ତି, ଦୟା, କ୍ଷମା, ପ୍ରେମ ଓ କରୁଣା ପ୍ରତି ଆଗ୍ରହ ଓ ଆସ୍ଥା ପ୍ରକଟ କରିବା ଆବଶ୍ୟକ । ଏହି ମହନୀୟ ଗୁଣାବଳୀକୁ ନେଇ ସ୍ୱରାଜ୍ୟର କଳେବର ସମୃଦ୍ଧ । ସ୍ୱରାଜ୍ୟରେ ଚିତ୍ତ ବୃତ୍ତି ଦେଇ, ନିଜ ମଧ୍ୟରେ ସ୍ୱରାଜ୍ୟର ଅନ୍ତଃସତ୍ତାକୁ ଆବିଷ୍କାର ଓ ଉପଲବ୍‌ଧି କରିବା ପ୍ରୟୋଜନ । ଅନ୍ୟ ଦୃଷ୍ଟିରେ ଠାକୁରେ ସ୍ୱରାଜ୍ୟ ଶବ୍ଦକୁ ସ୍ୱାଧୀନତା ଆନ୍ଦୋଳନ ପରିପ୍ରେକ୍ଷୀରେ ଉଲ୍ଲେଖ କରିଛନ୍ତି । ନିଜ ରାଜ୍ୟ ତଥା ଦେଶକୁ ଭଲ ପାଇବା ସହିତ ନିଜର ଚିତ୍ତକୁ ଏହାର ମୁକ୍ତି ପାଇଁ ମନ ନିବେଶ କରିବା ଉଚିତ । ଜ୍ଞାନ ରୂପକ କୁଠାରରେ ପରାଧୀନତା ଓ ଅଜ୍ଞାନକୁ ଦୂର କରିବା ଉଚିତ । କଳି ସ୍ୱରୂପ ସାମ୍ରାଜ୍ୟବାଦୀ ଶକ୍ତିର ଦମନ ଓ ସ୍ୱରାଜ୍ୟ ସୂତ୍ରର ଅବଲମ୍ବନ ପାଇଁ ଠାକୁରେ ପରାମର୍ଶ ଦେଇଛନ୍ତି । ତେଣୁ ସେ ବର୍ଣ୍ଣନା କରିଛନ୍ତି -

'କୋଇଲି ଲୋ ! ସ୍ୱରାଜ୍ୟରେ ଚିତ୍ତ ବୃତ୍ତି ଦିଅ
ସ୍ୱରାଜ୍ୟ ବୋଲିଣ ତୋତେ ତୁହି ଜାଣି ଥାଅ
କୋଇଲି ଲୋ, ବଣ କାଟ ଜ୍ଞାନ କୁଠାରରେ
ବସିଣ କଳିକିଦଳ ସ୍ୱରାଜ୍ୟ ସୂତ୍ରରେ ।'

ସ୍ୱାଧୀନତା ଆନ୍ଦୋଳନ ତୀବ୍ର ବେଗରେ ପ୍ରବାହିତ ହେଉଥିବା ସମୟରେ ତାହାର ପ୍ରଭାବ ପରମହଂସ ଦେବଙ୍କ ଉପରେ ପ୍ରତିଫଳିତ ହୋଇଥିଲା । ତେଣୁ ସେ ନିଜ ରଚନାରେ ସ୍ୱରାଜ୍ୟ ଶବ୍ଦକୁ ଆଧ୍ୟାତ୍ମିକ, ଧାର୍ମିକ ଓ ରାଜନୈତିକ ଦୃଷ୍ଟିଭଙ୍ଗୀରେ ଉପସ୍ଥାପନ କରିଥିଲେ । ସ୍ୱରାଜ୍ୟ ଶବ୍ଦର ମାର୍ମିକ ଓ ତାତ୍ତ୍ୱିକ ବ୍ୟାଖ୍ୟା କରି ଠାକୁରେ ନିଜକୁ ଜଣେ ପ୍ରଚଣ୍ଡ ସ୍ୱରାଜ୍ୟ ପ୍ରେମୀର ପରିଚୟ ଦେଇଛନ୍ତି ।

ସନାତନ ହରିଚନ୍ଦନ ମହାବିଦ୍ୟାଳୟ
ମଦନପୁର, ଖୋର୍ଦ୍ଧା - ୭୫୨୦୫୪

---

# ଲିଭି ନାହିଁ ଦୀପ ଲିଭି ନାହିଁ

ବସନ୍ତ କୁମାର ଦେବ

ଧନ୍ୟ ବୀର ପ୍ରସବିନୀ ଜନନୀ ଭାରତ
ତୋ' କୋଳେ ଜନମି ଆମେ ସଭିଏଁ ଗର୍ବିତ,
ଚଉଦିଗ ତୋ ପରଶେ ଭରେ ପୁଷ୍ପ ଫଳେ
ସାଇତି ରଖିଛୁ କେତେ ରତ୍ନ ପାଦ ତଳେ ।।
ତୋ' ବୁକୁର ମନ୍ଦାକିନୀ ନୀର ପାନ କରି
କେତେ ଯେ ଜୀବନ ବଞ୍ଚେ ନହୁଏ ସୁମାରି,
ଘେରିଛନ୍ତି ଗିରିବନ-ସାଗର-ତଟିନୀ
ଅପୂର୍ବ ସେ ନୈସର୍ଗିକ ଶୋଭା ମନ୍ଦ୍ରଧ୍ୱନି ।।
ତୋ' ପାଶେ ଭରିଛି କଳା-ସଂସ୍କୃତି-ସାହିତ୍ୟ
ଯୁଗଯୁଗର ସଭ୍ୟତା ବିସ୍ମିତ ଐତିହ୍ୟ,
ଧନ୍ୟ ତୋ' ସନ୍ତାନ ପ୍ରୀତି ଗଉରବ ଗାଥା
ପୀୟୂଷ ଝରାଏ ତୋ'ର ସ୍ନେହ ଓ ମମତା ।।
ସତ୍ୟ-ଶିବ-ସୁନ୍ଦର ମା' ଭେଦଭାବ ନାହିଁ
ତୋ' କୋଳ ଆମର ପୁଣ୍ୟ ସାଧନାର ଭୂଇଁ,
ଆମେ ହିନ୍ଦୁ, ମୁସଲିମ୍, ଶିଖ, ଖ୍ରୀଷ୍ଟିଆନ
ବୌଦ୍ଧ, ଜୈନ, ପାର୍ଶି ସର୍ବେ ତୋହରି ସନ୍ତାନ ।।
କାଶ୍ମୀରଠୁ କନ୍ୟାକୁମାରୀ ଅଟେ ଆମ ଘର
ବିଶ୍ୱବାସୀ ସର୍ବେ ଆମ ସଖା ସହୋଦର,
ସତ୍ୟ, ଧର୍ମ, ନ୍ୟାୟ, ତ୍ୟାଗ, ଅହିଂସା ମନ୍ତର
ଶିଖାଇଲେ ସେ ମହାତ୍ମା ମୋହନ ଆମର ।।
ଗାଇଥିଲେ ସେ ମହାତ୍ମା ରାମଧୂନ୍ ସ୍ୱନ
କହିଥିଲେ କାଟିପିନ୍ଧ କୁଟିଖାଅ, ଲୋଡ଼ା ନାହିଁ ଧନ



ସ୍ୱରାଜ ଆମର ଜନ୍ମଗତ ଅଧିକାର
ବିଦେଶୀ ଦରବ ସବୁ ବରଜନ କର ।।
ଶୃଙ୍ଖଳରେ ବନ୍ଦୀ ହେଲୁ ଦୁଇ ଶହ ବରଷ
ଦୁଃଖ ଶୋକ ଯନ୍ତ୍ରଣାର ନଥିଲା ଯେ ଶେଷ,
କେତେ ରକ୍ତ ନଦୀ ଧାର ତୋ' ଦେହେ ବହିଛି
କେତେ ଯେ ସନ୍ତାନ ତୋ'ର ଫାଶିରେ ଝୁଲିଛି ।।
ଜାଲିଆନା, ଇରମ୍ର ସେ ଗୌରବ ଗାଥା
ବନ୍ଧୁକ ଗୁଳିରେ କେତେ ଟଳିଗଲା ମଥା,
ସତ୍ୟାଗ୍ରହ ଅହିଂସାରେ ଲଭିଲୁ ମୁକତି
ପଟ୍ଟାନ୍ତର ନାହିଁ ଦେଶ ମାତୃକାର ପ୍ରୀତି ।।
ଉଣେଇଶ ସତଚାଳିଶି ଆଜିର ଦିବସେ
ଉଡ଼ିଲା ତ୍ରିରଙ୍ଗା ଦେଶେ ମା' ତୋ ଆଶୀଷେ,
ମା'ର ମୁକତି ପାଇଁ ବରି କାରାବାସ
କୋଟି ସନ୍ତାନର ମୁଖେ ଫୁଟାଇଲେ ହସ ।।
ଦେଶ, ଜାତି ହିତେ ଆଣି ସ୍ୱାଧୀନତା ଧନ
ଆତତାୟୀ ହସ୍ତେ ପ୍ରାଣ କଲେ ବିସର୍ଜନ
ଅଲିଭା ସେ ଦୀପଶିଖା ଯୁଗ ଯୁଗ ପାଇଁ
ମହାତ୍ମା ସେ ମହାଯାତ୍ରା ପଥେ ବିଶ୍ୱଜୟୀ ।।

ଘର ନଂ- ୭୫
ୟୁନିଟ୍-୮, ଭୁବନେଶ୍ୱର - ୧୨

# ସ୍ୱାଧୀନତା ସଂଗ୍ରାମରେ ବିଦେଇପୁରଗଦୀ 'ବରୁଣ ତୋଟା'ର ଅବଦାନ

ନାରାୟଣ ପ୍ରସାଦ ଜେନା

**ଭା**ରତର ଐତିହାସିକ ସ୍ୱାଧୀନତା ସଂଗ୍ରାମର ଅନ୍ୟ କେତେକ ସଂଗ୍ରାମୀପୀଠ ତୁଳନାରେ ବିଦେଇପୁରଗଦୀ 'ବରୁଣତୋଟା'ର ଅବଦାନ କୌଣସି ଗୁଣରେ କମ୍ ନୁହେଁ । ଅବିଭକ୍ତ ବାଲେଶ୍ୱର ଜିଲ୍ଲା ବାସୁଦେବପୁର ଥାନା ଅନ୍ତର୍ଗତ ବିଦେଇପୁରଗଦୀ 'ବରୁଣତୋଟା' ସମୁଦ୍ର ଉପକୂଳରେ ଅବସ୍ଥିତ । ଉକ୍ତ ପୁଣ୍ୟ ଭୂମି ଚତୁଃପାର୍ଶ୍ୱରେ ଘେରି ରହିଛି ମନ୍ତେଇ ନଈ । କୋଷ୍ଟ କେନାଲ ଓ ବଙ୍ଗୋପସାଗର କାଁ ଭାଁ କେତେ ଖଣ୍ଡି ଗ୍ରାମ ସହିତ ବହୁ ସାଂସ୍କୃତିକ ପୀଠସ୍ଥଳୀ ମଧ୍ୟ ବିଦ୍ୟମାନ । ଏ ପୁଣ୍ୟ ଭୂମି ଅଞ୍ଚଳଟି ଜିଲ୍ଲାର ଶସ୍ୟ ଭଣ୍ଡାର କହିଲେ ଅତ୍ୟୁକ୍ତି ହେବ ନାହିଁ । ଏପରିକି ଧାନ, ଦୁଗ୍ଧ, ମତ୍ସ୍ୟ ଉତ୍ପାଦନ ଓ ଲୁଣ ମାରିବା ଥିଲା ଏକମାତ୍ର ଧନ୍ଦା । ଏହି ଅଞ୍ଚଳରେ ମଜୁରୀ ଦୁଇ ଅଣାରୁ ଚାରି ଅଣା ଥିଲା । ନିତ୍ୟ ବ୍ୟବହାର୍ଯ୍ୟ ଜିନିଷପତ୍ର ଖୁବ୍ ଶସ୍ତା ଥିଲା । କାମର ସମୟ ଥିଲା ସୂର୍ଯ୍ୟୋଦୟଠାରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ । ଏହି ଅଞ୍ଚଳରେ ଅଧିବାସୀମାନେ ସରଳ, କଷ୍ଟ ସହିଷ୍ଣୁ ଓ ପରିଶ୍ରମୀ ଥିଲେ । ରାସ୍ତା-ଘାଟ, ଶିକ୍ଷା-ସ୍ୱାସ୍ଥ୍ୟର ବିଶେଷ ସୁବିଧା ନଥିଲା । ପ୍ରତିବର୍ଷ ଲୁଣା, ବନ୍ୟାରେ ଧାନ ଫସଲ ନଷ୍ଟ ହେଉଥିଲା । ବର୍ଷା ଜଳ ଉପରେ ଏକମାତ୍ର ଚାଷ ନିର୍ଭର କରେ । ବର୍ଷର ଅଧିକାଂଶ ସମୟରେ ଲୋକମାନେ ପେଟ ପୋଷିବା ପାଇଁ ଦାଦନ ଶ୍ରମିକ ଭାବେ ପଡ଼ୋଶୀ ରାଜ୍ୟକୁ କାମ କରିବା ପାଇଁ ଯାଆନ୍ତି ।

ଉକ୍ତ ଅଞ୍ଚଳର ପାର୍ଶ୍ୱବର୍ତ୍ତୀ ଅଞ୍ଚଳରେ ଭୂୟାଁ ଭାସ୍କର ଚନ୍ଦ୍ର ମହାପାତ୍ର, ରାଧାକାନ୍ତ ପାଢ଼ୀ, ଯୋଗେନ୍ଦ୍ର ମଣ୍ଡଳ ଓ ଶଶୀ କଳାଙ୍କ ଜମିଦାରୀ ଥିଲା ।

ଠିକ୍ ସେହି ସମୟରେ ବ୍ରିଟିଶ ସାମ୍ରାଜ୍ୟବାଦର ଶାସନ, ଶୋଷଣ ଓ ନିର୍ଯ୍ୟାତନାରେ ସମଗ୍ର ଭାରତବର୍ଷର ଜନସାଧାରଣ ଅତିଷ୍ଠ ହୋଇ ପରାଧୀନ ଭାରତବର୍ଷକୁ ସ୍ୱାଧୀନ କରିବା ଲକ୍ଷ୍ୟ ନେଇ ଆରମ୍ଭ ହେଲା ସ୍ୱାଧୀନତା ଆନ୍ଦୋଳନ । ସହରଠାରୁ ଆରମ୍ଭ କରି ଗାଁ-ଗଣ୍ଡା ପର୍ଯ୍ୟନ୍ତ ବିଶାଳ ବୈପ୍ଳବିକ ଆନ୍ଦୋଳନ ହେଲା । ଆମ ଦେଶର ବହୁ ଜାତି, ବହୁ ଭାଷା, ବହୁ ଧର୍ମର ଓ ବହୁ ସଂସ୍କୃତିର ଲୋକ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇ କେତେ ଯେ ଶହୀଦ ହୋଇଛନ୍ତି ତା'ର ହିସାବ ନାହିଁ ।

ସମଗ୍ର ଦେଶରେ ସ୍ୱାଧୀନତା ଆନ୍ଦୋଳନର ସ୍ରୋତ ପ୍ରବଳ ଭାବରେ ପ୍ରବାହିତ ହେଲା । ବାସୁଦେବପୁର ଥାନାର ଇରମ ନଈ ଘେରଦର ସ୍ୱାଧୀନତାର ଅଗ୍ନି ସ୍ଫୁଲିଙ୍ଗ ସମଗ୍ର ବେଳାଭୂମି ଗ୍ରାମମାନଙ୍କୁ ପ୍ରସାରିତ ହେଉଥିଲା । ଜାତୀୟ କବି ଓ ଓଡ଼ିଶାର ବରପୁତ୍ର ବାଞ୍ଛାନିଧି ମହାନ୍ତିଙ୍କ ବଜ୍ର ଗମ୍ଭୀର ସୁଲଳିତ କଣ୍ଠ ସଂଗୀତ ସମସ୍ତ ଜନସାଧାରଣଙ୍କୁ ସଚେତନ କରାଇ ଜାତୀୟ ମୁକ୍ତି ଆନ୍ଦୋଳନରେ ଝାସ ଦେବା ପାଇଁ ପ୍ରେରଣା ଯୋଗାଇ ଥିଲା ।

ସମଗ୍ର ବିଦେଇପୁର ଗଦୀ ଅଞ୍ଚଳରେ ସେହି ସମୟରେ ତାଙ୍କର ପ୍ରଭାବ ପଡ଼ି ସାରିଥାଏ । ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ହରେକୃଷ୍ଣ ମହତାବ ଓ ଭାଗବତ ସାହୁ ବିଦେଇପୁରଗଦୀ ଅଞ୍ଚଳରେ ବୁଲି ସ୍ୱାଧୀନତାର ବାର୍ତ୍ତା ପ୍ରଚାର କରୁଥାନ୍ତି । ବିଦେଇପୁରଗଦୀ ଅଞ୍ଚଳରେ ଉପେନ୍ଦ୍ର ବେହେରା ଓ ଗୋପୀନାଥ ବେହେରା ଓ ବହୁ ଉଦୀୟମାନ ଯୁବକ ସମସ୍ତ ସୁଖସ୍ୱାଚ୍ଛନ୍ଦ୍ୟକୁ ଜଳାଞ୍ଜଳି ଦେଇ ଦେଶପ୍ରେମରେ ଉଦ୍‌ବୋଧ ହୋଇ ପରାଧୀନ ଭାରତବର୍ଷକୁ ସ୍ୱାଧୀନ କରିବା ଲକ୍ଷ୍ୟ ନେଇ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଲେ । ସେମାନଙ୍କର ଅଦ୍ୟମ ସାହସ, ନିଷ୍ପାପର ଦେଶପ୍ରେମ ଲୋକମାନଙ୍କୁ ଅନୁପ୍ରାଣିତ କଲା । ସେମାନେ ବ୍ରିଟିଶ ସରକାର ବିରୁଦ୍ଧରେ ଓ ସ୍ୱାଧୀନତା ସଂଗ୍ରାମ ଆନ୍ଦୋଳନରେ ଜଣେ ଜଣେ ସୈନିକଭାବେ କାର୍ଯ୍ୟ କରିଥିଲେ । ଆନ୍ଦୋଳନରେ ନେତୃତ୍ୱ ନେଇଥିଲେ ଉପେନ୍ଦ୍ର ବେହେରା ଓ ଗୋପୀନାଥ ବେହେରା । ଉପେନ୍ଦ୍ର ମାଷ୍ଟ୍ରେ ନାମରେ ପରିଚିତ । ସେ ଜଣେ ଶିକ୍ଷକ ମଧ୍ୟ ଥିଲେ ।

ଐତିହାସିକ ସ୍ୱାଧୀନତା ଆନ୍ଦୋଳନରେ ସମଗ୍ର ଭାରତବର୍ଷ ଦୋହଲୁ ଥାଏ, ଏହିପରି ପ୍ରେକ୍ଷୀରେ ୧୯୨୭ ମସିହାରେ ଗାନ୍ଧୀ, ଗୋପବନ୍ଧୁ, ମିରାବେନ, ମହାଦେବ ଦେଶାଇ, ମହତାବ ଓ ଭାଗବତ ସାହୁ ପ୍ରମୁଖ ବିଦେଇପୁରଗଦୀ, ବରୁଣ ତୋଟା ନିକଟସ୍ଥ ଚାରିବାଟିଆଠାରେ ପହଞ୍ଚିଥିଲେ । ସମଗ୍ର ଭେଡ଼ା ଅଞ୍ଚଳର ଆବାଳ-ବୃଦ୍ଧ-ବନିତା କୀର୍ତ୍ତନ ଦଳସହ ଶଂଖ ହୁଳହୁଳି ସାଙ୍ଗକୁ ମହାତ୍ମା ଗାନ୍ଧୀଙ୍କ ଜୟଧ୍ୱନୀରେ ଚାରିବାଟିଆ ଗ୍ରାମ ମୁଖରିତ ହୋଇ ଉଠିଥିଲା । ପୁଷ୍ପମାଲ୍ୟ ଦେଇ ଗାନ୍ଧୀ, ଗୋପବନ୍ଧୁ ପ୍ରମୁଖଙ୍କୁ ସମ୍ବର୍ଦ୍ଧନା ଦିଆଯାଇ ଥିଲା । ଗାନ୍ଧୀ

ଓ ଗୋପବନ୍ଧୁ ପ୍ରମୁଖ ଇଷ୍ଟଇଣ୍ଡିଆ କମ୍ପାନୀ ଡାକବଙ୍ଗଳାରେ ତିନି ଦିନ ଧରି ଅବସ୍ଥାନ କରିଥିଲେ । ପ୍ରତିଦିନ ସଭା କରି ଲୋକମାନଙ୍କୁ ସ୍ୱାଧୀନତାର ବାର୍ତ୍ତା ପ୍ରଚାର କରୁଥିଲେ । ଗାନ୍ଧିଜୀଙ୍କ ବାଣୀ ସମସ୍ତଙ୍କୁ ମନ୍ତ୍ରମୁଗ୍ଧ କରି ଏକ ନୂତନ ଚେତନା ସୃଷ୍ଟି କଲା । ସମଗ୍ର ଭେଡ଼ା ଅଞ୍ଚଳରେ ସ୍ୱାଧୀନତା ଆନ୍ଦୋଳନର ଏକ ଅଭିନବ ରୂପ ଧାରଣ କଲା । ଲୋକମାନେ ନିଜର ସାମର୍ଥ୍ୟ ଅନୁଯାୟୀ ଅଧଲା ଛଦାମଠାରୁ ଅଣି ଦୋଅଣି ଏହିପରି କିଛି ଅର୍ଥ ଗାନ୍ଧିଜୀଙ୍କୁ ଦାନ କରିଥିଲେ ।

୧୯୩୦ ମସିହାରେ ଗାନ୍ଧିଜୀଙ୍କ ନେତୃତ୍ୱରେ ଲବଣ ସତ୍ୟାଗ୍ରହ ଦାଣ୍ଡିରେ ଆରମ୍ଭ ହେଲା । ତାହା ସମଗ୍ର ଭାରତବର୍ଷକୁ ବ୍ୟାପୀବାକୁ ଲାଗିଲା । ବିଦେଇପୁରଗଦୀ 'ବରୁଣ ତୋଟା' ଓ ସମଗ୍ର ଭେଡ଼ା ଅଞ୍ଚଳରେ ଜନଜାଗରଣ ତନ୍ମଧ୍ୟରୁ ଅନ୍ୟତମ । ବହୁ ବିଶିଷ୍ଟ ନେତାମାନେ ବିଦେଇପୁରଗଦୀ ବରୁଣ ତୋଟା ଅଞ୍ଚଳରେ ମହାତ୍ମା ଗାନ୍ଧୀଙ୍କ ବାର୍ତ୍ତା ପ୍ରଚାର କରିବା ଓ କଂଗ୍ରେସର ସଭ୍ୟ ସଂଗ୍ରହ କରିବା ପାଇଁ ବହୁବାର ଆସିଛନ୍ତି ଓ ସଭାସମିତି କରି ଲୋକମାନଙ୍କୁ ଲବଣ ଆଇନ ଭଙ୍ଗ କରିବାପାଇଁ ଉଦ୍‌ବୋଧନ ଦେଇଥିଲେ । ବାଲେଶ୍ୱର ଜିଲ୍ଲାର ଇଞ୍ଚୁଡ଼ି ଲୁଣିଆ, ତୁଡ଼ିଗଡ଼ିଆ, ଇରମ, ବଛଦା ଓ ଚୂଡ଼ାମଣି ସମେତ ଅନ୍ୟ କେତେକ ଅଞ୍ଚଳରେ ଲବଣ ଆଇନ ଭଙ୍ଗ କରାଯାଇ ବହୁ ନେତା ଗିରଫ ହୋଇଥିଲେ ।

୧୯୩୦ ମସିହାରେ ଲବଣ ଆନ୍ଦୋଳନ ପ୍ରଥମ ପର୍ଯ୍ୟାୟରେ ଆଇନ ଅମାନ୍ୟ କାର୍ଯ୍ୟକ୍ରମ ଗ୍ରହଣ କରିବାରୁ ଇଂରେଜ ସରକାର ଏକ ଆଇନ ପ୍ରଣୟନ କରି ଆନ୍ଦୋଳନକୁ ନିଷେଧାଜ୍ଞା ଜାରି କରି ଦେଇଥିଲେ । ଇଂରେଜ ସରକାରଙ୍କର ନିଷେଧାଜ୍ଞା ସୁଦୂର ବିଦେଇପୁରଗଦୀ ବରୁଣ ତୋଟା ଅଞ୍ଚଳରେ ପହଞ୍ଚି ପାରି ନଥିବାରୁ ସେମାନେ ବହୁଦିନ ଧରି ସମୁଦ୍ର କୂଳରେ ନିର୍ଭୀକତାରେ ଲୁଣ ମାରୁଥିଲେ । ଇଂରେଜ ସରକାର ଲବଣ କରକୁ ଦ୍ୱିଗୁଣିତ କରି ଲିଭର ପୋଲରୁ ଲୁଣ ଆଣି ଆମ ଅଞ୍ଚଳରେ ବିକ୍ରୟ କରି ବହୁ ଅର୍ଥ ତାଙ୍କ ଦେଶକୁ ନେଇ ଯାଉଥିଲେ । ବାଲେଶ୍ୱରଠାରୁ ଧାମରା ପର୍ଯ୍ୟନ୍ତ ସମୁଦ୍ରକୂଳ ଅଞ୍ଚଳକୁ ଲୁଣା ଦାଣ୍ଡି କୁହାଯାଏ । ବିଦେଇପୁରଗଦୀ ବରୁଣତୋଟା ଲୁଣ ମରା କେନ୍ଦ୍ରକୁ ଦମନ କରିବା ପାଇଁ ବିଦେଇପୁରଠାରେ ଏକ ପୋଲିସ ଫାଣ୍ଡି ସରକାର ଖୋଲିଥିଲେ । ଉକ୍ତ ଅଞ୍ଚଳରେ କୌଣସି ଲୋକ ଲୁଣ ମାରି ପାରିବ ନାହିଁ ବୋଲି ସରକାରଙ୍କ ତରଫରୁ ଢେଙ୍ଗୁରା ପିଟି ନିଷେଧାଜ୍ଞା ଜାରି କଲେ । ପୋଲିସ ଫୌଜମାନଙ୍କର ଦିନକୁ ଦିନ ଦୌରାତ୍ମ୍ୟ ବୃଦ୍ଧି ପାଇବାକୁ ଲାଗିଲା । ଉପେନ୍ଦ୍ର ବେହେରା ଓ ଗୋପୀନାଥ ବେହେରା ପ୍ରମୁଖ ଗାଁକୁ ଗାଁ ବୁଲି ଲବଣ ଆଇନ ଭଙ୍ଗ କରିବା ପାଇଁ ଲୋକମାନଙ୍କୁ ସଂଗଠିତ କରିବାକୁ ଲାଗିଲେ ।

ଏହି ସମୟରେ ବିରସ ଗାଁର ହରିଜନ ପୁରୁଷ ଓ ମହିଳାମାନେ ସମୁଦ୍ରରୁ ଲୁଣିପାଣି ଧରି ଫେରୁଥିବାବେଳେ ପୋଲିସ ସାମନାରେ ପଡ଼ିଲେ । ଲୋକମାନେ ପଳାଇଯିବାକୁ ଉଦ୍ୟମ କଲାବେଳେ ପୋଲିସମାନେ ସେମାନଙ୍କ ପାଣିହାଣ୍ଡି ପିଟି ଭାଙ୍ଗିବା ସହିତ ଲୋକମାନଙ୍କୁ ନିସ୍ତୁକ ମାଡ଼ ଦେଲେ । ଲୋକମାନେ ଏକଜୁଟ ହୋଇ ପୋଲିସଠାରୁ ଲାଠି ଛଡ଼ାଇ ସେହି ଲାଠିରେ ପୋଲିସକୁ ପିଟିବା ଆରମ୍ଭ କଲେ । ପୋଲିସ ଆତ୍ମରକ୍ଷା କରିବା ନିମନ୍ତେ ଦୌଡ଼ି ଦୌଡ଼ି ଫାଣ୍ଡିକୁ ପଳେଇ ଗଲେ । ଏ ଖବର ବିରସ ଗାଁରେ ପ୍ରଚାରିତ ହେବା ମାତ୍ରେ ସେଦିନ ପୋଲିସ ଭୟରେ କେତେକ ଗାଁ ଛାଡ଼ି ପଳାଇ ଯାଇଥିଲେ ଓ ଆଉ କେତେକ ଧାନ ଅମାରରେ ଲୁଚି ରହିଥିଲେ । ଗାଁର ମୁଖିଆମାନେ ମେଳିବାନ୍ଧି ଥାନ୍ତି । ଘଟଣାର ପରଦିନ ଭୋରୁ ପୋଲିସବାହିନୀ ଅତର୍କିତ ଭାବେ ବିରସ ଗ୍ରାମକୁ ଘେରାଉ କରି ନାରୀ-ପୁରୁଷ ନିର୍ବିଶେଷରେ ଯାହାକୁ ପାଇଲେ ତାକୁ ନିସ୍ତୁକ ମାଡ଼ ଦେଲେ । ଘରୁ ଖାଦ୍ୟ ପଦାର୍ଥ ବୋହି ନେଲେ । ଚେମା ଦାସ ଓ ଭାଗ ପାତ୍ରକୁ ହାତକଡ଼ା ପକାଇ ଚଲାଇ ଚଲାଇ ଫାଣ୍ଡିକୁ ନେଇଥିଲେ । ଫାଣ୍ଡିରେ ତାଙ୍କ ଉପରେ ନିସ୍ତୁକ ମାଡ଼ ହେଲା । ଆଉ ମେଳି କରିବେ ନାହିଁ ବୋଲି ଏକ ସାଧା କାଗଜରେ ତାଙ୍କଠାରୁ ଲେଖି ନେଲେ ଓ ପ୍ରତ୍ୟେକଙ୍କୁ ଦଶଟଙ୍କା ଲେଖାଏଁ ଜୋରିମାନା କଲେ ।

ଅପରପକ୍ଷରେ ପୋଲିସର ଅତ୍ୟାଚାରରେ ଜନଉଦ୍‌ବେଳନ ଦବି ନଯାଇ ଦିନକୁ ଦିନ ବଢ଼ିବାକୁ ଲାଗିଲା । ଗୁଳାପଦାକୁ ଏକ ସଭା ଡକାଗଲା । ସଭାରେ ସଭାପତିତ୍ୱ କରିଥିଲେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଭାଗବତ ସାହୁ । ବହୁ ସଂଖ୍ୟକ ଲୋକମାନେ ସଭାରେ ଯୋଗ ଦେଇଥିଲେ । ବାଞ୍ଛାନିଧି ମହାନ୍ତିଙ୍କ ରଚିତ ଦେଶାତ୍ମବୋଧ ସଂଗୀତ ଗାଇଥିଲେ ବାଞ୍ଛାନିଧି ନାୟକ, ଚନ୍ଦ୍ରମଣି ଭୋଇ, ଗୋବିନ୍ଦ ମହାନ୍ତି, ବଳରାମ, ପାଣ୍ଡବ, ଛୋଟବାଳକ ପୁରୁଷୋତ୍ତମ ସ୍ୱାଇଁ ଓ ମାନଗୋବିନ୍ଦ ଜେନା । ସଭା ଆରମ୍ଭରେ ସଂଗ୍ରାମୀ ନେତା ଉପେନ୍ଦ୍ର ବେହେରା ବ୍ରିଟିଶ ସରକାରଙ୍କର ଅତ୍ୟାଚାର ବିରୁଦ୍ଧରେ ଭାଷଣ ଦେବାସହ ଲୁଣମରା କାର୍ଯ୍ୟକ୍ରମକୁ ସଫଳ କରିବା ପାଇଁ ଜନସାଧାରଣଙ୍କୁ ନିବେଦନ କଲେ । ଶେଷରେ ଭାଗବତ ବାବୁଙ୍କ ଭାଷଣରେ ଲୋକମାନେ ଉଦ୍‌ବୋଧ ହୋଇ ଲୁଣମାରି ଗିରଫ ହେବାପାଇଁ ପ୍ରବଳ ଆଗ୍ରହ ପ୍ରକାଶ କଲେ । ସଭାରେ ଏକ ସତ୍ୟାଗ୍ରହ କମିଟି ଗଠନ କରାଯାଇ ସତ୍ୟାଗ୍ରହୀମାନଙ୍କ ନାମ ତାଲିକା କରାଗଲା ଓ ସ୍ୱେଚ୍ଛାସେବକ ବାହିନୀ ଗଠନ କରାଗଲା । ଲବଣ ସତ୍ୟାଗ୍ରହ ଏପ୍ରିଲ ୧୬ ତାରିଖରେ ହେବାପାଇଁ ନିଷ୍ପତ୍ତି କରାଗଲା । ବରୁଣ ତୋଟାରେ ଏକ ଛାମୁଣ୍ଡିଆ ବାନ୍ଧିବା ପାଇଁ ସତ୍ୟାଗ୍ରହୀମାନେ ଏକ ଦାୟିତ୍ୱ ଗ୍ରହଣ କଲେ । ସେଦିନ ସମସ୍ତ କାମଦାମ ଏ ଅଞ୍ଚଳରେ ବନ୍ଦର ରହିବା ପାଇଁ ନିଷ୍ପତ୍ତି କରାଗଲା । ଶତ୍ରୁର ଆଗମନରେ ଶଂଖ ଧ୍ୱନି ଦ୍ୱାରା ସଂଗ୍ରାମୀମାନଙ୍କୁ ସତର୍କ କରାଇବା ଦାୟିତ୍ୱ ସ୍ୱେଚ୍ଛା ସେବକମାନଙ୍କ ଉପରେ ରହିଲା । ଏପ୍ରିଲ ୧୬ ତାରିଖକୁ ସଫଳ କରିବା ପାଇଁ ବ୍ୟାପକ ପ୍ରସ୍ତୁତି ଚାଲିଥାଏ । ପୂର୍ବ ନିଷ୍ପତ୍ତି ଅନୁସାରେ ଏପ୍ରିଲ ୧୬ ତାରିଖରେ ସମସ୍ତ କାମ ବନ୍ଦ ରହିବା ସତ୍ୟାଗ୍ରହ କମିଟି

ଡାକରା ଦେଇଥିଲେ ମଧ୍ୟ ସେଦିନ ଦୁଇଜଣ ନିଷ୍ଠାଭି ବ୍ୟତିକ୍ରମ କରି ବିଲରେ ହଳ ବୁଲାଉ ଥିବାର ସଂଗ୍ରାମୀମାନେ ଜାଣି ପାରି ତାଙ୍କ ହଳ ଖୋଲି ଦେଇଥିଲେ ।

୧୯୩୦ ମସିହା ଏପ୍ରିଲ ୧୬ ତାରିଖ ଦିନ ଐତିହାସିକ ବରୁଣ ତୋଟା ଆକାଶରେ ହଠାତ୍ ଦୁର୍ଦ୍ଦିନର ଛାୟା ଘୋଟି ଆସିଲା । ସେଦିନ ସେଠାରେ ପୋଲିସର ଅମାନୁଷିକ ଦମନ ଲୀଳା ଅନୁଷ୍ଠିତ ହେବ କିଏ ଜାଣି ଥିଲା । ରାସ୍ତାଘାଟର ସୁବିଧା ନଥିବା ବଣ ଜଙ୍ଗଲ ଫଳପୁଷ୍ପ ଭରା ଐତିହାସିକ ବରୁଣ ତୋଟା ସମୁଦ୍ର କୂଳରେ ଅବସ୍ଥିତ ଓ ଲବଣ ସତ୍ୟାଗ୍ରହ ପାଇଁ ସେଥିଲା ଉପଯୁକ୍ତ ସ୍ଥାନ । ସେହି ସ୍ଥାନରେ ଲବଣ ସତ୍ୟାଗ୍ରହ ଆରମ୍ଭ ହୁଏ ଏପ୍ରିଲ ୧୬ ତାରିଖରେ । ଐତିହାସିକ ବରୁଣ ତୋଟାରେ ଲୁଣ ମାରିବାପାଇଁ ଛୋଟ ଛୋଟ ଚୁଲା ତିଆରି ସାଙ୍ଗକୁ ଲମ୍ୱା ଦାଣ୍ଡି ଚାଳ ଘରଗୁଡ଼ିକ ବୃକ୍ଷବହୁଳ ବରୁଣ ତୋଟାକୁ ଅତ୍ୟନ୍ତ ମନୋରମ ପରିବେଶରେ ପରିଣତ କରିଥାଏ । ଏପ୍ରିଲ ୧୬ ତାରିଖରେ ଏ ଅଞ୍ଚଳରେ ସମସ୍ତ କାମ ବନ୍ଦ ଓ ସେଦିନ ସକାଳ ଥିଲା ମେଘାଚ୍ଛନ୍ନ । ବୈଶାଖର ଝାଞ୍ଜି ଫଟା ସୂର୍ଯ୍ୟର ଉତ୍ତପ୍ତ କିରଣ ଢାଙ୍କି ଯାଇଥିଲା ଐତିହାସିକ ବରୁଣ ତୋଟାର ମେଘାଚ୍ଛନ୍ନ ଆକାଶରେ ।

ବ୍ରିଟିଶ ପୋଲିସର ସମସ୍ତ ବାଧାକୁ ଭ୍ରୁକ୍ଷେପ ନକରି ସେଦିନ ଗାଁଗଣ୍ଡାର ଆବାଳ-ବୃଦ୍ଧ-ବନିତା ଧାଡ଼ି ବାନ୍ଧି ଛୁଟୁଥାନ୍ତି ଐତିହାସିକ ବରୁଣ ତୋଟାକୁ । ସେହି ବରୁଣ ତୋଟା ଲୋକାରଣ୍ୟରେ ପରିଣତ ହେବାକୁ ଲାଗିଲା । ପ୍ରାୟ ୫୦୦୦ରୁ ଅଧିକ ଲୋକ ସେଠାରେ ସମବେତ ହୋଇଥାନ୍ତି । ସୋରିଷ ପକାଇବାକୁ ରାହା ନାହିଁ । ଓଡ଼ିଶାର ବରେଣ୍ୟ ନେତା ହରେକୃଷ୍ଣ ମହତାବଙ୍କୁ ମାଟିପଙ୍କାଠାରୁ ବିଦେଇପୁର ଗୁଳାପଦାକୁ ଏକ କୀର୍ତ୍ତନ ଦଳ ଶୋଭା ଯାତ୍ରାରେ ଅଣାଗଲା । ଗୁଳାପଦାଠାରେ ଏକ ପଥପ୍ରାନ୍ତ ସଭାରେ ମହତାବ ଯୋଗ ଦେଲେ ଓ ସଭାକାର୍ଯ୍ୟ ଶେଷ କରି ଏକ ଶୋଭା ଯାତ୍ରାରେ ଆସି ବରୁଣ ତୋଟାଠାରେ ପହଞ୍ଚିବା ମାତ୍ରେ ମହାତ୍ମା ଗାନ୍ଧୀଙ୍କ ଜୟଧ୍ୱନିରେ ସଭାସ୍ଥଳ ମୁଖରିତ ହୋଇ ଉଠିଲା । ପୁରୁଷ ସତ୍ୟାଗ୍ରହୀଙ୍କ ସହିତ ୨୫ ଜଣ ମହିଳା ସତ୍ୟାଗ୍ରହୀ ଯୋଗ ଦେଇଥିଲେ । ସତ୍ୟାଗ୍ରହ ପୂର୍ବରୁ ପୋଲିସ ଜାଣି ପାରିଥିଲା । ହରେକୃଷ୍ଣ ମହତାବ, ଗୋପୀନାଥ ବେହେରା, ମନୁ ସେନାପତି, ହରି କାଣ୍ଡି, ଭାବନ ସ୍ୱାଇଁ, ନୟନ ସ୍ୱାଇଁ ବନ୍ଧୁ ମହାନ୍ତି, ବୀର ସେନାପତି, ଦୀନବନ୍ଧୁ ଦାସ, ରଘୁନାଥ ରାୟ, ଦୈତାରୀ ମହାପାତ୍ର, ଭାଗିରଥି ସାହୁ, ଚେମା ଦାସ, ଭାଗ ପାତ୍ର, ନୀଳ ମହାଳିକ ପ୍ରମୁଖ ଅରଟରେ ସୂତା କାଟିଲେ । କବି ବାଞ୍ଛାନିଧି ମହାନ୍ତିଙ୍କ ରଚିତ ଦେଶାତ୍ମବୋଧ ସଙ୍ଗୀତ ବୋଲୁ ଥିଲେ ବଳରାମ ପାଣ୍ଡବ । ବାଞ୍ଛାନିଧି ନାୟକ, ଗୋବିନ୍ଦ ମହାନ୍ତି, ଚନ୍ଦ୍ରମଣି ଭୋଇ, ପୁରୁଷୋତ୍ତମ ସ୍ୱାଇଁ ଓ ମାନଗୋବିନ୍ଦ ଜେନା, ଅପରାହ୍ନ ଗୋଟାଏ ବେଳେ ସଭା ଆରମ୍ଭ ହେଲା । ସଭାରେ ସଭାପତିତ୍ୱ କରିଥାନ୍ତି ଭାଗବତ ସାହୁ । ସଂଗ୍ରାମର ନେତୃତ୍ୱ ନେଇଥିବା ସଂଗ୍ରାମୀ ନେତା ଉପେନ୍ଦ୍ର ବେହେରା ଅତିଥିମାନଙ୍କର ପରିଚୟ ପ୍ରଦାନ କରିବା ଓ ଲବଣ ଆଇନ ଭଙ୍ଗ କରିବା ସଂପର୍କରେ କହିବା ପରେ ଜଣକ ପରେ ଜଣେ ବକ୍ତାମାନେ ଭାଷଣ ଦେବା ଆରମ୍ଭ କଲେ । ବକ୍ତାମାନଙ୍କର ଓଜସ୍ୱିନି ଭାଷଣରେ ବରୁଣ ତୋଟାର ବାୟୁମଣ୍ଡଳ ସରଗରମ ହେବାକୁ ଲାଗିଲା । ଠିକ୍ ସେତେବେଳେ ପୋଲିସ ହ୍ୱିସିଲ ଶବ୍ଦ ଶୁଣାଯିବା ସହିତ ପୋଲିସ ଫୌଜ ଐତିହାସିକ ବରୁଣ ତୋଟା ସତ୍ୟାଗ୍ରହ ସ୍ଥଳରେ ପହଞ୍ଚି ଗଲେ ଓ ସତ୍ୟାଗ୍ରହ କେନ୍ଦ୍ରକୁ ଘେରି ରହିଲେ । ବରୁଣ ତୋଟାର ଏକମାତ୍ର ରାସ୍ତାକୁ ପୋଲିସ ଫୌଜ ଅବରୋଧ କଲେ । ପୋଲିସ ଫୌଜ କ୍ରୋଧରେ ଜର୍ଜରିତ ହୋଇ କହୁଥାନ୍ତି, ଏହି ମୁହୂର୍ତ୍ତରେ ଏ ସ୍ଥାନ ଛାଡ଼ି ଚାଲିଯାଅ ନଚେତ୍ ରକ୍ତର ହୁରୀ ଖେଳାଯିବ । ସଭାରେ ଉପସ୍ଥିତ ଲୋକମାନେ ଆତଙ୍କିତ ଅବସ୍ଥାରେ ଛିଡ଼ା ହୋଇଥାନ୍ତି । ନେତାମାନେ ସଭାମଞ୍ଚରେ କହୁଥାନ୍ତି ମରିବା ପଛେ ଡରିବା ନାହିଁ, ଲବଣ ଆଇନ ଭଙ୍ଗ କରି ବ୍ରିଟିଶ ସରକାରକୁ ଚେତାଇ ଦେବାକୁ ହେବ । ଭାଗବତ ବାବୁ ନିର୍ଦ୍ଦେଶ ଦେଲେ ଲୁଣ ମାରିବା ପାଇଁ । ତାଙ୍କରି ନିର୍ଦ୍ଦେଶରେ ସତ୍ୟାଗ୍ରହୀମାନେ ଲୁଣ ମାରିବା ଆରମ୍ଭ କରିବା ମାତ୍ରେ ମହାତ୍ମା ଗାନ୍ଧୀଙ୍କ ଜୟଧ୍ୱନିରେ ବରୁଣ ତୋଟା ପ୍ରକମ୍ପିତ ହୋଇ ଉଠିଲା । ଠିକ୍ ସେହି ସମୟରେ ବ୍ରିଟିଶ ଫୌଜ ସଭାସ୍ଥଳରେ ପଶି ଆଖିବୁଜା ଲାଠି ଚାଳନା ଆରମ୍ଭ କଲେ । ମାଡ଼ ଭୟରେ କେତେକ ଲୋକ ପଳାଇ ଯିବାକୁ ଉଦ୍ୟମ କଲେ ମଧ୍ୟ ରାସ୍ତା ଅବରୋଧ ଯୋଗୁଁ ଯାଇ ପାରିଲେ ନାହିଁ । ସତ୍ୟାଗ୍ରହର ଏକମାତ୍ର ରାସ୍ତାକୁ ପୋଲିସ ଅବରୋଧ କରି ଦେଇଥିଲେ । ପୋଲିସ ଫୌଜ ମାଡ଼ରେ ସତ୍ୟାଗ୍ରହୀମାନଙ୍କ ମଧ୍ୟରୁ କେତେକ ଆହତ ହୋଇ ସେଠାରେ ପଡ଼ି ରହିଲେ । ପୋଲିସ ଫୌଜ ଚୁଲି ହାଣ୍ଡିକୁ ଗୋଇଠା ମାରି ଭାଙ୍ଗିବାବେଳେ ଜଣେ ଫୌଜର ଗୋଡ଼ ପୋଡ଼ି ଯାଇଥିଲା । ଅପରପକ୍ଷରେ ସତ୍ୟାଗ୍ରହୀ ଦୀନବନ୍ଧୁ ଦାସ, ବୀର ସେନାପତି, ଗୋପୀନାଥ ବେହେରା, ଭାଗ ରାଉତ, ନୀଳ ମହାଳିକ, ଅମ୍ବିକା ଦେଇ, ବାୟାଣୀ ଦେଇ, ହାରା ଦେଇ ୫୦ ଜଣରୁ ଊର୍ଦ୍ଧ୍ୱ ସତ୍ୟାଗ୍ରହୀମାନେ ପୋଲିସର ଅମାନୁଷିକ ଅତ୍ୟାଚାରରେ ଶୀକାର ହୋଇ ବରୁଣ ତୋଟାରେ ଗଡ଼ିଯାଇ ଚିତ୍କାର କରୁଥାନ୍ତି । ପୋଲିସ ଫୌଜ ବୋଟୁ ଜୋତାରେ ସତ୍ୟାଗ୍ରହୀମାନଙ୍କୁ ମାଡ଼ି ଚକଟି ଦେବା ଫଳରେ କେତେ ସତ୍ୟାଗ୍ରହୀମାନଙ୍କର ଗୋଡ଼ ହାତ ଭାଙ୍ଗି ଯିବା ସଙ୍ଗେ ସଙ୍ଗେ କେତେକଙ୍କର ମୁଣ୍ଡ ଫାଟି ରକ୍ତ ନିଗିଡ଼ି ଗଲା, ସେହି ବରୁଣ ତୋଟାରେ । ଫୌଜମାନଙ୍କର ଆନନ୍ଦ କହିଲେ ନସରେ । ଆହତ ସଂଗ୍ରାମୀମାନଙ୍କର କରୁଣ ଚିତ୍କାରରେ ବରୁଣ ତୋଟା କୋଳାହଳରେ ମ୍ରିୟମାଣ ହୋଇ ପଡ଼ିଥାଏ । ଆହତମାନଙ୍କର ଚିତ୍କାର ଓ ହୋହାଲ୍ଲା ମଧ୍ୟରେ ସତ୍ୟାଗ୍ରହୀମାନେ ବିଚଳିତ ନହୋଇ ବାଇଜ୍ ଆଟିକା ଉଠା ଚୁଲି ସାହାଯ୍ୟରେ ନିଜର କାର୍ଯ୍ୟ ସଂପାଦନ କଲେ । ସାଧାରଣ ଲୋକମାନେ ପୋଲିସ ଲାଠିରେ ଆହତ ହୋଇ ରାସ୍ତାଘାଟରେ ପଡ଼ି ଚିତ୍କାର କରୁଥାନ୍ତି । ଆହତ ସତ୍ୟାଗ୍ରହୀମାନଙ୍କର ପାଣି ପାଣି ଚିତ୍କାରରେ ବରୁଣ ତୋଟା କୋଳାହଳରେ ଫାଟି ପଡୁଥାଏ । ସତ୍ୟାଗ୍ରହୀମାନଙ୍କୁ ପାଣି

ଦେବାବେଳେ ପୋଲିସ ଫୌଜ ପାଣି ଛଡ଼ାଇ ଫିଙ୍ଗି ଦେଉଥିଲେ । ସତ୍ୟାଗ୍ରହୀମାନଙ୍କର ଚିତ୍କାର ଓ କୋଳାହଳରେ ବରୁଣ ତୋଟା ଶୁଷ୍କ ଓ ନିଷ୍ପ୍ରଭ ପାଲଟି ଯାଇଥିଲା । ବାସ୍ତବିକ ସେଦିନର ଅପରାହ୍ନର ଘଟଣା ଲୁହ ଲହୁର ଏକ କରୁଣ ସମାବେଶ ଆହତ ସତ୍ୟାଗ୍ରହୀମାନଙ୍କର କରୁଣ ଆର୍ତ୍ତନାଦ ମୁହୂର୍ତ୍ତକ ମଧରେ ସମଗ୍ର ଜିଲ୍ଲାକୁ ବ୍ୟାପୀ ଗଲା ଆତ୍ମୀୟ ସ୍ୱଜନମାନଙ୍କର ସୁଅ ଛୁଟିଲା ବରୁଣ ତୋଟାକୁ । ଏକ ଦିଗରେ ସେଦିନ ଉତ୍ତଳ ଜନକ୍ରୋଧ ଅନ୍ୟ ଦିଗରେ ଆହତ ଆତ୍ମୀୟ ସ୍ୱଜନଙ୍କ କାନ୍ଦ, ଐତିହାସିକ ବରୁଣ ତୋଟା ମ୍ଳାନରେ ମ୍ରିୟମାଣ ହୋଇ ପଡ଼ିଥିଲା ।

ଏହି ପରିପ୍ରେକ୍ଷୀରେ ଲୁଣକୁ ଏକପାତ୍ରରେ ହାତରେ ଧରି ଭାଗବତ ବାବୁ ସମସ୍ତଙ୍କ ଦୃଷ୍ଟିକୁ ଆଣିଲେ । ପୋଲିସ ସଭାସ୍ଥଳରେ ଭାଗବତ ସାହୁ ଓ ଉପେନ୍ଦ୍ର ବେହେରା ପ୍ରମୁଖଙ୍କ ହାତରେ ହାତକଡ଼ା ପକାଇ ଚଲାଇ ଚଲାଇ ଥାନାକୁ ନେଉଥାନ୍ତି । ଶହ ଶହ ସତ୍ୟାଗ୍ରହୀ ଓ ଜନସାଧାରଣ ନେତାଙ୍କ ମୁକ୍ତି ଦାବୀ କରି ତାଙ୍କ ସହିତ ଚାଲିଥାନ୍ତି । ରାସ୍ତାରେ ଯାଉଥିବା ବେଳେ ଗାଁର ମହିଳାମାନେ ରାସ୍ତା ଉପରକୁ ଆସି ଶଂଖ ହୁଳହୁଳି ସହ ପୁଷ୍ପଗୁଚ୍ଛ ଦେଇ ସମ୍ବର୍ଦ୍ଧନା ଜଣାଉଥାନ୍ତି । ଭାଗବତ ବାବୁ ଲୁଣକୁ ନିଲାମ ଡାକି ଡାକି ଚାଲିଥାନ୍ତି । ଗଦେଇବିନ୍ଧା ଗ୍ରାମର ବେନୁ ମାହୁନ୍ତ ଲୁଣକୁ ଏକ ଶତ ଟଙ୍କାରେ ନିଲାମ ଧରିଥିଲେ । ଭାଗବତ ବାବୁ ଓ ଉପେନ୍ଦ୍ର ବେହେରା ଥାନାରେ ପହଞ୍ଚିବା ମାତ୍ରେ ତାଙ୍କୁ ଦେଖିବା ପାଇଁ ଶହ ଶହ ଲୋକ ରୁଣ୍ଡ ହୋଇଥିଲେ । ପୋଲିସ୍ ଲୋକମାନଙ୍କୁ ଘଉଡ଼ାଇ ଦେଇଥିଲେ । ପୋଲିସ ତରଫରୁ ସେମାନଙ୍କ ଉପରେ ଅତ୍ୟାଚାର ମଧ କରାଗଲା । ତାଙ୍କ ବିରୁଦ୍ଧରେ କେଶରୁ ଡକରା ଯାଇ ତାଙ୍କୁ ଚଲାଇ ଚଲାଇ ପଦ୍ମପୁର ଓ ଇଚ୍ଛାପୁର ଦେଇ ଭଦ୍ରକ କୋର୍ଟକୁ ନିଆଗଲା ।

ପୋଲିସର ଅମାନୁଷିକ ଅତ୍ୟାଚାରରେ ଏ ଅଞ୍ଚଳର ଜନ ଉଦ୍‌ବେଳନ ଜୋରଦାର ହେବାକୁ ଲାଗିଲା । ଏହା ଏକ ୭୪ ବର୍ଷ ତଳର କଥା । ଯେଉଁମାନେ ଦେଶପ୍ରେମରେ ଉଦ୍‌ବୋଧ ହୋଇ ନିଜ ଜୀବନକୁ ପାଣି ଛଡ଼ାଇ ଦେଇ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇଥିଲେ, ସେମାନେ ଦେଶ ଓ ଜାତି ନିକଟରେ ଚିର ନମସ୍ୟ ଓ ସ୍ମରଣୀୟ ହୋଇ ରହିବେ । ବିଦେଇପୁରଗଦୀ ବରୁଣ ତୋଟା ସ୍ୱାଧୀନତା ସଂଗ୍ରାମ ଇତିହାସରେ ଅଭୁଲା ସ୍ମୃତି ହୋଇ ରହିବ, ଏଥିରେ ସନ୍ଦେହ ନାହିଁ ।

ସ୍ୱାଧୀତାର ସୁବର୍ଣ୍ଣ ଜୟନ୍ତୀ ଅବସରରେ ସଂଗ୍ରାମଭୂଇଁ ବିଦେଇପୁରଗଦୀ ବରୁଣ ତୋଟାକୁ ଲୋକଲୋଚନକୁ ଆଣିବାରେ ଐତିହାସିକବିତ୍ ଡକ୍ଟର ଜଗନ୍ନାଥ ପଟ୍ଟନାୟକ, ଲୋଚନ ଜେନା ଓ ନାରାୟଣ ପ୍ରସାଦ ଜେନାଙ୍କ ଅବଦାନ ଭୁଲିବାର ନୁହେଁ ।

ବିରସ, ବାସୁଦେବପୁର
ଭଦ୍ରକ

## କ୍ରାନ୍ତି ଦିବସ ସମ୍ବର୍ଦ୍ଧନା ଉତ୍ସବରେ ଯୋଗ ଦେବା ନିମନ୍ତେ ଓଡ଼ିଶାରୁ ପାଞ୍ଚ ଜଣ ସ୍ୱାଧୀନତା ସଂଗ୍ରାମୀଙ୍କ ଦିଲ୍ଲୀ ଯାତ୍ରା

ଅଗଷ୍ଟ ୯, କ୍ରାନ୍ତି ଦିବସକୁ ସ୍ମରଣ କରିବା ପାଇଁ ଦେଶର ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଭାରତର ମାନ୍ୟବର ରାଷ୍ଟ୍ରପତି ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜ୍ଞାପନ କରିବେ । ଏହି ଉତ୍ସବ ଉପଲକ୍ଷେ ଓଡ଼ିଶାର ୫ ଜଣ ସ୍ୱାଧୀନତା ସଂଗ୍ରାମୀଙ୍କ ନାମ ସ୍ଥିର କରାଯାଇଛି । ଅଗଷ୍ଟ ୬ ତାରିଖ ଦିନ ଓଡ଼ିଶାରୁ ଏହି ପାଞ୍ଚ ଜଣ ସ୍ୱାଧୀନତା ସଂଗ୍ରାମୀ ଦିଲ୍ଲୀ ଅଭିମୁଖେ ଯାତ୍ରା କରିଛନ୍ତି । ସେମାନଙ୍କୁ ଭୁବନେଶ୍ୱର ରେଳ ଷ୍ଟେସନ୍‌ଠାରେ ରାଜ୍ୟ କୃଷି ମନ୍ତ୍ରୀ ଶ୍ରୀ ସୁରେନ୍ଦ୍ର ନାଥ ନାୟକ ପୁଷ୍ପଗୁଚ୍ଛ ଦେଇ ବିଦାୟ ସମ୍ବର୍ଦ୍ଧନା ଜ୍ଞାପନ କରିଥିଲେ । ରାଜ୍ୟ ସରକାରଙ୍କ ପକ୍ଷରୁ ଅର୍ଥ ବିଭାଗ ଅତିରିକ୍ତ ଶାସନ ସଚିବ ଶ୍ରୀ ସାରଦା ପ୍ରସାଦ ସ୍ୱାଇଁଙ୍କ ନେତୃତ୍ୱରେ ସ୍ୱାଧୀନତା ସଂଗ୍ରାମୀ ସର୍ବଶ୍ରୀ ବୈଷ୍ଣବ ଚନ୍ଦ୍ର ପଟ୍ଟନାୟକ, ଗୌରଚନ୍ଦ୍ର ମହାପାତ୍ର, ସୂର୍ଯ୍ୟମଣି ପଣ୍ଡା, ପ୍ରିୟନାଥ ଦେ ଓ ଗୌରଶ୍ୟାମ ନାୟକ ଦିଲ୍ଲୀ ଯାତ୍ରା କରିଛନ୍ତି । ରାଷ୍ଟ୍ରପତି ଭବନଠାରେ ଏହି ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଭାରତର ମାନ୍ୟବର ରାଷ୍ଟ୍ରପତି ଉପଢୌକନ ପ୍ରଦାନ ସହ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ପ୍ରଦାନ କରିବାର କାର୍ଯ୍ୟକ୍ରମ ରହିଛି । ପ୍ରକାଶ ଥାଉକି, ଗତବର୍ଷଠାରୁ ଭାରତର ସ୍ୱାଧୀନତା ସଂଗ୍ରାମୀମାନଙ୍କୁ କ୍ରାନ୍ତି ଦିବସରେ ମାନ୍ୟବର ରାଷ୍ଟ୍ରପତି ସମ୍ମାନିତ କରି ଆସୁଛନ୍ତି ।







# ପଣ୍ଡିତ ନୀଳକଣ୍ଠ

ଡକ୍ଟର ଜ୍ୟୋତିର୍ମୟୀ ସାମନ୍ତରାୟ

୧୮୮୪ ମସିହା ଅଗଷ୍ଟ ମାସ ୫ ତାରିଖ ଦିନ ଓଡ଼ିଶାର ବରେଣ୍ୟ ପ୍ରାଜ୍ଞ ମନୀଷୀ ପଣ୍ଡିତ ନୀଳକଣ୍ଠ ଦାସଙ୍କର ଜନ୍ମ । ପଣ୍ଡିତ ନୀଳକଣ୍ଠ ଏକାଧାରରେ ଥିଲେ ବିଦ୍ୱାନ ଓ ରାଜନୀତିଜ୍ଞ । ତାଙ୍କର ମେଧାଶକ୍ତି ଅତୁଳନୀୟ । ଠିକ୍ କଲେଜ ଶିକ୍ଷା ଶେଷ କରି ପଣ୍ଡିତ ଗୋପବନ୍ଧୁ ଦାସଙ୍କ ପ୍ରେରଣାରେ ଉତ୍ସାହିତ ହୋଇ ନିଃସ୍ୱାର୍ଥ ଭାବରେ ଦେଶ ଓ ଜାତିକୁ ଗଢ଼ିବା ନିମନ୍ତେ ମାତ୍ର ତିରିଶ ଟଙ୍କା ବେତନରେ ସେ ସତ୍ୟବାଦୀ ଜାତୀୟ ବିଦ୍ୟାଳୟରେ ଶିକ୍ଷକତା ତଥା ଏହି ବିଦ୍ୟାଳୟର ସୁପରିଚାଳନା କରି ଦୀର୍ଘ କର୍ମମୟ ଜୀବନର ଶୁଭାରମ୍ଭ କରିଥିଲେ । ତାଙ୍କ ସହିତ ସହଯୋଗ କରିଥିଲେ, ଆଚାର୍ଯ୍ୟ ହରିହର ଦାସ, ସ୍ୱର୍ଗତଃ ପଣ୍ଡିତ ଗୋଦାବରୀଶ ମିଶ୍ର, ସ୍ୱର୍ଗତଃ କୃପାସିନ୍ଧୁ ମିଶ୍ର, ସ୍ୱର୍ଗତଃ ଲିଙ୍ଗରାଜ ମିଶ୍ର ପ୍ରଭୃତି ଓଡ଼ିଶାର ବିଦ୍ୱାନ ବ୍ୟକ୍ତିଗଣ ।

କଲିକତା ବିଶ୍ୱବିଦ୍ୟାଳୟରୁ ଦର୍ଶନ ଶାସ୍ତ୍ରରେ ଏମ୍.ଏ. ପାଶ୍ ପରେ ସେ ସତ୍ୟବାଦୀ ବନବିଦ୍ୟାଳୟରେ ଯୋଗଦାନ କରିଥିଲେ । ୧୯୨୦ ମସିହାରେ କୁଳପତି ସାର ଆଶୁତୋଷ ମୁଖାର୍ଜୀଙ୍କ ନିମନ୍ତ୍ରଣ କ୍ରମେ ସେପ୍ଟେମ୍ବର ୨୧ ତାରିଖରେ ତତ୍କାଳୀନ କଲିକତା ବିଶ୍ୱବିଦ୍ୟାଳୟରେ ଆଧୁନିକ ଭାରତୀୟ ସାହିତ୍ୟ ଓ ତୁଳନାତ୍ମକ ଭାଷାତତ୍ତ୍ୱ ବିଭାଗରେ ଓଡ଼ିଆ ଅଧ୍ୟାପକ ରୂପେ ଯୋଗଦାନ କରିଥିଲେ । ୧୯୨୧ ମସିହା ଜାନୁଆରୀ ୬ ତାରିଖରେ କଲିକତା ବିଶ୍ୱବିଦ୍ୟାଳୟ ଅଧ୍ୟାପକ ପଦ ତ୍ୟାଗ କରିଥିଲେ ।

ଜାନୁଆରୀ ୭ ତାରିଖରେ ସମ୍ବଲପୁରରେ ଅସହଯୋଗ ଆନ୍ଦୋଳନ ପରିଚାଳନା ସହିତ 'ସେବା' ପତ୍ରିକାର ପ୍ରକାଶନ କରିଥିଲେ । ୧୯୨୩ ମସିହାରେ ୪ ମାସ ପାଇଁ କାରାବରଣ କରିଥିଲେ ଓ କଂଗ୍ରେସ ସ୍ୱରାଜ୍ୟ ଦଳରେ ଯୋଗଦାନ କରିଥିଲେ । ସ୍ୱରାଜ୍ୟ ଦଳ ପକ୍ଷରୁ ବିହାର, ଓଡ଼ିଶା ପ୍ରଦେଶର ଅଣ-ମୁସଲମାନ ସଭ୍ୟ ଭାବରେ କେନ୍ଦ୍ର ବ୍ୟବସ୍ଥାପକ ସଭାର ସଭ୍ୟ ଓ ମୋତିଲାଲ ନେହେରୁଙ୍କ ସଭାପତିତ୍ୱରେ ଗଠିତ 'ସ୍ୱରାଜ୍ୟ' ବ୍ୟବସ୍ଥା ସଭା ଦଳରେ ସଂପାଦକ ହୋଇଥିଲେ । ପଣ୍ଡିତ ନୀଳକଣ୍ଠ ମଧ୍ୟ ଦିଲ୍ଲୀ ବିଶ୍ୱବିଦ୍ୟାଳୟ ସଂସଦର ସଭ୍ୟ ଥିଲେ (୧୯୨୪-୧୯୨୬) । ୧୯୨୭ ମସିହା ଫେବୃଆରୀ ୮ ତାରିଖରେ କେନ୍ଦ୍ର ଆସେମ୍ବ୍ଲିରେ ଓଡ଼ିଆ ଭାଷା ଅଞ୍ଚଳଗୁଡ଼ିକର ଏକତ୍ରୀକରଣ ପ୍ରସ୍ତାବ ଆଗତ କରିଥିଲେ । ଗୋପବନ୍ଧୁଙ୍କ ମୃତ୍ୟୁ ପରେ ପଣ୍ଡିତ ନୀଳକଣ୍ଠ 'ସମାଜ' ସଂପାଦନା କରିଥିଲେ । ୧୯୩୦ ମସିହାରେ ପଣ୍ଡିତ ନୀଳକଣ୍ଠ ଇସ୍ତଫା ଦେଇଥିଲେ ଓ କାକଟପୁରରେ ଲବଣ ସତ୍ୟାଗ୍ରହରେ ଯୋଗଦାନ କରି କାରାବରଣ କରିଥିଲେ । ଜେଲ୍‌ରୁ ମୁକ୍ତିଲାଭ କରି ଡିସେମ୍ବର ମାସ ୩୦ ତାରିଖରେ ବନାରସଠାରେ ଅନୁଷ୍ଠିତ ଏସିଆ ଶିକ୍ଷା ସମ୍ମିଳନୀରେ ପ୍ରବନ୍ଧ ପାଠ କରିଥିଲେ ଓ ସେହି ବର୍ଷ ଓଡ଼ିଶା ସର୍ବଦଳୀୟ ସମ୍ମିଳନୀର ସଭାପତି ହୋଇଥିଲେ । ୧୯୩୨ ମସିହାରୁ ୧୯୩୩ ମସିହା ମଧ୍ୟରେ ପଣ୍ଡିତ ନୀଳକଣ୍ଠ ତିନିଥର ବ୍ରିଟିଶ ସରକାରଙ୍କ ଦ୍ୱାରା କାରାବରଣ କରିଥିଲେ । ୧୯୩୪ ମସିହାରେ ପଣ୍ଡିତ ନୀଳକଣ୍ଠ 'ନବଭାରତ' ପତ୍ରିକା ସଂପାଦନ ଓ ପ୍ରକାଶନ ଦାୟିତ୍ୱରେ ଥିଲେ । ୧୯୩୪ ମସିହାରୁ ୧୯୩୬ ମସିହା ପର୍ଯ୍ୟନ୍ତ ସେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ପଦ ଅଳଙ୍କୃତ କରିଥିଲେ । ୧୯୩୭ ମସିହାରେ ଓଡ଼ିଶାରେ କଂଗ୍ରେସ ଦଳର ବିଜୟ ହୋଇଥିଲା ଓ ପଣ୍ଡିତ ନୀଳକଣ୍ଠ ସରକାର ଗଠନରେ ନେତୃତ୍ୱ ନେଇଥିଲେ । ୧୯୩୮ ମସିହାରେ ଓଡ଼ିଶାରେ ବିଶ୍ୱବିଦ୍ୟାଳୟ ସ୍ଥାପନ ପାଇଁ ସରକାରୀ ସମିତିର ସଭାପତି ହୋଇଥିଲେ । ୧୯୩୮ ମସିହାରେ ସେ ଉତ୍କଳ କଂଗ୍ରେସ କମିଟିର ସଭାପତି ରୂପେ ନିର୍ବାଚିତ ହୋଇଥିଲେ । ଏହି ସମୟରେ ସେ ସୁଭାଷ ବୋଷଙ୍କ ସହିତ ଯୋଗଦାନ କରିଥିଲେ । ୧୯୪୦ ମସିହାରେ ପଣ୍ଡିତ ନୀଳକଣ୍ଠ ପ୍ରାଦେଶିକ କଂଗ୍ରେସ ସଭାପତି ପଦରୁ ଇସ୍ତଫା ଦେଇ 'ନବଭାରତ' ସଂପାଦନାକୁ ଅଗ୍ରାଧିକାର ପ୍ରଦାନ କରିଥିଲେ (୧୯୪୧) । ୧୯୪୨ ମସିହାରେ ପଣ୍ଡିତ ନୀଳକଣ୍ଠ ଦାସ କଂଗ୍ରେସ ଦଳ ତ୍ୟାଗ କରିଥିଲେ । ୧୯୫୧ ମସିହାରେ ନୀଳକଣ୍ଠଙ୍କୁ 'ଉତ୍କଳଗୁରୁ' ଉପାଧିରେ ଭୂଷିତ କରାଯାଇଥିଲା । ୧୯୫୨ ମସିହାରେ ପଣ୍ଡିତ ନୀଳକଣ୍ଠ 'ସ୍ୱାଧୀନ ଜନସଂଘ' ଦଳ ପ୍ରତିଷ୍ଠା ଓ ଏହି ଦଳର ନେତା ଭାବେ ସତ୍ୟବାଦୀରୁ ସଭ୍ୟ ରୂପେ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ୧୯୫୪ ମସିହାରେ ବିଶ୍ୱଭାରତୀ (ଶାନ୍ତିନିକେତନ)ରେ ଜଗନ୍ନାଥ ସଂସ୍କୃତି ଉପରେ ଭାଷଣ ଦେବା ସହିତ ସମ୍ବର୍ଦ୍ଧନା ଲାଭ କରିଥିଲେ । ୧୯୫୫ ମସିହାରେ ପଣ୍ଡିତ ନେହେରୁଙ୍କ

ଅନୁରୋଧକ୍ରମେ କଂଗ୍ରେସରେ ଯୋଗଦାନ କରିଥିଲେ । ଏହି ସମୟରେ ପଣ୍ଡିତ ନୀଳକଣ୍ଠଙ୍କୁ ସମ୍ମାନିତ ଡି.ଲିଟ୍ ଉପାଧି ଉତ୍କଳ ବିଶ୍ୱବିଦ୍ୟାଳୟ ତରଫରୁ ପ୍ରଦାନ କରାଯାଇଥିଲା । ସେ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରୋଚାନସେଲ୍‌ର ପଦ ମଧ୍ୟ ଅଳଙ୍କୃତ କରିଥିଲେ । ୧୯୫୭ ମସିହାରେ ପଣ୍ଡିତ ନୀଳକଣ୍ଠ କଂଗ୍ରେସ ପ୍ରାର୍ଥୀ ଭାବେ ସତ୍ୟବାଦୀ ନିର୍ବାଚନ ମଣ୍ଡଳୀରୁ ଅପ୍ରତିଦ୍ୱନ୍ଦୀ ଭାବେ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇଥିଲେ ଓ ଓଡ଼ିଶା ବିଧାନସଭାର ବାଚସ୍ପତି ପଦ ଗ୍ରହଣ କରିଥିଲେ । ୧୯୫୮ ମସିହାରେ ପଣ୍ଡିତ ନୀଳକଣ୍ଠ ଓଡ଼ିଶା ସାହିତ୍ୟ ଏକାଡ଼େମୀର ସଭାପତି ହୋଇଥିଲେ ଓ ସେହି ବର୍ଷ ଭାରତ ସରକାର (ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦ)ଙ୍କ ଦ୍ୱାରା ସରକାରୀ ବାସଭବନରେ 'ପଦ୍ମଭୂଷଣ ଉପାଧିରେ ତାଙ୍କୁ ଭୂଷିତ କରାଯାଇଥିଲା । ୧୯୬୨ ମସିହାରେ ପଣ୍ଡିତ ନୀଳକଣ୍ଠ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରୋଚାନସେଲ୍‌ର ପଦରୁ ଅବସର ଗ୍ରହଣ କରିଥିଲେ । ୧୯୬୩ ମସିହାରେ 'ଆତ୍ମଜୀବନୀ' ନିମନ୍ତେ ଭାରତୀୟ ସାହିତ୍ୟ ଏକାଡ଼େମୀ ପକ୍ଷରୁ ସମ୍ମାନ ପ୍ରଦାନ କରାଯାଇଥିଲା । ୧୯୬୭ ମସିହା ନଭେମ୍ବର ୬ ତାରିଖ ଦିନ ତାଙ୍କର ତିରୋଧାନ ଘଟିଥିଲା ।

ପଣ୍ଡିତ ନୀଳକଣ୍ଠ ଥିଲେ ସ୍ୱାଧୀନଚେତା । ସେ ବ୍ୟକ୍ତିଠାରୁ ନୀତିକୁ ବିଶେଷ ଗୁରୁତ୍ୱ ଦେଉଥିଲେ । ସେ ଥିଲେ ସ୍ପଷ୍ଟବାଦୀ । ଦେଶରେ ମହାମାରୀ ସମୟରେ ରୋଗୀସେବା, ବନ୍ୟା ସମୟରେ ଲୋକସେବା, ରାଜନୀତିରେ ବିଚକ୍ଷଣତା, ପତ୍ରିକା ସଂପାଦନରେ ଦକ୍ଷତା-ତାଙ୍କ ଦ୍ୱାରା ରଚିତ 'ପ୍ରଣୟିନୀ', 'ଖାରବେଳ' ଓ 'କୋଣାର୍କେ' ପ୍ରଭୃତି ଗ୍ରନ୍ଥ ତାହାର ଜ୍ୱଳନ୍ତ ଉଦାହରଣ ।

ପଣ୍ଡିତ ଉପାଧି ପ୍ରକୃତରେ ନୀଳକଣ୍ଠଙ୍କୁ ଶୋଭା ପାଇଥିଲା । ଆଜୀବନ ପାଣ୍ଡିତ୍ୟର ମହତ୍ତ୍ୱ ସେ ରକ୍ଷା କରିପାରିଥିଲେ । ଶାନ୍ତିନିକେତନରେ ତାଙ୍କୁ ଦେଖି ଟାଗୋର ଫେରି ଆସିଛନ୍ତି ବୋଲି ଲୋକେ କହୁଥିଲେ । ଉଜ୍ଜ୍ୱଳତମ, ଜ୍ଞାନଦୀପ୍ତିରେ ଭରା ଚକ୍ଷୁ ଦୁଇଟି ତାଙ୍କର ଉଜସ୍ୱିନୀ ପ୍ରତିଭାର ନିଛଙ୍କ ପ୍ରତିଛବି ଥିଲା । ପଣ୍ଡିତ ନୀଳକଣ୍ଠଙ୍କର ଗଦ୍ୟ ଶୈଳୀର ବୈଚିତ୍ର୍ୟ, ଶ୍ରୁତି ମାଧୁର୍ଯ୍ୟ, ମନୋଜ୍ଞ ଅଭିବ୍ୟକ୍ତି, ପ୍ରସାରଣ ଶୀଳତା ଓ ବହୁବିଧ ଗଠନ ପ୍ରବଣତାକୁ ସହଜରେ ଅନୁଭବ କରି ହେବ ।

ପଣ୍ଡିତ ନୀଳକଣ୍ଠ ଥିଲେ ଜଣେ ସଂସ୍କାରକ । 'ଆର୍ଯ୍ୟ ଜୀବନ'ରେ ନୀଳକଣ୍ଠ ଲେଖିଥିଲେ, 'ସମସ୍ତେ ନିଆଁ ଜାଳନ୍ତି, ନିଆଁ ଲିଭିଗଲେ ଫୁଙ୍କି ଦିଅନ୍ତି, ଫୁଙ୍କି ଦେଲେ ତାହା ପୁଣି ଜଳି ଉଠେ ।' ବାଲ୍ୟରୁ ସଂସ୍କାର ପ୍ରବୃତ୍ତି ନୀଳକଣ୍ଠଙ୍କ ରକ୍ତରେ ପ୍ରବାହିତ ହୋଇଥିଲା । ପଣ୍ଡିତ ନୀଳକଣ୍ଠଙ୍କର 'ସଂସ୍କୃତ ଓ ସଂସ୍କୃତି' ଗ୍ରନ୍ଥ ପଢ଼ିଲେ ତାଙ୍କର ପାଣ୍ଡିତ୍ୟ, କର୍ମପଟୁତା, ବିଦ୍ୟାନିଷ୍ଠା ଓ ସମାଜ କଲ୍ୟାଣ ହରିହର, ପୁଣ୍ୟଶ୍ଳୋକ ଈଶ୍ୱର ଚନ୍ଦ୍ର ବିଦ୍ୟାସାଗରଙ୍କଠାରୁ କୌଣସି ଗୁଣରେ କମ୍ ନଥିଲା ।

ଓଡ଼ିଆ ସମାଲୋଚନା ସାହିତ୍ୟର ସେ ହେଉଛନ୍ତି ଦିଗ୍‌ଦର୍ଶକ । ତାଙ୍କ ଦ୍ୱାରା ଲିଖିତ, ମନୋଜ୍ଞ ସମାଲୋଚନା ସାହିତ୍ୟ ମଧ୍ୟରେ 'ଲାବଣ୍ୟବତୀ' କାବ୍ୟ, ଫକୀରମୋହନ ଓ ଓଡ଼ିଆ ଉପନ୍ୟାସ ଇତ୍ୟାଦି ଉତ୍କୃଷ୍ଟ ।

ସଂସ୍କୃତ ଓ ଇଂରାଜୀ ଭାଷାରେ ନୀଳକଣ୍ଠଙ୍କର ଗଭୀର ଜ୍ଞାନ ଥିଲା । ଅନ୍ନଦାଶଙ୍କରଙ୍କ ଭାଷାରେ 'ନୀଳକଣ୍ଠ ଆଧୁନିକ ଉତ୍କଳର ସାଂସ୍କୃତିକ ଜୀବନର ଶ୍ରେଷ୍ଠ ପ୍ରତିନିଧି ।'

ପଣ୍ଡିତ ନୀଳକଣ୍ଠ ଯଥାର୍ଥରେ ନୀଳକଣ୍ଠ । ସାଧନାରେ ଏକନିଷ୍ଠତା, ଚିନ୍ତା ଓ ଚେତନାରେ ଶୁଦ୍ଧ ପବିତ୍ରତା, ଭାଷା ଓ କର୍ମରେ ଅପୂର୍ବ ସମନ୍ୱୟ ଏବଂ ଯୋଗୀ ଋଷି ପ୍ରତିମ ଏକାଗ୍ର ଚିତ୍ତବୃତ୍ତି ନୀଳକଣ୍ଠଙ୍କୁ କରିଛି ମହାନ-ମନୀଷୀ । କେବଳ ଶିକ୍ଷା ପ୍ରସାର ଓ ସାହିତ୍ୟ ସାଧନା କ୍ଷେତ୍ରରେ ନୁହେଁ, ସମାଜ ସଂସ୍କାର ଓ ବୈପ୍ଳବିକ ଚିନ୍ତାଧାରାରେ ନୀଳକଣ୍ଠ ଥିଲେ ଅନନ୍ୟ ଓ ଅଦ୍ୱିତୀୟ । ପଣ୍ଡିତ ନୀଳକଣ୍ଠ ଦାସ ଓଡ଼ିଆ ସାହିତ୍ୟର ଜଣେ ବହୁ ପ୍ରଶଂସିତ, ଜନପ୍ରିୟ ସ୍ରଷ୍ଟା ଥିଲେ । ପଣ୍ଡିତ ଗୋପବନ୍ଧୁଙ୍କ ସହକର୍ମୀ, ସତ୍ୟବାଦୀ ବନବିଦ୍ୟାଳୟର ପ୍ରବୀଣ ଶିକ୍ଷକ, ଓଡ଼ିଶାର ଶିକ୍ଷା ଓ ରାଜନୀତି କ୍ଷେତ୍ରରେ ଜଣେ ସ୍ୱନାମଧନ୍ୟ ମନୀଷୀ ଭାବେ ପଣ୍ଡିତ ନୀଳକଣ୍ଠ ସଦାସର୍ବଦା ଓଡ଼ିଶାର ଜନମାନସରେ ଚିର ସ୍ମରଣୀୟ ହୋଇ ରହିବେ ।

**ସହାୟକ ଗ୍ରନ୍ଥପଞ୍ଜୀ**


୧. ନୀଳକଣ୍ଠ ପରିକ୍ରମା, ଓଡ଼ିଆ ପୂଜ୍ୟପୂଜା ସଂସଦ ପ୍ରକାଶିତ, ଡିସେମ୍ବର, ୧୯୮୩ ।

୨. ଉତ୍କଳ ପ୍ରସଙ୍ଗ, ଅଗଷ୍ଟ ୨୦୦୨ (ଓଡ଼ିଶା ବିଧାନସଭା ଗବେଷଣା ସୂଚନା, ଗ୍ରନ୍ଥାଗାର ଓ ତାଲିମ ବିଭାଗ ସୌଜନ୍ୟରୁ) ।

୩. ନୀଳକଂଠ ଗ୍ରନ୍ଥାବଳୀ ପଣ୍ଡିତ ନୀଳକଣ୍ଠ ଦାସ (ପ୍ରଥମ ଖଣ୍ଡ), କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, ୧୯୭୩ ।



ସହକାରୀ ସୂଚନା ଅଧିକାରୀ
ରାଜ୍ୟ ସୂଚନା କେନ୍ଦ୍ର, ଜୟଦେବ ଭବନ
ଭୁବନେଶ୍ୱର

# ଜନ୍ମ ଶତବାର୍ଷିକରେ ଶ୍ରଦ୍ଧାଞ୍ଜଳି : ଭାରତରତ୍ନ ଜେ.ଆର୍.ଡି

ଗୁରୁକଲ୍ୟାଣ ମହାପାତ୍ର

**ଭା**ରତର ଅନ୍ୟତମ ପ୍ରସିଦ୍ଧ ଶିଳ୍ପ ସଂସ୍ଥା ଟାଟା ପକ୍ଷରୁ ଏଇ ୨୦୦୪ ବର୍ଷରେ ଏହାର ଦୁଇପ୍ରାଣ ପ୍ରତିଷ୍ଠାତାଙ୍କର ଶତବାର୍ଷିକ ଉତ୍ସବ ପାଳନ କରାଯାଉଛି । ଜଣେ ହେଲେ ଟାଟା ଶିଳ୍ପର ଆଦି ପ୍ରତିଷ୍ଠାତା ଜାମ୍‌ସେତଜୀ ନୁସେରୱାନିଜୀ ଟାଟା । ୧୯୦୪ ମସିହାରେ ତାଙ୍କର ଦେହାନ୍ତ ହୋଇଥିଲା । ତେଣୁ ଚଳିତ ବର୍ଷଟି ହେଉଛି ତାଙ୍କ ମୃତ୍ୟୁର ଏକ ଶତବର୍ଷ । ଟାଟା ଶିଳ୍ପ ଓ ଅନ୍ୟାନ୍ୟ ସାମାଜିକ ପ୍ରକଳ୍ପର ଆଉ ଜଣେ ପ୍ରତିଷ୍ଠାତା ହେଉଛନ୍ତି ଭାରତତ୍ନ ଜେ.ଆର୍.ଡି. ଟାଟା । ଶହେ ବର୍ଷ ପୂର୍ବେ, ଜୁଲାଇ ୨୯ ତାରିଖରେ ସେ ଜନ୍ମ ଗ୍ରହଣ କରିଥିଲେ । ଟାଟା ଶିଳ୍ପ କଂପାନୀ ଏହି ବର୍ଷସାରା ପ୍ରତି ମାସ ୨୯ ତାରିଖରେ ତାଙ୍କର ସ୍ୱତନ୍ତ୍ର ଉତ୍ସବ ପାଳନ କରିବାକୁ ସ୍ଥିର କରିଥିବା ଜଣାଯାଇଛି ।




ଆମ ଦେଶରେ ବୃହତ୍ ଶିଳ୍ପ ସଂସ୍ଥା ବୋଇଲେ ସାଧାରଣତଃ ଆଗେ ଟାଟାକୁ ବୁଝାଉଥିଲା । ଏବେ ଅବଶ୍ୟ ଉଇପ୍ରୋ, ରିଲାଏନ୍ସ, ବିର୍ଲା ଓ ଇନ୍‌ଫୋସିସ୍ ପ୍ରଭୃତି ବିଭିନ୍ନ ବଡ଼ ବଡ଼ ଶିଳ୍ପ ସଂସ୍ଥାଗୁଡ଼ିକର ଅଭ୍ୟୁଦୟ ଘଟିଛି । ପ୍ରତିଯୋଗିତାର ବଜାରରେ ଅନ୍ୟାନ୍ୟ ବୃହତ୍ ଶିଳ୍ପ ସଂସ୍ଥାଗୁଡ଼ିକର ଅଭିବୃଦ୍ଧି ଓ ଅଗ୍ରଗତି ପରିଲକ୍ଷିତ ହୋଇଥିଲେ ମଧ୍ୟ ଟାଟା ଶିଳ୍ପ ସଂସ୍ଥାର କଳେବର ବୃଦ୍ଧି ନପାଉ ପଛେ ମାନ ଅନ୍ତତଃ ହ୍ରାସ ପାଇ ନାହିଁ । ସାଧାରଣରେ ଏ ପର୍ଯ୍ୟନ୍ତ ମଧ୍ୟ ବିଶ୍ୱାସ ଯେ ସରକାରୀ ଚାକିରି ପରି ଟାଟା କଂପାନୀର ଚାକିରି ସୁରକ୍ଷିତ କେବଳ ନୁହେଁ, ଦରମା ଦୃଷ୍ଟିରୁ ମଧ୍ୟ ଉତ୍ତମ ।

ଟାଟା ପ୍ରଥମେ ଏ ଦେଶରେ ଇସ୍ପାତ ଶିଳ୍ପ ଆରମ୍ଭ କରିଥିଲେ ମଧ୍ୟ ଏହାର ପ୍ରତିଷ୍ଠାତାମାନଙ୍କର ଲକ୍ଷ୍ୟ କେବଳ ଧନ ଉପାର୍ଜନ ନଥିଲା । ଶିଳ୍ପ ଓ ବାଣିଜ୍ୟର ବିକାଶ ସହିତ ବିଭିନ୍ନ ସାମାଜିକ କ୍ଷେତ୍ରକୁ ଉନ୍ନତ କରିବା ମଧ୍ୟ ସେମାନଙ୍କର ଉଦ୍ଦେଶ୍ୟ ଥିଲା । ଟାଟା ଇସ୍ପାତ ଶିଳ୍ପର ପ୍ରାଣ ପ୍ରତିଷ୍ଠାତା ସ୍ୱର୍ଗୀୟ ଜେ.ଏନ୍. ଟାଟା ସେଥିପାଇଁ ଯଥାର୍ଥରେ କହିଥିଲେ - 'ଆର୍ଥନୀତିକ ସ୍ୱାଧୀନତା ବ୍ୟତିରେକେ ରାଜନୀତିକ ସ୍ୱାଧୀନତାର କିଛି ଅର୍ଥ ନାହିଁ ।' ତେଣୁ ଇସ୍ପାତ ଶିଳ୍ପ ପ୍ରତିଷ୍ଠା ପରେ ବାଙ୍ଗାଲୋରଠାରେ ଯେଉଁ ଇଣ୍ଡିଆନ ଇନ୍‌ଷ୍ଟିଚ୍ୟୁଟ ଅଫ୍ ସାଏନ୍ସ (ଭାରତୀୟ ବିଜ୍ଞାନ ପ୍ରତିଷ୍ଠାନ) ସେ ପ୍ରତିଷ୍ଠା କରି ଯାଇଛନ୍ତି, ଭାରତରେ ବିଜ୍ଞାନ ଶିକ୍ଷା ଓ ଗବେଷଣା କ୍ଷେତ୍ରରେ ତାହାର ସ୍ଥାନ ଅତି ଉଚ୍ଚରେ । ଓଡ଼ିଶା ସମେତ ବିଭିନ୍ନ ରାଜ୍ୟରେ ପ୍ରାକୃତିକ ବିପର୍ଯ୍ୟୟ ସମୟରେ ଟାଟା ସଂସ୍ଥାର ସାହାଯ୍ୟ ଓ ସହଯୋଗ ମଧ୍ୟ ଉଲ୍ଲେଖନୀୟ ।

ଇସ୍ପାତ ଶିଳ୍ପରୁ ଜୀବନ ଆରମ୍ଭ କରି ଟାଟା ସଂସ୍ଥା ଶକ୍ତି ଉତ୍ପାଦନ ସହିତ ମୋଟର ଗାଡ଼ି ଶିଳ୍ପ ଓ ଟେଲି ଯୋଗାଯୋଗ କ୍ଷେତ୍ର ପ୍ରଭୃତି ବିଭିନ୍ନ ସ୍ଥାନକୁ ତାଙ୍କର ବାଣିଜ୍ୟ ବ୍ୟବସାୟର ଶାଖା ପ୍ରସାରିତ କରି ସାଫଲ୍ୟ ହାସଲ କରିଛନ୍ତି । ହେଲେ ମଧ୍ୟ, ମୂଳ ଇସ୍ପାତ ଶିଳ୍ପର ଉନ୍ନତି ସାଧନ ନିମନ୍ତେ ସେହି ସଂସ୍ଥା ସର୍ବଦା ଧ୍ୟାନ ଦେଇ ଆସିଛି । ସମଗ୍ର ବିଶ୍ୱରେ ଇସ୍ପାତ ଶିଳ୍ପ ପ୍ରତିଷ୍ଠା କ୍ଷେତ୍ରରେ ଟାଟା ସଂସ୍ଥା ସର୍ବ କନିଷ୍ଠ ହୋଇପାରେ, ମାତ୍ର ସର୍ବତ୍ର ଏହାର ସୁନାମ ରହିଛି । ଚଳିତ ବର୍ଷ ଏହି ସଂସ୍ଥା ୪.୩ ନିୟୁତ ଟନ୍‌ର ଇସ୍ପାତ ଉତ୍ପାଦନ କରିବାକୁ ଲକ୍ଷ୍ୟଧାର୍ଯ୍ୟ ରଖିଛି । ଭାରତୀୟ ଅର୍ଥନୀତିର ଏବେ ଭଲ ଅବସ୍ଥା ଥିବାରୁ ଏହାର ଅଭିବୃଦ୍ଧି ପରିଲକ୍ଷିତ ହେଉଥିବା ବେଳେ ଇସ୍ପାତ ଚାହିଦା ଥିବାରୁ ଟାଟା ଶିଳ୍ପ ସଂସ୍ଥା ଏବେ ଇସ୍ପାତ ଉତ୍ପାଦନକୁ ଅଧିକ ସକ୍ରିୟ ଓ ତ୍ୱରାନ୍ୱିତ କରିବାକୁ ଉଦ୍ୟମ କରୁଛି ବୋଲି ଟାଟା ଷ୍ଟିଲ କର୍ପୋରେଟ୍ କମ୍ୟୁନିକେସନରେ ମୁଖ୍ୟ ସଂଜୟ ଚୌଧୁରୀଙ୍କ ବକ୍ତବ୍ୟରୁ ଜଣାଯାଇଛି । ଆଗାମୀ ୨୦୦୭-୦୮ ଆର୍ଥିକ ବର୍ଷ ସୁଦ୍ଧା କଂପାନୀର ଏହି ଉତ୍ପାଦନ କ୍ଷମତାକୁ ଦ୍ୱିଗୁଣିତ କରାଯାଇ ୭.୫ ବା ୮ ନିୟୁତ ଟନ୍‌କୁ ବୃଦ୍ଧି କରାଯିବାକୁ ଲକ୍ଷ୍ୟଧାର୍ଯ୍ୟ ରହିଛି । ଜାମସେଦପୁରଠାରେ ଏହି ଉତ୍ପାଦନ ବୃଦ୍ଧି ସମ୍ଭବ ନହେଲେ, ଅନ୍ୟ ରାଷ୍ଟ୍ରରେ ଇସ୍ପାତ ଉତ୍ପାଦନ ପାଇଁ ବ୍ୟବସ୍ଥା କରିବାକୁ ଏବେ ସେହି ଶିଳ୍ପ ସଂସ୍ଥା ଉଦ୍ୟମ କରୁଛି ।

ଏକ ଶତବର୍ଷ ପରେ, ଟାଟାର ପ୍ରତିଷ୍ଠାତାମାନଙ୍କ ସ୍ୱପ୍ନକୁ ସାକାର କରି ଟାଟା ଶିଳ୍ପ ସଂସ୍ଥା ତାହାର ମୂଳ ଶିଳ୍ପ ଇସ୍ପାତ ଉତ୍ପାଦନକୁ ଆନ୍ତର୍ଜାତୀୟ ସ୍ତରରେ ଉପନୀତ କରାଇ ସୁନାମ ଅର୍ଜନ କରିବାକୁ ଉଦ୍ୟମ ଜାରି ରଖିଛି । ଚାହିଦା ଅନୁଯାୟୀ ଉତ୍ପାଦନ ବୃଦ୍ଧି ସମ୍ଭବ ନହୋଇ ମଧ୍ୟ ଏହି ଶିଳ୍ପ ସଂସ୍ଥା ଯେ ବିଭିନ୍ନ ଆନ୍ତର୍ଜାତୀୟ ପ୍ରତିଯୋଗିତାର ସମ୍ମୁଖୀନ ହୋଇପାରୁଛି, ଅର୍ଥାତ୍ ବିଭିନ୍ନ ମୋଟର କଂପାନୀମାନଙ୍କୁ ଭଲ ଭାବେ ତାହାର ଉତ୍ପାଦିତ ଇସ୍ପାତ ବିକ୍ରୀ କରି ପାରୁଛି, ତାହା ହିଁ ବଡ଼ କଥା । ମାଲେସିଆର ପ୍ରସିଦ୍ଧ ମୋଟର କାର୍ କଂପାନୀ, ପ୍ରୋଟନ୍ ସମେତ ଅନେକ ବହୁରାଷ୍ଟ୍ରୀୟ କଂପାନୀ ଟାଟା ଇସ୍ପାତ ଉପରେ ଏବେ ନିର୍ଭରଶୀଳ ହୋଇପଡ଼ିଛନ୍ତି । ମାରୁତି, ହୁଣ୍ଡାଇ, ହୋଣ୍ଡା, ଫୋର୍ଡ଼ ଇଣ୍ଡିଆ, ଟୋୟଟା, ଟାଟା ମୋଟରସ୍ ଓ ବାଜାଜ ପ୍ରଭୃତି ଖ୍ୟାତନାମା ମୋଟର କଂପାନୀଗୁଡ଼ିକ ଟାଟା ଇସ୍ପାତ ଉପରେ ନିର୍ଭର କରି ସେମାନଙ୍କର ବାଣିଜ୍ୟ ବୃଦ୍ଧି କରି ଆସୁଥିବା ଜଣାଯାଇଛି ।

ଲୁହା ଓ ଇସ୍ପାତ ଶିଳ୍ପ ପ୍ରତିଷ୍ଠା କରିବାକୁ ଜାମସେଦ୍‌ଜୀ କାହିଁକି ଇଚ୍ଛା କରିଥିଲେ, ସେ ବିଷୟରେ ସାମାନ୍ୟ ସୂଚନା ଦେଲେ ଯଥେଷ୍ଟହେବ । ଜର୍ମାନର ରିଟର୍ ଭୋନ୍ ସ୍ୱାର୍ଜ ନାମକ ଜଣେ ଭୂତତ୍ତ୍ୱବିତ୍ ୧୮୮୨ ମସିହାରେ ଯେଉଁ ପ୍ରାମାଣିକ ଦଲିଲଟିଏ ରଖି ଯାଇଥିଲେ, ତାହାକୁ ଜେ,ଏନ୍. ଟାଟା ପରୀକ୍ଷା କରି ଜାଣିପାରିଲେ ଯେ ତତ୍କାଳୀନ ଭାରତର ନାଗପୁରସ୍ଥିତ ଚନ୍ଦା ଜିଲ୍ଲାରେ ଲୁହାପଥର ଗଚ୍ଛିତ ରହିଥିଲା । ମାତ୍ର ଦଲିଲ ସୂଚୀତ ସେହି ସ୍ଥାନରେ ଉନ୍ନତମାନର କୋଇଲା ନଥିଲା କିମ୍ବା ପ୍ରଚୁର ପରିମାଣରେ ଲୁହା ପଥର ମଧ୍ୟ ଗଚ୍ଛିତ ନଥିଲା ବୋଲି ଅନୁସନ୍ଧାନରୁ ଜଣାପଡ଼ିବାରୁ ଟାଟାଜୀ ସେହି ସ୍ଥାନ ପରିତ୍ୟାଗ କରି ଅନ୍ୟତ୍ର ଶିଳ୍ପ ସମ୍ଭାବନା ଥିବା ବିଷୟରେ ମନୋନିବେଶ କରିଥିଲେ । ୧୯୦୩-୦୪ରେ ପ୍ରସିଦ୍ଧ ଭୂତତ୍ତ୍ୱବିତ୍ ସି.ଏମ୍. ଲେଲ୍‌ଡଙ୍କ ସମେତ ଜାମସେତ୍‌ଜୀଙ୍କ ଜ୍ୟେଷ୍ଠପୁତ୍ର ଦୋରାବଜୀ ଟାଟାଙ୍କୁ ନେଇ ଗଠିତ ଏକ ଦଳ ଏହାପରେ ନାଗପୁରଠାରୁ ୨୨୪ କିଲୋମିଟର ଦୂରବର୍ତ୍ତୀ ଡରଗ୍ ସ୍ଥାନରେ ପହଞ୍ଚି ଲୁହାପଥରର ସନ୍ଧାନ ଆରମ୍ଭ କରିଥିଲେ । ସେଠାରେ ପ୍ରଚୁର ପରିମାଣରେ ଲୁହାପଥର ଗଚ୍ଛିତ ଥିବାର ସନ୍ଧାନ ମିଳିଥିଲେ ମଧ୍ୟ ଜଳାଭାବ କାରଣରୁ ଶିଳ୍ପ ପ୍ରତିଷ୍ଠା ପାଇଁ ସେହି ସ୍ଥାନ ମଧ୍ୟ ବର୍ଜନ କରାଯାଇଥିଲା । (ଆଶ୍ଚର୍ଯ୍ୟ ଯେ ଏହାର ପ୍ରାୟ ୫୦ ବର୍ଷ ପରେ ସେଠାରେ ଭିଲାଇ ଇସ୍ପାତ କାରଖାନା ଆରମ୍ଭ ହୋଇଥିଲା ।)

ପ୍ରକୃତରେ ୧୯୦୭ ମସିହା ଡିସେମ୍ବର ମାସରେ ହିଁ ଜାମସେଦ୍‌ଜୀଙ୍କ ଶିଳ୍ପ ପ୍ରତିଷ୍ଠାର ସ୍ୱପ୍ନ ସାକାର ହୋଇଥିଲା । ଭୂତତ୍ତ୍ୱବିତ୍ ପି.ଏନ୍. ବୋଷଙ୍କ ପରାମର୍ଶକ୍ରମେ ସୁବର୍ଣ୍ଣରେଖା ଓ ଖରକାଇ ନଦୀର ସଂଗମସ୍ଥଳୀରେ ସାକଚୀ ନାମକ ଏକ ଗ୍ରାମକୁ ଉତ୍କୃଷ୍ଟ ସ୍ଥାନ ଭାବରେ ନିରୂପିତ କରାଗଲା । ସେହି ଗ୍ରାମର ଚତୁଃପାର୍ଶ୍ୱ ଘଞ୍ଚ ଜଙ୍ଗଲ ପରିପୂର୍ଣ୍ଣ ଥିଲା ଏବଂ ସେଠାରୁ ମାତ୍ର କେତେଗୋଟି କିଲୋମିଟର ଦୂରରେ ଅବସ୍ଥିତ କାଳିମାଟି ରେଳଷ୍ଟେସନ । ୧୯୦୮ ଫେବୃଆରୀ ୭ରେ ଜାମସେଦ୍‌ଜୀ ଇସ୍ପାତ କାରଖାନାର ନିର୍ମାଣ ପ୍ରକ୍ରିୟା ଆରମ୍ଭ କରାଇବା ପରେ ୧୯୧୨ ମସିହା ଫେବୃଆରୀ ମାସରେ ଇସ୍ପାତ କାରଖାନାରୁ ଉତ୍ପାଦନ ଆରମ୍ଭ ହୋଇଥିଲା । ଏହାପରେ ସେହି ବନ୍ୟ ପରିବେଶ ପରିପୂର୍ଣ୍ଣ ଓ ଆଦିବାସୀ ଅଧ୍ୟୁଷିତ ଆକର୍ଷଣହୀନ ସ୍ଥାନରେ ଗଢ଼ି ଉଠିଥିଲା ଯୋଜନାବଦ୍ଧ ସୁନ୍ଦର ସହର । ୧୯୧୯ରେ ଏହି ସାକ୍‌ଚୀ ସହରର ନାମ ବଦଳିଯାଇ ହୋଇଥିଲା ଜାମସେଦପୁର । ୧୯୧୦ରେ ଏହି ସହର ଆରମ୍ଭ ହେଲାବେଳେ ଏହାର ଜନସଂଖ୍ୟା ଥିଲା ମାତ୍ର ୬,୦୦୦ । ଝାଡ଼ଖଣ୍ଡ ରାଜ୍ୟର ପୂର୍ବ ସିଂହଭୂମ ଜିଲ୍ଲା ଅନ୍ତର୍ଗତ ଏହି ଜାମସେଦପୁର ସହରର ଜନସଂଖ୍ୟା ଏବେ ସାତ ଲକ୍ଷ ଅତିକ୍ରମ ହେବା ଉପରେ । ଦିଲ୍ଲୀ, ମୁମ୍ବାଇ, ଚେନାଇ ବା କୋଲକାତା ପରି ଏହି ସହର ମହାନଗରୀର ମାନ୍ୟତା ପାଇ ନଥିଲେ ହେଁ ଏହାର ପ୍ରତିଷ୍ଠାତାଙ୍କ ଇଚ୍ଛାନୁଯାୟୀ ଏହା ଏକ ଉନ୍ନତମାନର ସମୃଦ୍ଧ ସହରରେ ପରିଣତ ହୋଇଛି । ପରିବେଶର ପ୍ରଯତ୍ନ ଏହି ସହରର ଅନ୍ୟତମ ବୈଶିଷ୍ଟ୍ୟ । ସହରବାସୀଙ୍କୁ ଯେପରି ସଦାସର୍ବଦା ସ୍ୱଚ୍ଛ ଓ ଶୁଦ୍ଧ ପାନୀୟ ଜଳ ଯୋଗାଇ ଦିଆଯାଇଥାଏ, ତାହା ଅନ୍ୟତ୍ର ସମ୍ଭବ ହୋଇଛି କି ନାହିଁ କହି ହେଉନାହିଁ । ବାର୍ଷିକ ପ୍ରାୟ ଲକ୍ଷେ ୨୦ ହଜାର ଟନ୍ ଓଜନର ଆବର୍ଜନାକୁ ଏହି ସହରରୁ ଦୂରକୁ ସ୍ଥାନାନ୍ତର କରାଯାଇପାରୁଛି । ସହରର ରକ୍ଷଣାବେକ୍ଷଣ ଓ ସୌନ୍ଦର୍ଯ୍ୟ ବୃଦ୍ଧି ଲାଗି ଟାଟା ଶିଳ୍ପ ସଂସ୍ଥା ବାର୍ଷିକ ପ୍ରାୟ ୧୩୯ କୋଟି ଟଙ୍କା ବ୍ୟୟ କରୁଥିବା ଜଣାଯାଇଛି । ସମ୍ଭବତଃ ଏହିସବୁ କାରଣରୁ ଏ ସହରର ଲୋକେ ଅନ୍ୟାନ୍ୟ ବଡ଼ ସହରକୁ ଯାଇ ବସବାସ କରିବାକୁ ଆଗ୍ରହ ପ୍ରକାଶ କରନ୍ତି ନାହିଁ ।

ଟାଟା ଶିଳ୍ପ ସମୂହର ଅଭିବୃଦ୍ଧି ଓ ବିକାଶ କ୍ଷେତ୍ରରେ ଜେ.ଆର୍.ଡି. ଟାଟାଙ୍କର ଅବଦାନ ଅବିସ୍ମରଣୀୟ । ତାଙ୍କୁ ଯେତେବେଳେ ବୟସ ୩୪, ସେତେବେଳେ ସେ ଏହି ବିଶାଳ ଟାଟା ଶିଳ୍ପ ସାମ୍ରାଜ୍ୟର ଅଧ୍ୟକ୍ଷ ଦାୟିତ୍ୱ ସମ୍ଭାଳି ଥିଲେ । ପ୍ରକୃତରେ ଅନ୍ୟାନ୍ୟ ଶିଳ୍ପପତି ଓ ବ୍ୟବସାୟୀଙ୍କଠାରୁ ସେ ଥିଲେ ଭିନ୍ନ ଧରଣର । ନୈତିକତା ହିଁ ତାଙ୍କର ଅନ୍ୟତମ ଭୂଷଣ ଥିଲା । ସେ ଥିଲେ ଭାରତର ପ୍ରଥମ ଶିଳ୍ପପତି ଯାହାଙ୍କୁ ଭାରତରତ୍ନ ଉପାଧି ପ୍ରଦାନ କରାଯାଇଥିଲା । ଜେ.ଆର୍.ଡି.ଙ୍କ ଜୀବନକୁ ଭିତ୍ତି କରି ଶ୍ରୀ ଆର୍.ଏମ୍. ଲାଲା ଏକ ଉପାଦେୟ ପୁସ୍ତକ ରଚନା କରିଛନ୍ତି । ପୁସ୍ତକଟିର ନାମ ହେଉଛି, Beyond the Last blue Mountain, J.R.D. Tata (ନୀଳ ପର୍ବତର ଆରପଟେ, ଜେ.ଆର୍.ଡି. ଟାଟା) ଏହି ପୁସ୍ତକଟି ପ୍ରକାଶ କରିଛନ୍ତି ଭାଇକିଙ୍ଗ୍ ପ୍ରକାଶନ ସଂସ୍ଥା । ଏଥିରେ ଜେ.ଆର୍.ଡି.ଙ୍କର ଘଟଣାବହୁଳ ଜୀବନର ବହୁ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ସନ୍ନିବିଷ୍ଟ । ଏହି ଜୀବନୀ ଅନୁଧ୍ୟାନ କଲେ ମନେ ହୋଇଥାଏ ଯେ ଶିଳ୍ପ ଓ ବ୍ୟବସାୟ ଲବ୍ଧ ଅର୍ଥ ତାଙ୍କୁ କେବେ ହେଲେ ଆକୃଷ୍ଟ କରିପାରିନାହିଁ ।

ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ସ୍ୱର୍ଗୀୟ ଜବାହରଲାଲ ନେହେରୁଙ୍କ ସହିତ ଜେ.ଆର୍.ଡିଙ୍କ ସଂପର୍କ ଅତି ନିବିଡ଼ ଥିଲା ।

ଜେ.ଆର୍.ଡିଙ୍କ ବୟସ ଯେତେବେଳେ ୨୦ ବର୍ଷ, ନେହେରୁଙ୍କ ବୟସ ସେତେବେଳେ ୩୬ ବର୍ଷ । ଜବାହରଲାଲଙ୍କ ପିତା ମୋତିଲାଲ ନେହେରୁ ଯେତେବେଳେ ବମ୍ବେ (ଏବର ମୁମ୍ବାଇ) ଯାଉଥିଲେ, ସେତେବେଳେ ସେ ଜେ.ଆର୍.ଡି.ଙ୍କ ପିତା ଆର.ଡି. ଟାଟାଙ୍କ ଘରେ ରହୁଥିଲେ । ମୋତିଲାଲଙ୍କ ସହିତ ଜବାହର ଓ ତାଙ୍କର ଭଗିନୀ ବିଜୟଲକ୍ଷ୍ମୀ ମଧ ଯାଉଥିଲେ । ସ୍ୱାଧୀନତା ପ୍ରାପ୍ତିର ୨୦ ବର୍ଷର ପୂର୍ବରୁ ନେହେରୁ ଓ ଜେ.ଆର୍.ଡିଙ୍କ ମଧ୍ୟରେ ବନ୍ଧୁତା ଘନିଷ୍ଠ ହୋଇଯାଇଥିଲା - ଯାହାକି ଅତୁଟ ରହିଥିଲା ନେହେରୁଙ୍କର ଜୀବନାବସାନ ଘଟିବା ପର୍ଯ୍ୟନ୍ତ । ଜଣେ ଥିଲେ ରାଜନୀତିଜ୍ଞ ଓ ଅନ୍ୟ ଜଣକ ଥିଲେ ବ୍ୟବସାୟୀ । ଉଭୟଙ୍କ ମଧ୍ୟରେ ପତ୍ରାଳାପ ମଧ୍ୟ ଚାଲିଥାଏ । ମାତ୍ର ବନ୍ଧୁତା ବ୍ୟକ୍ତିଗତ ସ୍ତରରେ ସୀମିତ ଥିଲା । ପରସ୍ପର ମଧ୍ୟରେ ରାଜନୀତି ବା ବ୍ୟବସାୟକୁ ନେଇ କେହି କେବେ ପ୍ରାୟ ନିନ୍ଦା କରିନାହାନ୍ତି । ଦେଶ ବା ଦେଶବାସୀଙ୍କ ସ୍ୱାର୍ଥରକ୍ଷା ପାଇଁ ଉଭୟଙ୍କ ମଧ୍ୟରେ ଅନେକ ଆଲୋଚନା ମଧ ଫଳପ୍ରଦ ହୋଇଛି । ନେହେରୁ ଜେ.ଆର୍.ଡିଙ୍କୁ ସବୁବେଳେ 'ଜେ' ବୋଲି ସଂକ୍ଷେପରେ ସମ୍ବୋଧନ କରି ଆସୁଥିଲେ । ୧୯୪୮ ମସିହାରେ ପ୍ୟାରିସଠାରେ ଜାତିସଂଘର ଏକ ଅଧିବେଶନରେ ଭାରତୀୟ ଦଳର ପ୍ରତିନିଧି ଭାବେ ଯୋଗ ଦେବା ଲାଗି ନେହେରୁ ତାଙ୍କୁ ନିମନ୍ତ୍ରଣ କରିଥିଲେ । ବିଜୟଲକ୍ଷ୍ମୀ ପଣ୍ଡିତ ସେହି ଭାରତୀୟ ପ୍ରତିନିଧି ଦଳର ନେତୃତ୍ୱ ନେଇଥିଲେ । ଜେ.ଆର୍.ଡିଙ୍କର ସେଠାରେ ଉଲ୍ଲେଖନୀୟ ଭୂମିକା ପ୍ରଶଂସିତ ହୋଇଥିଲା । ମାତ୍ର ୧୯୪୯ରେ ନେହେରୁ ଜାତିସଂଘର ଅନ୍ୟ ଏକ ଅଧିବେଶନକୁ ଜେ.ଆର୍.ଡି.ଙ୍କୁ ନିମନ୍ତ୍ରଣ କରିବାରୁ ସେ ନମ୍ରତାର ସହିତ ସେହି ଅଧିବେଶନରେ ଯୋଗଦେବାକୁ ନିଜର ଅକ୍ଷମତା ପ୍ରକାଶ କରିଥିଲେ । ତାଙ୍କର ଯୁକ୍ତି ଥିଲା- ଭାରତରେ ଏତେ କାମ କରିବାକୁ ଅଛି ଯେ ଅଯଥା ସେହି ଅଧିବେଶନରେ ବସି ରହି ସେ ସମୟ ନଷ୍ଟ କରିବାକୁ ଚାହାନ୍ତି ନାହିଁ ।

୧୯୮୬ରେ ଇଂରାଜୀ 'ଇଣ୍ଡିଆ ଟୁଡ଼େ' ପତ୍ରିକାକୁ ସାକ୍ଷାତକାର ଦେଇ ଜେ.ଆର୍.ଡି. କହିଥିଲେ ଯେ ସେ ନେହେରୁଙ୍କର ଜଣେ ଉତ୍ତମ ବନ୍ଧୁ ଥିଲେ । ପ୍ରଧାନମନ୍ତ୍ରୀ ନେହେରୁ ତାଙ୍କୁ ବିଶ୍ୱାସ ମଧ କରୁଥିଲେ । ଅନ୍ୟପକ୍ଷରେ ସେ ମଧ ନେହେରୁଙ୍କୁ ବିଭିନ୍ନ କାର୍ଯ୍ୟ ପାଇଁ ପ୍ରଶଂସା କରୁଥିଲେ । ଏସବୁ ସତ୍ତ୍ୱେ ସେ ନେହେରୁଙ୍କର ସମସ୍ତ ଆର୍ଥିକ ବା ବୈଦେଶିକ ନୀତିକୁ ସମର୍ଥନ କରିପାରୁ ନଥିଲେ । ଏହି ବକ୍ତବ୍ୟରୁ ଜେ.ଆର୍.ଡି.ଙ୍କ ନିର୍ଭୀକତାର ସ୍ପଷ୍ଟ ସୂଚନା ମିଳିଥାଏ ।

ରାଷ୍ଟ୍ରଗଠନ ପ୍ରକ୍ରିୟାରେ ନେହେରୁଙ୍କ ବ୍ୟତୀତ ରାଜଗୋପାଳାଚାରୀ ବା ଜୟପ୍ରକାଶ ନାରାୟଣଙ୍କୁ ମଧ ଜେ.ଆର୍.ଡି. ସାହାଯ୍ୟ କରି ଆସୁଥିଲେ । ଟାଟା ଗ୍ରୁପ୍‌ର ଅଧ୍ୟକ୍ଷ ଥିବା ସମୟରେ ସେ ନିଜର ଶିଳ୍ପ ବ୍ୟବସାୟର ଦେଖାଶୁଣା କରିବା ସଂଗେସଂଗେ ବହୁ ଜନହିତକର କାର୍ଯ୍ୟରେ ନିଜର ନିପୁଣତା ପ୍ରଦର୍ଶନ କରିଆସିଥିଲେ । ତାଙ୍କରି ନିର୍ଦ୍ଦେଶରେ ୧୯୭୯ରେ ଟାଟା ଷ୍ଟିଲ ରୁରାଲ ଡେଭେଲପମେଣ୍ଟ ସୋସାଇଟି ଗଠିତ ହୋଇଥିଲା । ମହାତ୍ମା ଗାନ୍ଧୀଙ୍କ ପରିକଳ୍ପିତ ଗ୍ରାମ ଉନ୍ନୟନରେ ମହତ କାର୍ଯ୍ୟ ଏହି ସୋସାଇଟି ହାତକୁ ନେଇଥିଲେ । ଆରମ୍ଭରୁ ୩୨ଟି ଗ୍ରାମର ଉନ୍ନୟନ ଲାଗି ଉଦ୍ୟମ କରିଥିବା ଏହି ସୋସାଇଟି ଏବେ କେବଳ ଝାଡ଼ଖଣ୍ଡ ରାଜ୍ୟରେ ନୁହେଁ, ବିହାର ଓ ଓଡ଼ିଶା ପରି ପଡ଼ୋଶୀ ରାଜ୍ୟର ୭୦୦ଟି ଗ୍ରାମର ବିକାଶ ପାଇଁ ପଦକ୍ଷେପ ନେଇଥିବା ଜଣାଯାଇଛି । ଜେ.ଆର୍.ଡି.ଙ୍କ ପ୍ରେରଣାରେ ମଧ ଟାଟା ଷ୍ଟିଲ ଟ୍ରାଇବାଲ କଲଚରାଲ ସୋସାଇଟି ଗଠିତ ହୋଇ ଏହା ଜରିଆରେ ପ୍ରାୟ ୫୨ଟି ଗ୍ରାମ ଓ ଚାରିଟି ସହରାଞ୍ଚଳ ବସ୍ତିମାନଙ୍କରେ ଆଦିବାସୀ ଓ ହରିଜନମାନଙ୍କର ଯାବତୀୟ ସମସ୍ୟାର ସମାଧାନ ପାଇଁ କାର୍ଯ୍ୟ ଚାଲିଥିବା ଜଣାଯାଇଛି ।

ଡି.-୧୦/୫
ୟୁନିଟ୍-୮, ଭୁବନେଶ୍ୱର-୧୨



ପଲ୍‌ସ୍ ପୋଲିଓ ଅଭିଯାନ

# ମତ୍ସ୍ୟ ସଂପଦର ବିକାଶ - ଏକ ଦୃଷ୍ଟିପାତ

ସୌରଜିତ ଦାସ

ଓଡ଼ିଶା ଏକ ପଛୁଆ ରାଜ୍ୟ ହୋଇଥିଲେ ମଧ୍ୟ ଏହାର ପ୍ରାକୃତିକ ସଂପଦ ଭରା ବନ୍ୟ ସଂପଦଗୁଡ଼ିକର ଉପଯୁକ୍ତ ବିନିଯୋଗ କରାଯାଇ ପାରିଲେ ଓଡ଼ିଶା ନିଶ୍ଚିତ ଭାବେ ଏକ ପ୍ରଗତିଶୀଳ ରାଜ୍ୟରେ ପରିଣତ ହୋଇପାରିବ । ଏଥିରେ ମୋ' ସହିତ ସମସ୍ତେ ଏକମତ ହେବେ, ଏଥିରେ ସନ୍ଦେହ ନାହିଁ ।

ନୂତନ ଶତାବ୍ଦୀର ପ୍ରାରମ୍ଭରୁ ଶ୍ରୀ ନବୀନ ପଟ୍ଟନାୟକଙ୍କ ନେତୃତ୍ୱରେ ଗଠିତ ସରକାର ବହୁ ବାଧାବିଘ୍ନର ସମ୍ମୁଖୀନ ହୋଇଥିଲେ ମଧ୍ୟ ରାଜ୍ୟବାସୀଙ୍କୁ ଏକ ସ୍ୱଚ୍ଛ, ଉତ୍ତରଦାୟୀ ତଥା ଲୋକାଭିମୁଖୀ ପ୍ରଶାସନ ଯୋଗାଇ ଦେଇ ଓଡ଼ିଶାକୁ ଏକ ସମୃଦ୍ଧ ରାଜ୍ୟରେ ପରିଣତ କରିବା ପାଇଁ ପ୍ରୟାସ ଜାରି ରଖିଛନ୍ତି । ରାଜ୍ୟରେ ଜନସାଧାରଣଙ୍କ ଆର୍ଥିକ ଓ ବିଭିନ୍ନ ଉନ୍ନୟନମୂଳକ ଯୋଜନା ଦ୍ୱାରା ହାସଲ ହୋଇଥିବା ପ୍ରଗତି ଓ ସେମାନଙ୍କ ଜୀବନଧାରଣର ମାନ ଉପରେ ସେଗୁଡ଼ିକର ପ୍ରଭାବ ବିଷୟରେ ଅନୁଧ୍ୟାନ କଲେ ଜଣାଯାଏ ଯେ, ଆଗାମୀ ଦିନଗୁଡ଼ିକରେ ଓଡ଼ିଶାର ସମୃଦ୍ଧିର ଚକ ଚଳଚଞ୍ଚଳ ହୋଇ ଉଠିବ, ଏଥିରେ ସନ୍ଦେହର ଅବକାଶ ନାହିଁ ।

ରାଜ୍ୟ ସରକାରଙ୍କ ଦ୍ୱାରା ବିଭିନ୍ନ ବିଭାଗରେ କାର୍ଯ୍ୟକାରୀ ହେଉଥିବା ଯୋଜନା ମଧ୍ୟରୁ 'ମତ୍ସ୍ୟ ସଂପଦ' ଅନ୍ୟତମ । ପ୍ରକୃତି ଓଡ଼ିଶାକୁ ପ୍ରଚୁର ମତ୍ସ୍ୟ ସଂପଦର ଅଧିକାରୀ କରିଛି । ତେଣୁ ବ୍ୟାପକ ମତ୍ସ୍ୟ ଉତ୍ପାଦନ କରିବାର ସୁଯୋଗ ଆମକୁ ମିଳିଛି । ଏହାଦ୍ୱାରା ଆତ୍ମନିଯୁକ୍ତି ସୃଷ୍ଟି ହେବା ସଂଗେ ସଂଗେ ଆମର ସାମାଜିକ ଓ ଆର୍ଥିକ ଅବସ୍ଥାର ଉନ୍ନତି ସମ୍ଭବ ହୋଇପାରିଛି । ଏଠାରେ ମତ୍ସ୍ୟଜୀବୀ ଓ ମତ୍ସ୍ୟ ଚାଷୀମାନଙ୍କର ସାମାଜିକ ଓ ଅର୍ଥନୈତିକ ଅବସ୍ଥା ଉପରେ ଆଲୋକପାତ କରାଯାଉଛି ।

ମତ୍ସ୍ୟ ଚାଷର ଉନ୍ନତି ପାଇଁ ବର୍ତ୍ତମାନର ସରକାର ବିବିଧ ପଦକ୍ଷେପମାନ ନେଇଛନ୍ତି । ମାଛ ଚାଷ ଦ୍ୱାରା ମତ୍ସ୍ୟଜୀବୀ ଓ ମତ୍ସ୍ୟ ଚାଷୀମାନଙ୍କର ସାମାଜିକ ଓ ଅର୍ଥନୈତିକ ଅବସ୍ଥାର ଉନ୍ନତି ପାଇଁ ରାଜ୍ୟର ୩୦ଟି ଜିଲ୍ଲାରେ ମତ୍ସ୍ୟଚାଷ ଓ ଉନ୍ନୟନ ସଂସ୍ଥାମାନ ସ୍ଥାପନ କରାଯାଇଛି । ଉକ୍ତ ସଂସ୍ଥାର ଲକ୍ଷ୍ୟ ହେଉଛି ବେସରକାରୀ କ୍ଷେତ୍ରରେ



ଅର୍ଥ ଲଗାଣକାରୀ ସଂସ୍ଥାମାନଙ୍କ ଜରିଆରେ ମଧୁରଜଳ ଥିବା ପୋଖରୀଗୁଡ଼ିକର ଉନ୍ନୟନ କରିବା, ରିହାତି ଅର୍ଥ ସହାୟତା ଓ ବୈଷୟିକ ଜ୍ଞାନକୌଶଳ ଯୋଗାଇ ଦେବା ସହିତ ଚାଷୀ ଉନ୍ନୟନ ସଂସ୍ଥା ମାଧ୍ୟମରେ ୧୨୯୭.୬୮ ହେକ୍ଟର ପରିମିତ ମଧୁରଜଳ ଥିବା ପୁଷ୍କରିଣୀଗୁଡ଼ିକର ଉନ୍ନୟନ ପାଇଁ ୮୭.୮୮ ଲକ୍ଷ ଟଙ୍କା ସବ୍‌ସିଡ଼ି ଯୋଗାଇ ଦିଆଯାଇଛି । ଏହି ଯୋଜନାରେ ୧୦,୬୬୧ଟି ପୋଖରୀର ୪୩୩୬.୪୦ ହେକ୍ଟର ଜଳାଶୟର ବିକାଶ ଘଟାଇବା ସଂଗେସଂଗେ ୧୧,୩୫୩ ଜଣ ବ୍ୟକ୍ତି ଉପକୃତ ହୋଇଛନ୍ତି ଏବଂ ୯୪୭ ଜଣ ମତ୍ସ୍ୟଚାଷୀଙ୍କୁ ଆଧୁନିକ ଜ୍ଞାନକୌଶଳ ପ୍ରଣାଳୀରେ ମତ୍ସ୍ୟଚାଷ ସମ୍ବନ୍ଧୀୟ ପ୍ରଶିକ୍ଷଣ ଦିଆଯାଇଛି ।

ରାଜ୍ୟର ୭ଟି ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ମତ୍ସ୍ୟଚାଷ ଓ ମତ୍ସ୍ୟଜୀବୀମାନଙ୍କର ଆର୍ଥିକ ସ୍ଥିତିର ଉନ୍ନତି ପାଇଁ ୭ଟି କ୍ଷାରିଜଳ ଉନ୍ନୟନ ସଂସ୍ଥା କାର୍ଯ୍ୟକାରୀ ହେଉଛି । ଏହାଦ୍ୱାରା କ୍ଷାରିଜଳ ଥିବା ପୋଖରୀଗୁଡ଼ିକର ଉନ୍ନୟନ କରାଯିବା ସଂଗେସଂଗେ ହିତାଧିକାରୀମାନଙ୍କୁ ତାଲିମ୍ ଦେବାର ବ୍ୟବସ୍ଥା କରାଯାଇଛି । ଏହାବ୍ୟତୀତ ଚିଂଗୁଡ଼ି ଚାଷୀମାନେ ୧୧୩.୫୨ ଲକ୍ଷ ଚିଂଗୁଡ଼ି ଯାଆଁଳ ସେମାନଙ୍କ କ୍ଷାରିଜଳ ଥିବା ପୋଖରୀରେ ଗଚ୍ଛିତ କରି ୮୨୦ ମେଟ୍ରିକ୍ ଟନ୍ ରପ୍ତାନୀ ଯୋଗ୍ୟ ଚିଂଗୁଡ଼ି ଉତ୍ପାଦନ କରିଛନ୍ତି । ଏହିପରି ରାଜ୍ୟରେ

କ୍ଷାରିଜଳ ଚିଂଗୁଡ଼ି ଚାଷ ପାଇଁ ଉନ୍ନତ ଜ୍ଞାନକୌଶଳ ଅବଲମ୍ବନପୂର୍ବକ ଚାଷୀମାନଙ୍କର ଆର୍ଥିକ ସ୍ଥିତିର ବିପୁଳ ଉନ୍ନତି ହୋଇପାରିଛି ।

ଏହାବ୍ୟତୀତ କ୍ଷାରିଜଳ ମତ୍ସ୍ୟଚାଷ ଉନ୍ନୟନ ସଂସ୍ଥା ଥିବା ଜିଲ୍ଲାଗୁଡ଼ିକରେ ନିଷିଦ୍ଧ କରାଯାଇଥିବା ଆଣ୍ଟିବାୟୋଟିକ୍ ଔଷଧ ଏବଂ ରାସାୟନିକ ପଦାର୍ଥ ପ୍ରୟୋଗର ଅପକାରିତା ସଂକ୍ରାନ୍ତରେ ଚିଂଗୁଡ଼ି ଚାଷୀମାନଙ୍କୁ ସଚେତନ କରାଯାଇଛି । ସେମାନଙ୍କୁ ଜଳଜୀବ ପ୍ରାଧିକରଣଙ୍କ ପରିସରଭୁକ୍ତ କରାଯିବା ପାଇଁ ବିଭିନ୍ନ ଶିବିରମାନ ଆୟୋଜନ କରାଯାଇଛି । ଏହାଛଡ଼ା ବର୍ତ୍ତମାନ ସରକାରଙ୍କ ଦ୍ୱାରା ବିଭିନ୍ନ ଯୋଜନା ଏହାର ପରିସରଭୁକ୍ତ କରାଯାଇଛି । ''ସ୍ୱଗ୍ରାମ୍ୟ ରୋଜଗାର ଯୋଜନା'' ଅଧୀନରେ ଶ୍ରମ ବିନିମୟରେ ଖାଦ୍ୟ ଯୋଗାଣ କାର୍ଯ୍ୟକ୍ରମର ସ୍ୱତନ୍ତ୍ର ଯୋଜନା ।

ନର୍ସରୀ ପୋଖରୀ, ରିଅରିଂ ପୋଖରୀ ଓ ଷ୍ଟକିଂ ପୋଖରୀଗୁଡ଼ିକର ପୁନରୁଦ୍ଧାର ମାଧ୍ୟମରେ ଏବଂ ପୋଖରୀ ପୁନରୁଦ୍ଧାର ତଥା ସରକାରୀ ମତ୍ସ୍ୟ କେନ୍ଦ୍ର, ଓଡ଼ିଶା ମତ୍ସ୍ୟକେନ୍ଦ୍ର, ଓଡ଼ିଶା ମତ୍ସ୍ୟଚାଷ ଉନ୍ନୟନ ନିଗମ ଲିମିଟେଡ୍, ଓଡ଼ିଶା ମତ୍ସ୍ୟଜୀବୀ ସମବାୟ ମହାସଂଘ ଲିମିଟେଡ୍‌ର ମତ୍ସ୍ୟକେନ୍ଦ୍ରକୁ ଯୋଗାଯୋଗ ରାସ୍ତା ଆଦି ନିର୍ମାଣ କାର୍ଯ୍ୟକ୍ରମର ବିକାଶ ସାଧନ ପାଇଁ ଶ୍ରମ ବିନିମୟରେ ଖାଦ୍ୟ ଯୋଗାଣ କାର୍ଯ୍ୟକ୍ରମ ଅଧୀନରେ ପଂଚାୟତିରାଜ ବିଭାଗ ପକ୍ଷରୁ ଏପର୍ଯ୍ୟନ୍ତ ସର୍ବମୋଟ ୧୦,୬୧୦ ମେଟ୍ରିକ୍ ଟନ୍ ଚାଉଳ ମଧ୍ୟରୁ ୩୯୬୨.୯୦ ମେଟ୍ରିକ୍ ଟନ୍ ଚାଉଳ ବିନିମୟରେ ୬,୨୬,୮୯୬ ଶ୍ରମ ଦିବସ ରାଜ୍ୟର ବିଭିନ୍ନ ଅନାବୃଷ୍ଟି ତଥା ବନ୍ୟାପ୍ଲାବିତ ଜିଲ୍ଲାମାନଙ୍କରେ କାର୍ଯ୍ୟକାରୀ ହେଉଛି । ଉକ୍ତ ଯୋଜନାକୁ କାର୍ଯ୍ୟକାରୀ କରିବା ନିମନ୍ତେ ମୋଟ ୬୯.୫୫ ଲକ୍ଷ ଟଙ୍କା ଖର୍ଚ୍ଚ ହୋଇଛି ।

**ପରିବର୍ଦ୍ଧିତ ଦୀର୍ଘମିଆଦୀ ସକ୍ରିୟ ଯୋଜନା ଅଧୀନରେ କେ.ବି.କେ. ଜିଲ୍ଲାରେ ଥିବା ଜଳଭଣ୍ଡାରର ବିକାଶ -**

କେ.ବି.କେ. ଜିଲ୍ଲାର ଦରିଦ୍ର ମତ୍ସ୍ୟଜୀବୀମାନଙ୍କୁ ଆତ୍ମନିଯୁକ୍ତି ଓ ଜୀବିକା ନିର୍ବାହ ପାଇଁ ଜିଲ୍ଲାରେ ଥିବା ଉପଯୋଗୀ ଜଳଭଣ୍ଡାରଗୁଡ଼ିକର ଉନ୍ନୟନ ଏହି ଯୋଜନାର ଆଭିମୁଖ୍ୟ ଅଟେ ।

୨୦୦୩-୦୪ ଆର୍ଥିକ ବର୍ଷରେ ୩୧୭୦ ହେକ୍ଟର ପରିମିତ ୭୭ଟି ଜଳଭଣ୍ଡାରରେ ୩୨.୩୦ ଲକ୍ଷ ବଡ଼ ଜାଆଁଳ ଗଚ୍ଛିତ କରିବାର ଲକ୍ଷ୍ୟଧାର୍ଯ୍ୟ କରାଯାଇଥିବା ବେଳେ ଏପର୍ଯ୍ୟନ୍ତ ୨୮୭୧ ହେକ୍ଟର ପରିମିତ ୬୦ଟି ଜଳଭଣ୍ଡାରରେ ୩୩.୨୨ ଲକ୍ଷ ବଡ଼ ଜାଆଁଳ ଗଚ୍ଛିତ କରାଯାଇଅଛି । ଏହାବ୍ୟତୀତ ଜଳଭଣ୍ଡାରରେ ଉନ୍ନତ ମାଛଚାଷ ପାଇଁ ୫୩୫ ଜଣଙ୍କୁ ପ୍ରଶିକ୍ଷଣ ଦେବାକୁ ଲକ୍ଷ୍ୟଧାର୍ଯ୍ୟ ଥିବା ସ୍ଥଳେ ୩୭୨ ଜଣଙ୍କୁ ପ୍ରଶିକ୍ଷଣ ଦିଆଯାଉଛି ।

**ମହିଳାମାନଙ୍କୁ ଆତ୍ମନିଯୁକ୍ତି ପାଇଁ ତାଲିମ୍ ବ୍ୟବସ୍ଥା -**

ଓଡ଼ିଶାରେ ମାଛ ଶୁଖୁଆର ଗୁଣାତ୍ମକମାନ ବୃଦ୍ଧି ପାଇଁ ମହିଳା ମତ୍ସ୍ୟଜୀବୀମାନଙ୍କୁ ସମନ୍ୱିତ ତାଲିମ୍ ପ୍ରଦାନ କାର୍ଯ୍ୟକ୍ରମ ଭାରତ ସରକାରଙ୍କ ଦ୍ୱାରା ଅନୁମୋଦନ ଲାଭ କରି ବାଲେଶ୍ୱର, ଭଦ୍ରକ, ପୁରୀ ଓ ଗଂଜାମ ଜିଲ୍ଲାରେ ଥିବା ସାମୁଦ୍ରିକ ମହିଳା ମତ୍ସ୍ୟଜୀବୀମାନଙ୍କୁ ମାଛ ଶୁଖୁଆ ଉତ୍ପାଦନ ନିମନ୍ତେ ସମବାୟ ସମିତି ମାଧ୍ୟମରେ ତାଲିମ ବ୍ୟବସ୍ଥା କରାଯିବା ଏହି ଯୋଜନାର ପ୍ରଧାନ ଆଭିମୁଖ୍ୟ ଅଟେ । ୨୦୦୩-୦୪ ଆର୍ଥିକ ବର୍ଷରେ ୨୧ଟି ମହିଳା ମତ୍ସ୍ୟଜୀବୀ ସମବାୟ ସମିତି ଗଠନ କରାଯିବାର ଲକ୍ଷ୍ୟଧାର୍ଯ୍ୟ ହୋଇଥିବାସ୍ଥଳେ ବର୍ତ୍ତମାନ ସୁଦ୍ଧା ୧୮ଟି ମହିଳା ସମବାୟ ସମିତି ଗଠନ କରାଯାଇଛି । ଏହାର ସଭ୍ୟ ସଂଖ୍ୟା ୨୬୭୨ ଅଟେ । ଏହି ସଭ୍ୟା ସଂଖ୍ୟାରୁ ବର୍ତ୍ତମାନ ସୁଦ୍ଧା ୧୫୫୯ ଜଣ ସଭ୍ୟାଙ୍କୁ ଉପରୋକ୍ତ କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ କରାଯାଇଛି । ଭଦ୍ରକ, ବାଲେଶ୍ୱର, ପୁରୀ ଓ ଗଂଜାମ ଜିଲ୍ଲାର ୩୬୦ ଜଣ ମହିଳା ମତ୍ସ୍ୟଜୀବୀମାନଙ୍କୁ କୋଚିନସ୍ଥିତ ସମନ୍ୱିତ ମତ୍ସ୍ୟ ପ୍ରକଳ୍ପ ଅଧୀନରେ ଥିବା ଭାଇଜାଗର ପ୍ରଶିକ୍ଷଣଗଣ ଓଡ଼ିଶାକୁ ଆସି ଗୁଣାତ୍ମକ ମାଛ ଶୁଖୁଆ ଓ ମତ୍ସ୍ୟଜାତ ଦ୍ରବ୍ୟ ପ୍ରସ୍ତୁତ କରିବା ନିମନ୍ତେ ଉନ୍ନତମାନର କୌଶଳ ସମ୍ବନ୍ଧୀୟ ପ୍ରଶିକ୍ଷଣ ତଥା ତାଲିମ୍ ଦେଇ ଅଛନ୍ତି । ତାଲିମ୍ ପ୍ରାପ୍ତ ହୋଇଥିବା ମହିଳା ମତ୍ସ୍ୟଜୀବୀମାନେ ବର୍ତ୍ତମାନ ମୁଖ୍ୟ ପ୍ରଶିକ୍ଷଣ ଭାବେ ସେମାନଙ୍କ ଅଧୀନରେ ଥିବା ମତ୍ସ୍ୟ ସମବାୟ ସମିତି ଅନ୍ତର୍ଭୁକ୍ତ ଅନ୍ୟ ମହିଳାମାନଙ୍କୁ ତାଲିମ୍ ଦେଉଛନ୍ତି ।

ବର୍ତ୍ତମାନ ମତ୍ସ୍ୟଜୀବୀମାନଙ୍କ ସୁବିଧା ପାଇଁ ସରକାର ବହୁବିଧ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି । ସେଥିମଧ୍ୟରୁ ''ଜନଶ୍ରୀ ବୀମା ଯୋଜନା'' ଅନ୍ୟତମ । ଏହି ଯୋଜନା ମାଧ୍ୟମରେ ୧୫୨୮ ଜଣ ମତ୍ସ୍ୟଜୀବୀମାନଙ୍କୁ ଅନ୍ତର୍ଭୁକ୍ତ କରାଯାଇଛି । ଏହାଛଡ଼ା ୩.୬୦ ଲକ୍ଷ ମତ୍ସ୍ୟଜୀବୀ ଦୁର୍ଘଟଣା ବୀମାର ଅନ୍ତର୍ଭୁକ୍ତ ହୋଇଛନ୍ତି । ସେଥିମଧ୍ୟରୁ ୨୯ ଜଣ ଶାରୀରିକ ଅକ୍ଷମ ଓ ୧୯୩ଟି ମୃତ୍ୟୁ ମାମଲା ବାବଦରେ ୭୩.୮୨ ଲକ୍ଷ ଟଙ୍କା ଦିଆଯାଇଛି । ରାଜ୍ୟରେ ଆଭ୍ୟନ୍ତରୀଣ ମତ୍ସ୍ୟ ଉତ୍ପାଦନ ବୃଦ୍ଧି କରିବା ପାଇଁ ସରକାର ଦୃଢ଼ ପଦକ୍ଷେପ ନେବା ସଂଗେସଂଗେ ରାଜ୍ୟ ଜଳାଶୟ ମତ୍ସ୍ୟ ନୀତି ଘୋଷଣା କରିଛନ୍ତି । ୨୦୦୩-୦୪ ଆର୍ଥିକ ବର୍ଷରେ ରାଜ୍ୟରେ ସାମୁଦ୍ରିକ ମତ୍ସ୍ୟ ରପ୍ତାନୀ ୩୩୪ କୋଟି ଟଙ୍କାରେ ପହଞ୍ଚିଥିବା ବିଭାଗୀୟ ସୂତ୍ରରୁ ପ୍ରକାଶ ।

ସହକାରୀ ନିର୍ଦ୍ଦେଶକ (ରଚନା)
ସୂଚନା ଓ ଲୋକ ସଂପର୍କ ବିଭାଗ
ଭୁବନେଶ୍ୱର

■■■■■■





# ବିଡ଼ି ଶ୍ରମିକମାନଙ୍କ ଉନ୍ନତି ପାଇଁ କଲ୍ୟାଣମୂଳକ ଯୋଜନା - ଏକ ଦୃଷ୍ଟିପାତ

ହେମନ୍ତ କୁମାର ନାୟକ

**ଭା**ରତ ସରକାରଙ୍କ ଖଣି, ଚଳଚ୍ଚିତ୍ର ଓ ବିଡ଼ି ଶ୍ରମିକମାନଙ୍କର ସାମାଜିକ, ଅର୍ଥନୈତିକ ଅଭିବୃଦ୍ଧି ପାଇଁ କେତେକ କଲ୍ୟାଣମୂଳକ ଯୋଜନା ପ୍ରସ୍ତୁତ କରିଅଛନ୍ତି ଓ ଏହି ଯୋଜନାଗୁଡ଼ିକ ଓଡ଼ିଶାରେ ଭାରତ ସରକାର, ଶ୍ରମିକ କଲ୍ୟାଣ ସଂସ୍ଥା, ଭୁବନେଶ୍ୱର ଜରିଆରେ କାର୍ଯ୍ୟକାରୀ ହେଉଅଛି । ଉକ୍ତ କଲ୍ୟାଣମୂଳକ ଯୋଜନା କାର୍ଯ୍ୟକାରୀ କରିବା ପାଇଁ (୧) ଚୂନପଥର ଏବଂ ଡୋଲମାଇଟି ଖଣି ଶ୍ରମିକଙ୍କ କଲ୍ୟାଣ ପାଣ୍ଠି ଆଇନ, ୧୯୭୨, (୨) ଲୁହାପଥର, ମାଂଗାନିଜ ପଥର ଏବଂ କ୍ରୋମ୍ ପଥର ଶ୍ରମିକ କଲ୍ୟାଣ ପାଣ୍ଠି ଆଇନ୍, ୧୯୭୬, (୩) ବିଡ଼ି ଶ୍ରମିକ କଲ୍ୟାଣ ପାଣ୍ଠି ଆଇନ, ୧୯୭୬, (୪) ଚଳଚ୍ଚିତ୍ର ଶ୍ରମିକ କଲ୍ୟାଣ ପାଣ୍ଠି ଆଇନ, ୧୯୮୧ ସଂସଦ ଦ୍ୱାରା ପ୍ରଣୟନ କରାଯାଇଛି ।

ସରକାର ବିଡ଼ି ଶ୍ରମିକ କଲ୍ୟାଣ ପାଣ୍ଠି ଜରିଆରେ ରାଜ୍ୟ ଉପଦେଷ୍ଟା ପରିଷଦ ଗଠନ କରିଅଛନ୍ତି । ଏହି ଉପଦେଷ୍ଟା ପରିଷଦରେ ମାଲିକ ଏବଂ ଶ୍ରମିକମାନଙ୍କ ପ୍ରତିନିଧି ପ୍ରତିନିଧିତ୍ୱ କରିଥାଆନ୍ତି ଓ ରାଜ୍ୟ ଶ୍ରମ ମନ୍ତ୍ରୀ ଏହି ଉପଦେଷ୍ଟା ପରିଷଦର ସଭାପତି ଅଟନ୍ତି । ଏହି ପରିଷଦ ବୈଠକରେ ବିଭିନ୍ନ ଉନ୍ନତିମୂଳକ ଯୋଜନା ଚୂଡ଼ାନ୍ତ ହୋଇଥାଏ । ଏହି ଯୋଜନାଗୁଡ଼ିକ ଶ୍ରମ କଲ୍ୟାଣ ସଂସ୍ଥା, ଭୁବନେଶ୍ୱରର କଲ୍ୟାଣ ଓ ଉପକାର ଆୟୁକ୍ତଙ୍କ ଜରିଆରେ କାର୍ଯ୍ୟକାରୀ ହୁଏ । ବିଡ଼ି ଶ୍ରମିକମାନଙ୍କ ଅଭିବୃଦ୍ଧି ନିମନ୍ତେ କେତେକ କଲ୍ୟାଣମୂଳକ ଯୋଜନା, ଯଥା- ସ୍ୱାସ୍ଥ୍ୟ ଯୋଜନା, ସାମାଜିକ ସୁରକ୍ଷା ଯୋଜନା, ଶିକ୍ଷା ଯୋଜନା, ଚିତ୍ତବିନୋଦନ ଯୋଜନା ଓ ଗୃହ ନିର୍ମାଣ ଯୋଜନା କାର୍ଯ୍ୟକାରୀ ହେଉଅଛି ।

**ସ୍ୱାସ୍ଥ୍ୟ ଯୋଜନା**

ବିଡ଼ି ଶ୍ରମିକ ଓ ତାଙ୍କ ପରିବାରବର୍ଗ ଅସୁସ୍ଥ ହେଲେ ସେମାନଙ୍କୁ ବିନାମୂଲ୍ୟରେ ଡାକ୍ତରୀ ଚିକିତ୍ସା ଯୋଗାଇ ଦେବା ପାଇଁ ଶ୍ରମିକ ବହୁଳ ଅଂଚଳରେ ୧୬ଟି ସ୍ଥାୟୀ ଓ ଭ୍ରାମ୍ୟମାଣ ଚିକିତ୍ସା କେନ୍ଦ୍ର ପ୍ରତିଷ୍ଠା କରାଯାଇଅଛି । ଉକ୍ତ ସ୍ୱାସ୍ଥ୍ୟ କେନ୍ଦ୍ରରେ ଅଭିଜ୍ଞ ଚିକିତ୍ସକମାନଙ୍କୁ ନିଯୁକ୍ତି ଦିଆଯାଇ ସାଧାରଣ ସ୍ୱାସ୍ଥ୍ୟ ପରୀକ୍ଷଣ ସଂଗେସଂଗେ କଲେରା, ମ୍ୟାଲେରିଆ, ଯକ୍ଷ୍ମା ଭଳି ମାରାତ୍ମକ ରୋଗ ଅଧିକ ଯତ୍ନର ସହ ଚିକିତ୍ସା କରାଯାଇ ଥାଏ । ଓଡ଼ିଶାରେ ବାଲିଝରି, ବୈଦ୍ୟେଶ୍ୱର, ବ୍ରହ୍ମବରଦା ଓ ବାଲେଶ୍ୱରଠାରେ ସ୍ଥାୟୀ ସ୍ୱାସ୍ଥ୍ୟ କେନ୍ଦ୍ର, ବାଲିମେଳାଠାରେ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର, ଖୋର୍ଦ୍ଧା ଓ ଭଦ୍ରକର ଗୁଜିଦରଡ଼ାଠାରେ ଭ୍ରାମ୍ୟମାଣ ସ୍ୱାସ୍ଥ୍ୟ କେନ୍ଦ୍ର ଏବଂ ଅନୁଗୁଳ, ବାଗେଡ଼ିଆ, ସାଲିପୁର, ଦଶରଥପୁର, ରେଂଗାଳି, ପରମାଣପୁର, ସମ୍ବଲପୁର, ଘୋଳପୁର ଓ କାମାକ୍ଷାନଗରଠାରେ ସ୍ଥାୟୀ ଓ ଭ୍ରାମ୍ୟମାଣ ସ୍ୱାସ୍ଥ୍ୟକେନ୍ଦ୍ର କାର୍ଯ୍ୟ କରୁଅଛି ।

ମହିଳା ବିଡ଼ି ଶ୍ରମିକମାନଙ୍କୁ ତାଙ୍କର ଜୀବନକାଳ ମଧ୍ୟରେ ପ୍ରଥମ ଦୁଇଗୋଟି ସନ୍ତାନ ଜନ୍ମ ପାଇଁ ଥରକୁ ୧୦୦୦ ଟଙ୍କା (ଏକ ହଜାର ଟଙ୍କା) ହାରରେ ଦୁଇଥର ପ୍ରସୂତିକାଳୀନ ଭତ୍ତା ଏହି ସଂସ୍ଥା ତରଫରୁ ପ୍ରଦାନ କରାଯାଇଥାଏ । ପରିବାର କଲ୍ୟାଣ କ୍ଷେତ୍ରରେ ଅସ୍ତ୍ରୋପଚାର ନିମନ୍ତେ ବିଡ଼ି ଶ୍ରମିକଙ୍କୁ ଉତ୍ସାହିତ କରିବା ପାଇଁ ଏହି ସଂସ୍ଥା ତରଫରୁ ସ୍ୱତନ୍ତ୍ର ଭାବେ ଦୁଇଶହ ଟଙ୍କା ଆର୍ଥିକ ସାହାଯ୍ୟ ପ୍ରଦାନ କରାଯାଇଥାଏ । ଦୃଷ୍ଟି ଦୋଷଜନିତ ଚଷମାର ଆବଶ୍ୟକ ହେଲେ ବିଡ଼ି ଶ୍ରମିକଙ୍କୁ ଚଷମା କିଣିବା ପାଇଁ ଏକ ଶହ ପଚାଶ ଟଙ୍କା ଓ କାଚ ପରିବର୍ତ୍ତନ ପାଇଁ କୋଡ଼ିଏ ଟଙ୍କା ଆର୍ଥିକ ସାହାଯ୍ୟ ଦିଆଯାଏ । ମାନସିକ ରୋଗୀର ଚିକିତ୍ସା ପାଇଁ ପ୍ରତି ରୋଗୀ ପିଛା ମାସିକ ୧୮୦ ଟଙ୍କା ଡାକ୍ତରଖାନାରେ ଭର୍ତ୍ତି ହେବା ଦିନଠାରୁ ମାନସିକ ଚିକିତ୍ସାଳୟକୁ ଦିଆଯାଇଥାଏ ଓ ତୃତୀୟ ଶ୍ରେଣୀ ସ୍ୱାଧୀନ ଶଯ୍ୟା ପାଇଁ ରୋଗୀ ପିଛା ମାସିକ ୯୦୦ ଟଙ୍କା ଦିଆଯାଇଥାଏ ଏବଂ ଜଣେ କିମ୍ବା ଆଶ୍ରିତ ନଥିବା ବ୍ୟକ୍ତିଙ୍କ କ୍ଷେତ୍ରରେ ୬୦୦ ଟଙ୍କା ଏବଂ ଏକାଧିକ ଆଶ୍ରିତ ଥିବା ବ୍ୟକ୍ତିଙ୍କ କ୍ଷେତ୍ରରେ ୭୫୦ ଟଙ୍କା ନଅ ମାସ ପର୍ଯ୍ୟନ୍ତ ପ୍ରଦାନ କରାଯାଇଥାଏ । ରୋଗୀକୁ ଖାଦ୍ୟ ପାଇଁ ଦୈନିକ ୨୫ ଟଙ୍କା ପ୍ରଦାନ କରାଯାଇଥାଏ । ରୋଗୀ ତଥା ତାହାର ଜଣେ ଆତ୍ମୀୟଙ୍କୁ କାର୍ଯ୍ୟକ୍ଷେତ୍ରଠାରୁ ଡାକ୍ତରଖାନା ପର୍ଯ୍ୟନ୍ତ ଅନ୍ୟତମ ରାସ୍ତାରେ ଦ୍ୱିତୀୟ ଶ୍ରେଣୀ ରେଳଭଡ଼ା ଦିଆଯାଇଥାଏ ।

ବିଡ଼ି ଶ୍ରମିକମାନଙ୍କ ପାଇଁ ଯକ୍ଷ୍ମା ଡାକ୍ତରଖାନାରେ ଶଯ୍ୟା ସଂରକ୍ଷିତ ହୋଇଥାଏ । ଅନୁବନ୍ଧିତ ଯକ୍ଷ୍ମା ଡାକ୍ତରଖାନାକୁ ଚିକିତ୍ସା ପାଇଁ ରୋଗୀ ପିଛା ବାର୍ଷିକ ୨୦ ହଜାର ଟଙ୍କା ଆର୍ଥିକ ସହାୟତା ଯୋଗାଇ

ଦିଆଯାଏ । ଯେଉଁଠାରେ ଶ୍ରମିକଙ୍କର ଆଶ୍ରିତ ବ୍ୟକ୍ତି ନଥାନ୍ତି କିମ୍ବା ଏକ ଜଣ ଥାଆନ୍ତି । ସେଠାରେ ତାଙ୍କୁ ମାସିକ ୪୦୦ ଟଙ୍କା ଭରଣପୋଷଣ ଭତ୍ତା ଦିଆଯାଏ । ଯେଉଁଠାରେ ଶ୍ରମିକର ଏକାଧିକ ଆଶ୍ରିତ ବ୍ୟକ୍ତି ଥାଆନ୍ତି, ସେଠାରେ ତାଙ୍କୁ ୫୦୦ ଟଙ୍କା ଭରଣପୋଷଣ ଭତ୍ତା ଦିଆଯାଏ । ପ୍ରତି ରୋଗୀ ପିଛା ଦିନକୁ ୧୫ ଟଙ୍କା ଖାଦ୍ୟ ପାଇଁ ଖର୍ଚ୍ଚ ଦିଆଯାଏ । ରୋଗୀ ଏବଂ ତାକୁ ସହାୟତା କରୁଥିବା ବ୍ୟକ୍ତିଙ୍କ କାର୍ଯ୍ୟକ୍ଷେତ୍ରଠାରୁ ଟି.ବି. ଡାକ୍ତରଖାନା ପର୍ଯ୍ୟନ୍ତ ଯିବାକୁ ଦ୍ୱିତୀୟ ଶ୍ରେଣୀ ରେଳଭଡ଼ା ଯୋଗାଇ ଦିଆଯାଏ ।

ଯକ୍ଷ୍ମା ରୋଗୀଙ୍କ ପାଇଁ ଘରୋଇ ଚିକିତ୍ସା କ୍ଷେତ୍ରରେ ରୋଗୀ ପିଛା ଔଷଧ ଖର୍ଚ୍ଚ ବାବଦକୁ ୫୦ ଟଙ୍କା ଖର୍ଚ୍ଚ ବହନ କରାଯାଏ । ରୋଗୀର ସହାୟକ ଭତ୍ତା ନଅ ମାସ ପର୍ଯ୍ୟନ୍ତ ପ୍ରଦାନ କରାଯାଏ ଏବଂ ଏହା ବିଶେଷ କ୍ଷେତ୍ରରେ ଆଉ ତିନିମାସ ପର୍ଯ୍ୟନ୍ତ ବୃଦ୍ଧି କରାଯାଇଥାଏ । ଯେତେବେଳେ କର୍ମଚାରୀମାନଙ୍କର ଆଶ୍ରିତ ବ୍ୟକ୍ତି ନ ଥାଆନ୍ତି ବା ଜଣେ ଥାଆନ୍ତି ସେତେବେଳେ ସେମାନଙ୍କୁ ମାସିକ ୬୦୦ ଟଙ୍କା ଭରଣପୋଷଣ ଦିଆଯାଏ । ଯେଉଁଠାରେ କର୍ମଚାରୀର ଏକାଧିକ ଆଶ୍ରିତ ବ୍ୟକ୍ତି ଥାଆନ୍ତି ତାଙ୍କୁ ଭରଣପୋଷଣ ଭତ୍ତା ମାସିକ ୭୫୦ ଟଙ୍କା ଦିଆଯାଏ ।

ହାର୍ଣ୍ଣିଆ, ଆପେଣ୍ଡିସାଇଟ୍, ପେଟ ରୋଗ ଓ ସ୍ତ୍ରୀ ରୋଗ ଇତ୍ୟାଦି କେତେକ ସାଧାରଣ ରୋଗଗୁଡ଼ିକର ଚିକିତ୍ସାଜନିତ ଖର୍ଚ୍ଚର ଆର୍ଥିକ ସାହାଯ୍ୟ ଶ୍ରମିକଙ୍କୁ ଦିଆଯାଇଥାଏ । ଏଥିପାଇଁ ବିଡ଼ି ଶ୍ରମିକ ଅନ୍ୟୂନ ୩ ବର୍ଷ ବିଡ଼ି ଶ୍ରମିକ ଭାବେ କାମ କରିଥିବା ଆବଶ୍ୟକ ଏବଂ ତାଙ୍କର ମାସିକ ଆୟ ଦଶ ହଜାର ଟଙ୍କାରୁ ଊର୍ଦ୍ଧ୍ୱ ହୋଇନଥିବ ଓ ଆର୍ଥିକ ସାହାଯ୍ୟର ସୀମା ୩୦ ହଜାର ଟଙ୍କା କିମ୍ବା ପ୍ରକୃତ ଖର୍ଚ୍ଚ ଯେଉଁଠି କମ୍ ତାହା ଉପଲବ୍ଧ ହୋଇଥାଏ ।

ବିଡ଼ି ଶ୍ରମିକ ଏବଂ ତାଙ୍କର ଆଶ୍ରିତମାନଙ୍କୁ ଏହି ଯୋଜନାରେ ହୃଦ୍‌ରୋଗର ଚିକିତ୍ସା ପାଇଁ ନିୟମ ଅନୁସାରେ ଆର୍ଥିକ ସାହାଯ୍ୟ ପ୍ରଦାନ କରାଯାଇଥାଏ । ଶ୍ରମିକଙ୍କ ଚିକିତ୍ସା ସମୟରେ ତାଙ୍କ ପରିବାରବର୍ଗଙ୍କ ଭରଣପୋଷଣ ପାଇଁ ମାସକୁ ୭୫୦ ଟଙ୍କାରୁ ୧୦୦୦ ଟଙ୍କା ପର୍ଯ୍ୟନ୍ତ ସହାୟକ ଭତ୍ତା ପ୍ରଦାନ କରାଯାଇଥାଏ । ଏହି ଭତ୍ତା ନଅ ମାସ କିମ୍ବା ଚିକିତ୍ସା ସମୟ ଯେଉଁଟି କମ୍ ସେଇ ସମୟ ପର୍ଯ୍ୟନ୍ତ ଦିଆଯାଏ ଏବଂ କର୍ମସ୍ଥଳଠାରୁ ଡାକ୍ତରଖାନା ପର୍ଯ୍ୟନ୍ତ ଦ୍ୱିତୀୟ ଶ୍ରେଣୀ ବସ୍/ରେଳ ଭଡ଼ା ପ୍ରଦାନ କରାଯାଇଥାଏ ।

ବିଡ଼ି ଶ୍ରମିକ ଏବଂ ତାଙ୍କର ଆଶ୍ରିତମାନଙ୍କୁ ଯକୃତ ରୋଗ ଚିକିତ୍ସା ପାଇଁ ନିୟମ ଅନୁସାରେ ଆର୍ଥିକ ସାହାଯ୍ୟ ପ୍ରଦାନ କରାଯାଇଥାଏ । ପ୍ରକୃତ ଖର୍ଚ୍ଚ କିମ୍ବା ଦୁଇ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ଓ ଯକୃତ ପୁନଃରୋପଣ ପାଇଁ ଓ ଏକ ଲକ୍ଷ ତିରିଶ ହଜାର ଟଙ୍କା ଅସ୍ତ୍ରୋପଚାର ଯାହା କମ୍ ଅଟେ, ପ୍ରଦାନ କରାଯାଇଥାଏ । ଶ୍ରମିକଙ୍କ ଚିକିତ୍ସା ସମୟରେ ତାଙ୍କ ପରିବାରବର୍ଗଙ୍କ ଭରଣପୋଷଣ ପାଇଁ ମାସକୁ ୭୫୦ ଟଙ୍କାରୁ ୧୦୦୦ ଟଙ୍କା ପର୍ଯ୍ୟନ୍ତ ସହାୟକ ଭତ୍ତା ପ୍ରଦାନ କରାଯାଇଥାଏ । ଏହି ଭତ୍ତା ନଅ ମାସ କିମ୍ବା ଚିକିତ୍ସା ସମୟ ଯେଉଁଟି କମ୍ ସେଇ ସମୟ ପର୍ଯ୍ୟନ୍ତ ଦିଆଯାଏ ଏବଂ କର୍ମସ୍ଥଳଠାରୁ ଡାକ୍ତରଖାନା ପର୍ଯ୍ୟନ୍ତ ଦ୍ୱିତୀୟ ଶ୍ରେଣୀ ବସ୍/ରେଳ ଭଡ଼ା ପ୍ରଦାନ କରାଯାଇ ଥାଏ । ଏହି ଯୋଜନା ଶ୍ରମିକର ଆଶ୍ରିତ ପରିବାର ପାଇଁ ଉପଲବ୍ଧ ହେଲେ ହେଁ ଭରଣପୋଷଣ ଭତ୍ତା କେବଳ ଶ୍ରମିକଙ୍କୁ ହିଁ ମିଳିଥାଏ ।

କୌଣସି ବିଡ଼ି ଶ୍ରମିକ କୁଷ୍ଠ ରୋଗରେ ପୀଡ଼ିତ ହେଲେ ଯଦି କୌଣସି ସ୍ୱୀକୃତିପ୍ରାପ୍ତ ଡାକ୍ତରଖାନାରେ ଚିକିତ୍ସିତ ହୁଅନ୍ତି, ତେବେ ନିୟମ ଅନୁସାରେ ଚିକିତ୍ସାର ସମସ୍ତ ଖର୍ଚ୍ଚ ଏବଂ ରୋଗୀ ଓ ତାହାର ସେବାକାରୀ ପାଇଁ ବାସଗୃହଠାରୁ ଡାକ୍ତରଖାନା ପର୍ଯ୍ୟନ୍ତ ଯାତାୟାତର ଆନୁଷଙ୍ଗିକ ଖର୍ଚ୍ଚ ଏହି ସଂସ୍ଥା ବହନ କରିଥାଏ । ଉପରୋକ୍ତ ରୋଗରେ ଚିକିତ୍ସାଧୀନ ଥିବା ସମୟରେ ପରିବାରବର୍ଗଙ୍କୁ ସ୍ଥଳ ବିଶେଷରେ ମାସିକ ୨୦୦ ଟଙ୍କାଠାରୁ ୩୦୦ ଟଙ୍କା ପର୍ଯ୍ୟନ୍ତ ଆର୍ଥିକ ସାହାଯ୍ୟ ମିଳିଥାଏ ।

ବିଡ଼ି ଶ୍ରମିକ ଓ ସେମାନଙ୍କ ପରିବାରବର୍ଗଙ୍କ କର୍କଟ ରୋଗ ଜନିତ ଚିକିତ୍ସାର ପ୍ରକୃତ ଖର୍ଚ୍ଚ ପ୍ରଦାନ କରାଯାଏ । ଏକ କିମ୍ବା ଆଶ୍ରିତ ନଥିବା ଶ୍ରମିକଙ୍କୁ ୬୦୦ ଟଙ୍କା ଓ ଏକାଧିକ ଆଶ୍ରିତ ଥିବା ଶ୍ରମିକଙ୍କୁ ୭୫୦ ଟଙ୍କା ମାସିକ ଭତ୍ତା ପ୍ରଦାନ କରାଯାଏ । ରୋଗୀ ଓ ତା'ର ସହାୟକର ଡାକ୍ତରଖାନା ଯିବା ଆସିବା ଓ ଖାଦ୍ୟପେୟର ଖର୍ଚ୍ଚ ୫୦ ଟଙ୍କା ଦୈନିକ ପ୍ରଦାନ କରାଯାଏ ଏବଂ ରୋଗୀ ଓ ତାକୁ ସହାୟତା କରୁଥିବା ଜଣେ ବ୍ୟକ୍ତିଙ୍କୁ କାର୍ଯ୍ୟକ୍ଷେତ୍ରଠାରୁ ଉଦ୍ଦିଷ୍ଟ ଡାକ୍ତରଖାନା ପର୍ଯ୍ୟନ୍ତ ଯିବାକୁ ଦ୍ୱିତୀୟ ଶ୍ରେଣୀ ରେଳଭଡ଼ା/ବସ୍‌ଭଡ଼ା ଯୋଗାଇ ଦିଆଯାଏ ।

ସାମାଜିକ ସୁରକ୍ଷା ଯୋଜନା ଅନ୍ତର୍ଗତ ବିଡ଼ି ଶ୍ରମିକମାନଙ୍କର ସାଂଗଠନିକ ବୀମା ଯୋଜନାରେ ବିଡ଼ି ଶ୍ରମିକମାନଙ୍କ ସାଧାରଣ ମୃତ୍ୟୁ ପାଇଁ ଏକକାଳୀନ ୧୦ ହଜାର ଟଙ୍କା ପ୍ରଦାନ କରାଯାଏ । ଦୁର୍ଘଟଣା କ୍ଷେତ୍ରରେ ସଂପୂର୍ଣ୍ଣ ଅକ୍ଷମ ଓ ମୃତ ବ୍ୟକ୍ତିଙ୍କ ପାଇଁ ଏକକାଳୀନ ୨୫ ହଜାର ଟଙ୍କା ଓ ଆଂଶିକ ଅକ୍ଷମ ବ୍ୟକ୍ତିଙ୍କ ପାଇଁ ୧୨ ହଜାର ୫୦୦ ଟଙ୍କା ଅନୁଦାନ ଆକାରରେ ଯୋଗାଇ ଦିଆଯାଏ । ସମସ୍ତ ପଂଜୀକୃତ ବିଡ଼ି ଶ୍ରମିକ ଏହି ବୀମାର ଅନ୍ତର୍ଭୁକ୍ତ । ଏହି ବୀମାର କିସ୍ତି ଭାରତ ସରକାର ବହନ କରନ୍ତି । ବୀମାରାଶି ଜୀବନ ବୀମା ଓ ନିଗମ ତରଫରୁ ଏହି ସଂସ୍ଥା ଜରିଆରେ ପ୍ରଦାନ କରାଯାଏ ।

ବିଡ଼ି ଶ୍ରମିକଙ୍କ ପିଲାମାନଙ୍କ ଶିକ୍ଷାର ପ୍ରସାର ପାଇଁ ବିଭିନ୍ନ ଯୋଜନା ମାଧ୍ୟମରେ ଆର୍ଥିକ ସହାୟତା ଯୋଗାଇ ଦିଆଯାଏ । ପ୍ରଥମରୁ ଚତୁର୍ଥ ଶ୍ରେଣୀ ପର୍ଯ୍ୟନ୍ତ ବାଳକ/ବାଳିକାଙ୍କ ପୋଷାକ, କଲାପଟା, ବହି ବାବଦ ଅନୁଦାନ ୨୫୦ ଟଙ୍କା ଦିଆଯାଏ । ପଂଚମ ଶ୍ରେଣୀରୁ ଅଷ୍ଟମ ଶ୍ରେଣୀ ପର୍ଯ୍ୟନ୍ତ ବାଳିକାଙ୍କ ପାଇଁ ୯୪୦ ଟଙ୍କା ଆର୍ଥିକ ସହାୟତା ଦିଆଯାଉଥିବାବେଳେ, ବାଳକଙ୍କ ପାଇଁ ୫୦୦ ଟଙ୍କା ଦିଆଯାଏ ।

ନବମ ଶ୍ରେଣୀ ବାଳିକାଙ୍କ ପାଇଁ ଆର୍ଥିକ ସହାୟତା ୧୧୪୦ ଟଙ୍କା ଦିଆଯାଉଥିବାବେଳେ ବାଳକଙ୍କ ପାଇଁ ୭୦୦ ଟଙ୍କା ଦିଆଯାଏ । ଦଶମ ଶ୍ରେଣୀ ବାଳିକାଙ୍କ ପାଇଁ ଆର୍ଥିକ ସହାୟତା ୧୮୪୦ ଟଙ୍କା ଦିଆଯାଉଥିବା ବେଳେ ବାଳକଙ୍କ ପାଇଁ ୧୪୦୦ ଟଙ୍କା ଦିଆଯାଏ । ଯୁକ୍ତ ଦୁଇ ଓ ପ୍ରି ଡିଗ୍ରୀ ବାଳିକାଙ୍କ ପାଇଁ ୨୪୪୦ ଟଙ୍କା ଓ ବାଳକଙ୍କ ପାଇଁ ୨୦୦୦ ଟଙ୍କା ଆର୍ଥିକ ସହାୟତା ପ୍ରଦାନ କରାଯାଏ । ସ୍ନାତକ, ସ୍ନାତକୋତ୍ତର ଏବଂ ତିନି ବର୍ଷିଆ ଡିପ୍ଲୋମା ଶିକ୍ଷା ପାଇଁ ବାଳକ ଓ ବାଳିକା ଉଭୟଙ୍କ ପାଇଁ ୩ ହଜାର ଟଙ୍କା ଆର୍ଥିକ ସହାୟତା ପ୍ରଦାନ କରାଯାଏ । ବୃତ୍ତିଗତ ଡିଗ୍ରୀ, ବି.ଏସ୍‌ସି. (ଏଜି) ବି.ଇ. (ବି.ଟେକ୍)/ ଏମ୍.ବି.ବି.ଏସ୍. ଇତ୍ୟାଦି ଶିକ୍ଷା ପାଇଁ ଉଭୟ ବାଳିକା ଓ ବାଳକଙ୍କ ନିମନ୍ତେ ୮୦୦୦ ଟଙ୍କା ଆର୍ଥିକ ସହାୟତା ଦିଆଯାଏ । ବିଡ଼ି ଶ୍ରମିକ ପୁଅ/ଝିଅ, ଛାତ୍ର/ଛାତ୍ରୀ ଦରଖାସ୍ତ କରିଥିବା ବର୍ଷ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବା ଆବଶ୍ୟକ ।

ବିଡ଼ି ଶ୍ରମିକମାନଙ୍କ ସମିତିକୁ ଚିତ୍ତବିନୋଦନ ପାଇଁ ୧୦ ହଜାର ଟଙ୍କା ରଂଗୀନ ଟେଲିଭିଜନ୍ ଏବଂ ୪ ହଜାର ଟଙ୍କା କଳାଧଳା ଟେଲିଭିଜନ ପାଇଁ ପ୍ରଦାନ କରାଯାଏ । ପୁରୀଠାରେ ଏକ ଅବସର ବିନୋଦନ କେନ୍ଦ୍ର କାର୍ଯ୍ୟ କରୁଛି ଏବଂ ସେଠାରେ ୫୦ ଜଣ ପର୍ଯ୍ୟନ୍ତ ବିଡ଼ି ଶ୍ରମିକ ଏକକାଳୀନ ଅବସ୍ଥାନ କରିବାର ସୁବିଧା ରହିଅଛି । ଶ୍ରମିକମାନେ ସେଠାରେ ଦୁଇଦିନ ପର୍ଯ୍ୟନ୍ତ ମାଗଣାରେ ଅବସ୍ଥାନ କରି ପାରନ୍ତି । ସେମାନଙ୍କ କାର୍ଯ୍ୟସ୍ଥଳୀରୁ ପୁରୀ ଅବସର ବିନୋଦନ କେନ୍ଦ୍ର ପର୍ଯ୍ୟନ୍ତ ଯାତାୟାତ ଖର୍ଚ୍ଚ ବହନ କରାଯାଏ । ଏହାବ୍ୟତୀତ ସେମାନଙ୍କର ଭ୍ରମଣ ପାଇଁ ମଧ୍ୟ ରିକ୍ସା ଖର୍ଚ୍ଚ ଜଣ ପିଛା ନିୟମ ଅନୁସାରେ ଦିଆଯାଏ ।

ବିଡ଼ି ଶ୍ରମିକମାନଙ୍କ ପାଇଁ ଆବଶ୍ୟକ ଥିବା ଗୃହ, ଗୃହ ନିର୍ମାଣ ଯୋଜନା ମାଧ୍ୟମରେ ସେମାନଙ୍କୁ ଯୋଗାଇ ଦିଆଯାଇଥାଏ । ପ୍ରତି ବିଡ଼ି ଶ୍ରମିକଙ୍କ ଇଚ୍ଛାନୁସାରେ ସେମାନଙ୍କ ନିଜ ଜାଗାରେ ଘର ତିଆରି ପାଇଁ ପ୍ରକୃତ ଖର୍ଚ୍ଚ ଉପରେ କୋଡ଼ିଏ ହଜାର ଟଙ୍କା କିମ୍ବା ଖର୍ଚ୍ଚର ଶତକଡ଼ା ୫୦ ଭାଗ ଆର୍ଥିକ ସହାୟତା ମଧ୍ୟରୁ ନ୍ୟୁନତମ ରାଶିର ଅନୁଦାନ ଯୋଗାଇ ଦିଆଯାଇଥାଏ । ଯୋଗାଇ ଦିଆଯାଉଥିବା ଟଙ୍କା ସେମାନଙ୍କୁ ତିନୋଟି କିସ୍ତି ମାଧ୍ୟମରେ ଦିଆଯାଏ । ତାହା ସେମାନଙ୍କର ଘର ତିଆରି ଅଗ୍ରଗତି ନିର୍ଭର କରେ । ମୂଳଦୁଆ ସଂପୂର୍ଣ୍ଣ ହେଲେ ପ୍ରଥମ କିସ୍ତି ପୁରା ଅନୁଦାନର ଶତକଡ଼ା ୩୫ ଅର୍ଥାତ୍ ୭ ହଜାର ଟଙ୍କା ଦିଆଯାଏ । ଛାତ ପର୍ଯ୍ୟନ୍ତ ସଂପୂର୍ଣ୍ଣ ହେଲେ ଦ୍ୱିତୀୟ କିସ୍ତି ପୁରା ଅନୁଦାନ ଶତକଡ଼ା ୪୦ ଭାଗ ଅର୍ଥାତ୍ ୮ ହଜାର ଟଙ୍କା ଏବଂ ତୃତୀୟ କିସ୍ତି ଘର ସଂପୂର୍ଣ୍ଣ ହେଲେ ବାକି ୨୫ ଶତକଡ଼ା ଅର୍ଥାତ୍ ୫ ହଜାର ଟଙ୍କା ଦିଆଯାଏ ।

ଯେଉଁ ଶ୍ରମିକମାନେ ବିଡ଼ି ଶିଳ୍ପରେ କାର୍ଯ୍ୟ କରୁଥିବା କର୍ମଚାରୀ କିମ୍ବା ଶ୍ରମିକ ଭାବରେ ଏକ ବର୍ଷରୁ ଅଧିକା କାର୍ଯ୍ୟ କରିଥିବେ ଏବଂ ବ୍ୟକ୍ତିଗତ ଭାବରେ ନିଜର ଜାଗା ଥିବ କିମ୍ବା ପରିବାରର ଅନ୍ୟ ସଦସ୍ୟଙ୍କ ସଂଗେ ମିଶି କୌଣସି ଜାଗା କ୍ରୟ କରିଥିଲେ ଅନୁଦାନ ମିଳିପାରିବ । ଜମି ୬୦ ବର୍ଗ ଗଜରୁ କମ୍ ହୋଇ ନଥିବା ଦରକାର । ଯୋଗ୍ୟ ବିଡ଼ି ଶ୍ରମିକମାନେ ୧୮ ମାସ ମଧ୍ୟରେ ସେମାନଙ୍କ ଗୃହ ନିର୍ମାଣ ସଂପୂର୍ଣ୍ଣ କରିବା ଆବଶ୍ୟକ ଅଟେ । ଗୃହ ନିର୍ମାଣ ପାଇଁ ଅଗ୍ରୀମ ଅର୍ଥ ଯୋଗାଇ ଦିଆଯାଏ ନାହିଁ । (୧) ଶ୍ରମିକ ନିର୍ଦ୍ଦିଷ୍ଟ ଫର୍ମ ଜରିଆରେ ଶ୍ରମ କଲ୍ୟାଣ କମିଶନରଙ୍କୁ ଦରଖାସ୍ତ କରିବେ, (୨) ବିଗତ ୧୩ ବର୍ଷର ଋଣଭାର ପ୍ରମାଣପତ୍ର, (୩) ଉଦ୍ଦିଷ୍ଟ ଫର୍ମରେ ସ୍ଥାନୀୟ ତହସିଲଦାରଙ୍କ ପ୍ରମାଣପତ୍ର, (୪) ଜଣେ ଗେଜେଟେଡ୍ ଅଧିକାରୀଙ୍କ ଦ୍ୱାରା ଆଟେଷ୍ଟେଡ୍ ଜମି ପଟାର ନକଲ ଏବଂ (୫) ଜମି ଶ୍ରମିକଙ୍କ ନିଜ ନାମରେ ନଥିଲେ ଅନ୍ୟ ଅଂଶୀଦାରମାନେ ନୋ-ଅବ୍‌ଜେକ୍‌ସନ୍ ପ୍ରମାଣପତ୍ର ଦେବେ ।

ବିଡ଼ି ଶ୍ରମିକମାନେ ଆର୍ଥିକ ଦୁର୍ବଳ ଶ୍ରେଣୀ ଅନ୍ତର୍ଭୁକ୍ତ ହୋଇଥିବାରୁ, ସେମାନଙ୍କ ଗୃହ ନିର୍ମାଣ ପାଇଁ ଏହି ଯୋଜନାଟି ଶ୍ରମିକ ମଂଗଳ ସଂସ୍ଥାର ଆର୍ଥିକ ସହାୟତାରେ ରାଜ୍ୟ ସରକାରଙ୍କ ଦ୍ୱାରା କାର୍ଯ୍ୟକାରୀ ହେଉଅଛି । ଏହି ଗୃହ ନିର୍ମାଣ ଯୋଜନାରେ ଶ୍ରମିକ ମଂଗଳ ସଂସ୍ଥା ସମଗ୍ର ଖର୍ଚ୍ଚର ଅର୍ଦ୍ଧେକ କିମ୍ବା ସର୍ବାଧିକ ୨୦ ହଜାର ଟଙ୍କା ପର୍ଯ୍ୟନ୍ତ ଅନୁଦାନ ଦେବାର ବ୍ୟବସ୍ଥା କରିଥାଏ ଓ ଅବଶିଷ୍ଟ ବ୍ୟୟର ବରାଦ ରାଜ୍ୟ ସରକାର ବହନ କରିଥାଆନ୍ତି । (୧) ଗ୍ରୁପ୍ ହାଉସିଂ ସ୍କିମ୍‌ରେ ସମବାୟ ସମିତିର ସଭ୍ୟମାନଙ୍କ ଗୃହ ନିର୍ମାଣ ପାଇଁ ଗୃହ ନିର୍ମାଣ ସମିତିକୁ ଆର୍ଥିକ ସହାୟତା ଯୋଗାଇ ଦିଆଯାଏ । (୨) ଏହି ଯୋଜନା ଅନୁସାରେ ରାଜ୍ୟ ସରକାର ଆବଶ୍ୟକୀୟ ଜମି ମଧ୍ୟ ପ୍ରଦାନ କରି ଥାଆନ୍ତି ।

ଯେଉଁ ବିଡ଼ି ସମବାୟ ସମିତିର ୭୫ ଜଣ କିମ୍ବା ତତୋଧିକ ସଭ୍ୟ ଅଛନ୍ତି ଓ ସମିତିର ନିଜସ୍ୱ ଜମି ଅଛି, ସେହି ସମିତିକୁ ସମସ୍ତ ନିର୍ମାଣ ଖର୍ଚ୍ଚର ଶତକଡ଼ା ୭୫ ଭାଗ କିମ୍ବା ସର୍ବାଧିକ ଦେଢ଼ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ଆର୍ଥିକ ସହାୟତା ଦିଆଯାଇଥାଏ ।

ସହକାରୀ ସୂଚନା ଅଧିକାରୀ
ସୂଚନା ଓ ଲୋକ ସଂପର୍କ ବିଭାଗ, ଲୋକ ସଂପର୍କ ଭବନ
ଭୁବନେଶ୍ୱର - ୭୫୧୦୦୧





# ଅଗଷ୍ଟ ପନ୍ଦର

ଓମ୍ ପ୍ରକାଶ ମହାପାତ୍ର

ଲାଲକିଲାର ସାମନା ବୁରୁଜେ ଉଡ଼େ ସ୍ୱାଧୀନ ତ୍ରିରଙ୍ଗା ଫରଫର,
ଦେଶପ୍ରେମ କଂଚାଲାଲ ରକ୍ତ ଶହୀଦର ସତ୍ୟ ଅହିଂସା ସ୍ୱଦେଶୀ ଗାନ୍ଧୀ ମନ୍ତର ।
ଫୋପାଡ଼ି ଛିଡ଼ାଇ ଫିଙ୍ଗିଲା ଶାସନ ଫିରିଙ୍ଗୀ ଦୁଷ୍ଟ ପାଜି ଅତ୍ୟାଚାର ବର୍ବରର,
ଭାରତ ଇତିହାସେ ସେ ଏକ ବଳୀଆନ ମହାସମର ଅନ୍ତିମ ସ୍କନ୍ଧ ଅଗଷ୍ଟ ପନ୍ଦରର ।
ସ୍ୱାଧୀନ ଚିନ୍ତା ଶାସନ ବିଚାର ସ୍ୱପ୍ନ ସୂର୍ଯ୍ୟ କିରଣ ଭିନ୍ନ ଗାଢ଼ ଲାଲ ରଂଗର,
ଫାଶିରେ ଚଢ଼ିଲେ ଲକ୍ଷ୍ମଣ ନାଏକ, ରଘୁ-ଦିବାକର କୋରାପୁଟ-ରଣପୁରର ।
ଚାଖିଲା ଚାଖିଖୁଣ୍ଟିଆ ସ୍ୱାଧୀନ ସ୍ୱାଦ ଝାନ୍‌ସୀରାଣୀ ସିପାହୀ ବିଦ୍ରୋହର,
ଖାଇଲା ଗୁଳି ଦେଲା ପ୍ରାଣବଳୀ ବାଳୁତ ବାଜି ରାଉତ ଗଡ଼ଜାତ ଢେଙ୍କାନାଳର ।
ସ୍ୱାଧୀନ ଶହୀଦ ଉତ୍କଳବୀର ସୁରେନ୍ଦ୍ର ସାଏ ଖିଣ୍ଡା ବୀରମାଟି ସମ୍ବଲପୁରର,
ଖୋରଧା ବୀର ଜୟୀରାଜଗୁରୁ ନିର୍ଦ୍ଦୟ ପ୍ରାଣଦଣ୍ଡ ନିଷ୍ଠୁର ସ୍ମୃତି ମନରେ ଆଣୁଛି ବ୍ୟଥା ପ୍ରଖର ।
ଦେଶପ୍ରେମ ସ୍ୱାଧୀନ ଯୁଦ୍ଧେ ସତ୍ୟ ଅହିଂସା ସ୍ୱଦେଶୀ ଖଡ଼ଗ୍ ଅସ୍ତ୍ର,
ଅଗଷ୍ଟ ପନ୍ଦରେ ପିନ୍ଧି ପିନ୍ଧାଇଲା ସ୍ୱାଧୀନ ଶଙ୍ଖା ସିନ୍ଦୂର ବସ୍ତ୍ର ।
ବିଶ୍ୱଦରବାରେ ଗାନ୍ଧୀ ଭାରତ ସତ୍ୟ ଅହିଂସା ଗୁଳି ପରାକ୍ରମୀ ଇଂରେଜ ଦେଲା ସନ୍ତୁଳୀ ।
ତିଳକ ତିଳକେ ସ୍ୱରାଜ ଅଧିକାର ଚହଟ ଚମକେ ହୋଇଲା ସାକାର,
ପରାଧୀନ ଡୋରୀ କଉପୁନୀ ବେଡ଼ି ଛିଡ଼ି ଫିଟିଗଲା ବାଜି ସ୍ୱାଧୀନ ରଣତୂରୀ ।
ଡାୟାର ମାରି ଭଗତସିଂ ପାଇଲା ଫାଶି ଆନନ୍ଦେ ଗରବେ ଫାଟୁଛି ଭାରତବାସୀ ?
ଜାଲିଓ୍ୱାନାବାଗ, ଇରମ ପଡ଼ିଆ ଶହୀଦ ରକତେ ଯାଇଥିଲା ଦିନେ ଭାସି ।
ଗାନ୍ଧୀ, ନେହେରୁ, ସୁଭାଷ, ଆଜାଦ ଶାନ୍ତ କରାଳ ଉଗ୍ର ରଢ଼ ଶୀତଳ ନିଆଁ,
ଫିରିଙ୍ଗୀ ଶାସନ ପୁଲିସ୍ କୋର୍ଟ କଚେରୀ ଗୋଳାବାରୁଦେ କଲା ଛାନିଆଁ ।
ସୁଖସ୍ୱାଚ୍ଛନ୍ଦ ସ୍ୱାର୍ଥ ସନ୍ଦେଶ ନଖାଇ ନଶୋଇ ମୃତ୍ୟୁଦଣ୍ଡ ଆବୁରିଲେ ସତ୍ୟାଗ୍ରହୀ
ସେବେଳ ସେ ତ୍ୟାଗ ହାଡ଼ରକ୍ତ ମାଂସର ଓଜନ ଆହ୍ୱାନ ନସହି ପାରିଲା ମହୀ ।
ସ୍ୱାଧୀନତା ଧନ ବହୁ ମୂଲ୍ୟବାନ ଏ ଧନ ହଜିଲେ ଜୀଇଁ ବଂଚିବାରେ ଲାଗେନା ମନ,
ଏ ଦେଶ ଭାରତ ହିନ୍ଦୁ, ଜୈନ, ବୌଦ୍ଧ, ଖ୍ରୀଷ୍ଟିଆନ, ବନ୍ଧୁ ମୁସଲମାନ ।
ସ୍ୱାର୍ଥ ପ୍ରିୟାପ୍ରୀତି ଦୁର୍ନୀତି ଖେଳୁଛି ସାଜୁଛି ଏ ଦେଶେ ଭଷ୍ମାସୁର,
ନବଭାରତର ବାଳୁତ ଯୁବକ କରି କି ପାରିବ ତାକୁ ଶୀକାର ?
ଜାତି, ଧର୍ମ, ଭାଷା, ସଂସ୍କୃତି ଅନେକ ମଇଁଷି ଶିଙ୍ଗଟା ଯୁଝିଲା ବେଳକୁ ଏକ
ପଦକ ହଜିଛି ଟାଗୋରର ହଜିନି ଲିଭିନି କବିତା ସେ ବିଶ୍ୱକବି ବିଶ୍ୱଧର୍ମ ଐକ୍ୟ ।
ସୁଜଳା ସୁଫଳା ଶସ୍ୟ ଶ୍ୟାମଳା ଭାରତ ନଦୀ କ୍ଷେତ ପରବତ ମାଳା,
ପୁନେଇଁ ପରବ ଯାନିଯାତ ବାରମାସେ ଧବଳ ଟଗର ସୌନ୍ଦର୍ଯ୍ୟ ଗଳା,
ଋଷି ବାଲମିକି, ବ୍ୟାସଦେବ ରାମାୟଣ, ମହାଭାରତ ରଚି
ଅମର କାବ୍ୟ ଶ୍ରେଷ୍ଠ ପଠନେ ଆଚାର ବ୍ୟବହାର ଗଠନେ ତୋଷିଛି ସଚି ।
ଅଗଷ୍ଟ ପନ୍ଦରେ ଭାରତ ମନ୍ଦିରେ ଶାନ୍ତି ମୈତ୍ରୀ ଖେଳୁଥାଉ ଗଙ୍ଗାଗୋଦାବରୀ ତୀରେ ।
ସ୍ୱାଧୀନ ଭାରତ ଡିଣ୍ଡିମ୍ ପିଟୁ ଉଡ଼ାଇ ତ୍ରିରଙ୍ଗା ସଂସ୍କୃତି ବୈଭବ ସାରା ବିଶ୍ୱରେ ।

ଉପ ସଚିବ
ସୂଚନା ଓ ଲୋକ ସଂପର୍କ ବିଭାଗ, ଭୁବନେଶ୍ୱର





# ମହାମାନବର ଚରଣ ତଳେ

ପଣ୍ଡିତ ଜଗନ୍ନାଥ ଶତପଥୀ

ଏ ଜାତି ପରାଣେ ବୁହାଇଥିଲା ଯେ
ମୁକ୍ତିର ମନ୍ଦାକିନୀ
ଧମନୀରେ ଯିଏ ଭରି ଦେଇଥିଲା
ଶୌର୍ଯ୍ୟର ସଞ୍ଜୀବନୀ,
'ଅଠାବନ ତମେ' ଏ ଜାତି-ଜାତକେ
ଅଲିଭା ଅବିନଶ୍ୱର
ଲୁହ ଲହୁ ଦେଇ ମୁକ୍ତିର ମଶାଲେ
ଟାଳିଥିଲା ଅନ୍ଧକାର,
ହାୟରେ ଜାତି,
ଜାତି-ନନ୍ଦିଘୋଷ ଆଉ ତ ନଚଳେ
କାହିଁ ସେହି ମହାରଥୀ !

କାନ୍ତ-ମଞ୍ଜୁଳ ବନ ସବୁଜିମା
ମଣ୍ଡିତ ଏହି ଧରା
ଉଗ୍ର-ସନ୍ତ୍ରାସ-ନକ୍ସଲ-ତ୍ରାସେ
ଆଜି ସେ ସର୍ବହରା,
କଷଣ ପେଷଣ ଶୋଷଣେ ଜନତା
କରେ ଯେବେ ହାହାକାର
କାହିଁ ସେ କାଣ୍ଡାରୀ, ଯା ଶାନ୍ତି ସନ୍ଦେଶେ
ଭରୁଥିଲା ଏ ଅନ୍ତର,
ଭାଳି ସେ କଥା,
ଅନ୍ତର ତଳୁ ଉଦ୍‌ବେଳି ଉଠେ
ଶତ ବୃଶ୍ଚିକ ବ୍ୟଥା ।

ସତ୍ୟ ପ୍ରେମ ତ୍ୟାଗ ଏ ଜାତି ସଂସ୍କୃତି
ଅଖଣ୍ଡତା ମୂଳ ମନ୍ତ୍ର,
ବିଷମତା ମଧ୍ୟେ ସାମ୍ୟ, ସଂହତି
ଘୋଷେ ଯାର ଗଣତନ୍ତ୍ର,
ଏ ମହାଦେଶର ମହାଭାବନାରେ
ସ୍ୱାର୍ଥର ନାହିଁ ସ୍ଥାନ,
ସାର୍ବଜନୀନ ଚିନ୍ତାଚେତନାରେ
ଏ ଜୀବନ ମହୀୟାନ
ସାରା ବିଶ୍ୱରେ
ନିଃସ୍ୱ ଜନରେ ଆଶ୍ୱାସ ଭରି
ସଭିଙ୍କୁ ଆପଣା କରେ ।

ବରଷକେ ଥରେ ଏ ଶୁଭ ଲଗନେ
ଉଡ଼େ ଜାତୀୟ ପତାକା,
ଯାହାପାଇଁ ଆମେ ଚିର ଗର୍ବିତ
ନଥିଲା କାହାରି ଶଙ୍କା
ଦୁଃଖୀ, ରଙ୍କୀ ସର୍ବହରାର ସାଥୀ ସେ
ଅକାଳେ ପଡ଼ିଲା ଟଳି,
ଦେଶ ମାତୃକାର ମୁକ୍ତି ପାଇଁ ଯେ
ଦେଇଗଲା ଆତ୍ମବଳି
ତାପରି ଜଣେ
ଦେଶପାଇଁ କହ କିଏ ବା କାନ୍ଦୁଛି
କେହିତ ନ ଦିଶେ କେଣେ ।

ଆମେତ ଯାନ୍ତ୍ରିକ ତାନ୍ତ୍ରିକର ମନ୍ତ୍ର
ନ ଉଚ୍ଚାରେ ଏ ରସନା
ଲୋକ ଦେଖାଣିଆ ଉତ୍ସବେ ମଜ୍ଜି
ଗାଉଛୁଁ ମାତୃବନ୍ଦନା
ଅନ୍ତର ଆମ ପାଷାଣ-ପିହିତ
ନ ବହେ କରୁଣାଝର
ଶାନ୍ତି ମୈତ୍ରୀ ମୁକ୍ତି ପ୍ରଗତି
କେବଳ ଭାଷଣ ସାର,
ନାହିଁ ଇସାରା
ସୌରାଚାରରେ କବଳିତ ଆଜି
ମାନବ ବାଦର ଧାରା ।

ଭୋକିଲା ମୁହଁରେ ଦେଉଥିଲା ଦାନା
ଦଳିତର ଥିଲା ବନ୍ଧୁ
ସତ୍ୟ, ପ୍ରେମ, ଅହିଂସା ପ୍ଲାବନେ
ଥିଲା କରୁଣାର ସିନ୍ଧୁ ।
ଆଜିର ସମାଜେ ଦିଶେ ନାହିଁ କାହିଁ
ସେଭଳି ମଣିଷଟିଏ
ନିଜ କଥାଛାଡ଼ି ଦେଶପାଇଁ ଲଢ଼ି
ଆଣିଲା ସ୍ୱରାଜ୍ୟ ଯିଏ,

ପୁଣ୍ୟ ତିଥିରେ
ସେ ମହାରଥୀଙ୍କୁ ଖୋଜେ ଜନଗଣ
ମାଟି ପାଣି ପବନରେ ।
ତୂର୍ଯ୍ୟ ନାଦରେ ପ୍ରକମ୍ପିତ ହୁଏ
ଆକୁମାରୀ ହିମାଚଳ,
ଜୈତ୍ରପତାକା ଉଡ଼େ ଫର୍ ଫର୍
ପରାଣ କରି ଉଦ୍‌ବେଳ ।
ଲାଲକିଲାଠାରୁ ଜନପଦ ଧାରେ
ପ୍ରଲମ୍ବିତ ପଟୁଆର
ଗର୍ଜି ଉଠଇ ସେନାବାହିନୀର
କମାଣର ମନ୍ଦ୍ରସ୍ୱର,
ପ୍ରଣତି ଢାଳେ
ଆଜିର ଦିନରେ ଏ ମହାଜାତିର
ମହାମାନବର
ଚରଣ ତଳେ ॥

‘‘ଚନ୍ଦ୍ରାଳୟ’’
ସେଲଟର୍ ଛକ, କଟକ - ୭୫୩୦୦୮

---

# ଆଉ ଏକ ଅଗଷ୍ଟ ପନ୍ଦର ...

ସନ୍ଧ୍ୟା ମହାନ୍ତି

ଆମେ ଦେଖୁ - ଆଉ ଏକ ଅଗଷ୍ଟ ପନ୍ଦର ... !
ମୃତ୍ୟୁର ଶ୍ମଶାନ ଘାଟେ,
ଯନ୍ତ୍ରଣାର ଶୋକେ
ଆପଣାକୁ ଆପେ ଚାପି,
ଭିତରେ - ବାହାରେ ।
ଇତିହାସ ପୃଷ୍ଠା ଖୋଲେ-
ରାତ୍ରିର ଶିକୁଳି ଛିଡ଼େ
ନବରବି ସତେ ଉଇଁ ଆସେ ...
ବିଞ୍ଚିଦିଏ ତା’ କିରଣେ - ସୁଖରାଶି,
ଆନନ୍ଦର ଫୁଲ ଫୁଟିଯାଏ
ପ୍ରତିଟି ଏ ଗଛର ଡାଳରେ ...
ବିଭିନ୍ନ ବାଦ୍ୟର ସ୍ୱର
ଏଇ ଶୁଭେ -
ଚତୁର୍ଦ୍ଦିଗେ ନହବତ ବାଜେ
ବାଜି ଉଠେ ହୃଦୟର ତନ୍ତ୍ରୀ ସବୁ,
ଏଇମାତ୍ର ବନ୍ଧନରୁ ଫିଟେ ...
ଆଜିଯାଏ ପଢୁଥିବା ଲଲାଟରେ ଦୁଃଖର ଲିଖନ
ଅଯତ୍ନ, ଅସୁରକ୍ଷିତ ଜୀବନ ଯା
ପୋଡୁଥିବା- ଦେଖୁଥିଲା -
ଆଜିଯାଏ-
କାହିଁ କେତେ ଅଗଷ୍ଟ ପନ୍ଦର ...
ମାତ୍ର- ସତେବା ସେଦିନ ଆଜି ଯାଉଅଛି ଲିଭି
ଏ ସକାଳ ଉଜ୍ଜ୍ୱଳ ରଂଗରେ
ଯା’ର ରଶ୍ମି ପୋଡ଼ିଦିଏ -
କଳା ସ୍ମୃତି - ଆଜି ଆଲୁଅରେ -
ଏ ଆଲୋକ ନିର୍ଲିପ୍ତ ଲୋଭରେ
ଶୁଖିଯାଏ - ଅଗଠିତ ଦୁଃଖୀ କପାଳରେ,
ଲାଗିଥିବା କଷ୍ଟ ସ୍ୱେଦ ଯେତେ -
ଘମାଘୋଟ ଲଢ଼େଇର ପରେ
ଗଭୀର, ପ୍ରାଚୀନ ଦୁର୍ଗ ଭାଙ୍ଗିପଡ଼େ -
କା’ ହାତର ସୂକ୍ଷ୍ମ ଆଘାତରେ ...
ବହୁବିଧ ପ୍ରାଣମାନଙ୍କରୁ
କିଏ ସତେ କାଢ଼ି ନିଏ ଶର ସବୁ
କ୍ଷତ ସ୍ଥାନ ଶୁଖି ଆସେ -
ପାଟିଖୋଲି କହିବାର ଇଛା ସବୁ
କେତେକେତେ ମନ ତଳେ -
ଆସେ ଉଙ୍କିମାରି ...
ସେ ଆଉ ଚେର କଟା ଗଛ ନୁହେଁ
ନୁହେଁ ଅବା ଅବେଳରେ ଝଡ଼ିପଡ଼ି ଯାଉଥିବା,
ସଦ୍ୟଫୁଟା ପୂର୍ବ ଫୁଲପରି ... ।
ତେବେ ବିତ ଏବେଳରେ -
ଆଶ୍ଚର୍ଯ୍ୟ, ଚକିତ ହୋଇ ଭାବୁ ଅଛୁ -
କିପରିବା ସବୁ ଦେଖୁ, ସବୁ ଶୁଣୁ
ଫୁଟିବା, ଝରିବା - ବଂଚିବା, ମରିବା
ଆଉ - ଗଢ଼ିବା, ଭାଂଗିବା - ନିଃଶବ୍ଦେ ନିଃଶବ୍ଦେ
କେମିତି ଏ ଯାଏ କହ ନୀରବରେ -
ସହୁଅଛୁ - ଯେତେ ସବୁ ଅନୁଭବ ବାନ୍ଧି ଦେଉ,
ପ୍ରାଣତଳ ଅନ୍ଧାରୀ ଗୁହାରେ ... ?
ଯଦିଓ ବା ଜାଣିପାରୁ -
ପାଟି ଖୋଲି ନପାରିବା ଦୁଃଖୁ -
ବ୍ୟାକୁଳତା ପ୍ରତି ମୁହୂର୍ତ୍ତରେ ...
ନିର୍ଦ୍ଧାରିତ ଭାଗ୍ୟର ଅରଣ୍ୟେ
ଦୁଃଖ, ଶୋକ, ଅନୁଶୋଚନାରେ -
ଅନ୍ଧାରେ ମୃତ୍ୟୁକୁ ଭେଟି ଡରିଯାଉ -
ସେ ବେଳରେ - ତୁଣ୍ଡ, ମୁଣ୍ଡ କିଛି ବି ନ ଦିଶେ ...
ହେଲେ -
ଏତେପରେ - ଶୋକରେ ଶୋକରେ -
ସ୍ୱପ୍ନଦେଖୁ - ଆଉ ଏକ ଅଗଷ୍ଟ ପନ୍ଦରେ ...
କିପରି ଉଡୁଛି ବାନା - ପ୍ରତି ପ୍ରାଣ - ସ୍ୱାଧୀନତା ନାମେ
ଆନନ୍ଦର - ଆହ୍ଲାଦେ, ବିହ୍ୱଳେ ...
ଛିଡ଼ାଇ ସହସ୍ର ଗଣ୍ଠି ବନ୍ଧନର,
ଭିତରେ, ବାହାରେ -
ପାଟିରୁ ବାହାରୁଥିବା ଶବ୍ଦଙ୍କ ସାଂଗରେ ... ।

ସଂପାଦିକା
‘ନବରବି’, ଭୁବନେଶ୍ୱର




# ଗାନ୍ଧିଜୀ
# ଓ
# ସ୍ୱାଧୀନତା ଆନ୍ଦୋଳନ




**ବି**ଶ୍ୱ ଇତିହାସରେ ଭାରତର ସ୍ୱାଧୀନତା ସଂଗ୍ରାମ ଏକ ଅନନ୍ୟ ସାଧାରଣ ଘଟଣା । ବିଶ୍ୱର ବିଭିନ୍ନ ଅଂଶରେ ସଂଗଠିତ ହୋଇଥିବା ସବୁ ସ୍ୱାଧୀନତା ସଂଗ୍ରାମ ତଥା ରାଷ୍ଟ୍ର ବିପ୍ଳବ ରକ୍ତପାତରେ ସମାହିତ ହୋଇଛି । ଫରାସୀ ରାଷ୍ଟ୍ର ବିପ୍ଳବ, ଆମେରିକା ସ୍ୱାଧୀନତା ସଂଗ୍ରାମ, ଋଷ ବିପ୍ଳବ ତଥା ବହୁରାଷ୍ଟ୍ରର ସ୍ୱାଧୀନତା ସଂଗ୍ରାମର ପରିଣତି ପ୍ରାୟ ଏକାପରି । ଦୁଇଶହ ବର୍ଷର ପରାଧୀନ ଭାରତବର୍ଷରୁ ବ୍ରିଟିଶ୍ ରାଜଶକ୍ତିକୁ ତଡ଼ିବା ପାଇଁ ଗାନ୍ଧିଜୀଙ୍କ ନେତୃତ୍ୱରେ ଯେଉଁ ଆନ୍ଦୋଳନ ଆରମ୍ଭ ହେଲା ତା'ର ମାର୍ଗ ଥିଲା ଭିନ୍ନ । ଅହିଂସା, ସତ୍ୟାଗ୍ରହ ଓ ଅସହଯୋଗ ଆନ୍ଦୋଳନ ଭିତ୍ତିରେ ଭାରତ ମାଟିରୁ ବ୍ରିଟିଶ୍ ରାଜଶକ୍ତିକୁ ହଟାଇବା ପାଇଁ ଗାନ୍ଧିଜୀ ଏହି ପନ୍ଥା ବାଛି ନେଇଥିଲେ । ଅହିଂସା, ସତ୍ୟାଗ୍ରହ ଓ ଅସହଯୋଗ ଆନ୍ଦୋଳନ ଜରିଆରେ ସ୍ୱାଧୀନତା କିଭଳି ହାସଲ କରାଯାଇପାରେ ସେ ତା'ର ଏକ ନୂତନ ଦିଗଦର୍ଶନ ଦେଇଯାଇଛନ୍ତି । ଗାନ୍ଧିଜୀଙ୍କ ଉଦ୍ଦେଶ୍ୟରେ ପ୍ରଖ୍ୟାତ ପରମାଣୁ ବିଜ୍ଞାନୀ ଆଇନ୍‌ଷ୍ଟାଇନ୍ କହିଥିଲେ - ଆମର ଉତ୍ତରପୁରୁଷମାନେ ଯେତେବେଳେ ଗାନ୍ଧିଜୀଙ୍କ ବିଷୟରେ ଜାଣିବେ, ସେତେବେଳେ ସେମାନେ ଚିନ୍ତା କରିପାରିବେ ନାହିଁ, ପୃଥିବୀ ପୃଷ୍ଠରେ ଏଭଳି ଜଣେ ମହାମାନବ ପଦପାତ କରିଥିଲେ । ବାପୁ କବିତାରେ ପ୍ରଖ୍ୟାତ କବି ମାୟାଧର ମାନସିଂହ ଭାବବିହ୍ୱଳ ହୋଇ ଲେଖିଥିଲେ -

''ଆଧାତ୍ମିକ ବଳେ ଲାଗିଛି ଲଢ଼େଇ
ଭାଙ୍ଗିବାକୁ ପଶୁବଳର ବଢ଼େଇ ।''

ଗାନ୍ଧିଜୀ ଭାରତବର୍ଷରେ ରାଜନୈତିକ, ଅର୍ଥନୈତିକ ଓ ସାମାଜିକ କ୍ଷେତ୍ରରେ ଏକ ସାମୟିକ ବିପ୍ଳବ ଚାହିଁ ଥିଲେ । ସେ ଭାରତର ମୁକ୍ତି ସଂଗ୍ରାମକୁ ସଫଳତାର ସହିତ ଶେଷ କରାଇଥିଲେ । ରାଜନୈତିକ କ୍ଷେତ୍ରରେ ଗାନ୍ଧିଜୀଙ୍କର ଦାନ ହେଉଛି ଭାରତବର୍ଷକୁ ଏକ ଗ୍ରାମଭିତ୍ତିକ ଗଣତନ୍ତ୍ର । ଅର୍ଥନୈତିକ କ୍ଷେତ୍ରରେ ସବୁଠାରୁ ଗରିବ, ନିଃସ୍ୱ, ଦଳିତ, ନିଷ୍ପେସିତଙ୍କ ପାଇଁ କିଛି ନା କିଛି ରୋଜଗାର ପନ୍ଥା ବାହାର କରିବାକୁ ଗାନ୍ଧିଜୀ ଚାହିଁଥିଲେ । ଗାନ୍ଧିଜୀଙ୍କର ତୃତୀୟ ଅବଦାନ ହେଉଛି ସାମାଜିକ ପରିବର୍ତ୍ତନ । ସେ ଜାତିଭେଦ ପ୍ରଥାର ଘୋର ବିରୋଧୀ ଥିଲେ । ଅସ୍ପୃଶ୍ୟତା ରୂପକ ସାମାଜିକ କଳଙ୍କ ବିରୁଦ୍ଧରେ ସେ ସଂଗ୍ରାମ ଆରମ୍ଭ କରିଥିଲେ । ଏତଦ୍‌ବ୍ୟତୀତ ସେ ଚାହିଁଥିଲେ ନାରୀ ଜାତିର ଉତ୍ଥାନ ।

ସ୍ୱାଧୀନତା ଆନ୍ଦୋଳନରେ ଭାରତର ନାରୀ ନିଜକୁ ସମ୍ମାନର ସହିତ ପୁରୁଷର କାନ୍ଧକୁ କାନ୍ଧ ମିଶାଇ ଲଢ଼ିବାର କୌଶଳ ଶିକ୍ଷା କଲା କେବଳ ଗାନ୍ଧିଜୀଙ୍କ ଯୋଗୁଁ । ତାଙ୍କର ସେହି ସ୍ୱପ୍ନ ସାକାର ହେଉ, ଆଜିର ଦିବସରେ ଏତିକି ଅନୁଚିନ୍ତା ।

ଏହି ୫୮ତମ ସ୍ୱାଧୀନତା ଦିବସ ପାଳନ ଅବସରରେ ଆମେ ଦେଶମାତୃକା ପାଇଁ ପ୍ରାଣବଳି ଦେଇଥିବା ଅମର ଶହୀଦମାନଙ୍କ ପ୍ରତି ଗଭୀର ଭକ୍ତିପୂର୍ଣ୍ଣ ପ୍ରଣିପାତ ଜଣାଉଛୁ । ଯେଉଁ ବୀର ସଂଗ୍ରାମୀମାନେ ସର୍ବସ୍ୱ ତ୍ୟାଗ କରି ମୁକ୍ତି ସଂଗ୍ରାମରେ ଝାସ ଦେଇଥିଲେ, ବ୍ରିଟିଶ୍ ଶାସନର ଦାରୁଣ ଦମନ ଓ ନିର୍ମମ ନିର୍ଯ୍ୟାତନା ସହିଥିଲେ, ସେମାନେ ଏ ଜାତିର ଚିର ନମସ୍ୟ ଓ ସ୍ମରଣୀୟ ହୋଇ ରହିବେ । ଯେଉଁ ମହାନ୍ ଲକ୍ଷ୍ୟ ଓ ଆଶା ଆକାଂକ୍ଷା ନେଇ ଏତେ ଦୁଃଖ-କଷ୍ଟ ବରଣ କରି ଦୀର୍ଘକାଳର ପରାଧୀନତାରୁ ଏ ଦେଶକୁ ମୁକ୍ତ କରିଥିଲେ, ସେମାନଙ୍କର ସ୍ୱପ୍ନ, ସଂକଳ୍ପ ସ୍ୱାଧୀନ ଭାରତରେ ସାର୍ଥକ ହୋଇଛିକି ? ଏହି ପ୍ରଶ୍ନ ଦେଶବାସୀଙ୍କ ମନକୁ ଶତତ ଆଲୋଡ଼ିତ କରି ଆସିଛି । ସ୍ୱାଧୀନତା ପ୍ରାପ୍ତିର ୫୮ ବର୍ଷ ମଧ୍ୟରେ ପ୍ରଗତି ପଥରେ ଆମେ କେତେ ଦୂର ଅଗ୍ରସର ହୋଇଛୁ, ପୂର୍ବସୂରୀମାନଙ୍କର ଆଶା ଆକାଂକ୍ଷା ପୂରଣ କରିଛୁ, ସେମାନଙ୍କର ଆଦର୍ଶ ଓ ଉପଦେଶକୁ ପାଳନ କରିଛୁ, ଆଜି ତାହାର ଆତ୍ମ ସମୀକ୍ଷା କରିବା ଆମର କର୍ତ୍ତବ୍ୟ ।

ଗାନ୍ଧିଜୀ କହିଥିଲେ, ଯେଉଁଦିନ ଦରିଦ୍ର ଲୋକଟିର ଆଖିରୁ ଅଶ୍ରୁ ପୋଛି ହୋଇଯିବ, ପ୍ରକୃତ ସ୍ୱାଧୀନତା ମିଳିଛି ବୋଲି ସେ ସେହିଦିନ ଅନୁଭବ କରିବ । ଆଜି ସ୍ୱାଧୀନତା ସଂଗ୍ରାମୀମାନଙ୍କର ଦେଶ ପାଇଁ ନିଜର ତ୍ୟାଗ, ତପସ୍ୟା ଓ ସଂଗ୍ରାମର ସ୍ମୃତିଚାରଣ କଲାବେଳେ ସମାଜର ନୈତିକ ଅଧୋଗତି, ଆଦର୍ଶବୋଧର ଅବକ୍ଷୟ ଅତ୍ୟନ୍ତ ମ୍ରିୟମାଣ ହୋଇ ଉଠିଛି । ଯେଉଁ ନିର୍ଭୀକ, ନିଃସ୍ୱାର୍ଥପର, ଉତ୍ସର୍ଗୀକୃତ ଭାବନା, ସଂଗଠିତ ପ୍ରାଣଶକ୍ତି ବ୍ରିଟିଶ୍ ସାମ୍ରାଜ୍ୟର ପତନର କାରଣ ହୋଇଥିଲା, ସେ ଭାବନା ଆଜି ଦୁର୍ଲଭ ହୋଇ ପଡ଼ିଛି । ସେକାଳର ଦେଶପ୍ରୀତି, ଜାତୀୟତାବୋଧ, ମୈତ୍ରୀ ଓ ସଂହତି ଭାବ ଆମ ମନରୁ ଦୂରେଇ ଯାଇଛି । ମହାତ୍ମା, ମହାପୁରୁଷମାନଙ୍କ ପ୍ରଦର୍ଶିତ ମାର୍ଗରୁ ଆମେ ଦୂରେଇ ଯାଇଛୁ । ଆଜି ସମାଜର ସବୁ ସ୍ତରରେ ସୃଷ୍ଟି ହୋଇଛି ଏକ ଅଶ୍ୱସ୍ତି, ଅସନ୍ତୋଷ ଓ ଅବଶୋଷର ବାତାବରଣ । ଏହି ନୈତିକ ଅଧୋଗତି ଓ ଅପସଂସ୍କୃତିରୁ ଭାରତୀୟ ମହାଜାତିକୁ ରକ୍ଷା କରିବା ଉତ୍ତରପୁରୁଷଙ୍କ ବ୍ରତ ହେଉ । ସ୍ୱାଧୀନତାର ୫୮ତମ ଜୟନ୍ତୀ ଅବସରରେ ଆତ୍ମ ସନ୍ତୋଷ ନୁହେଁ, ଆତ୍ମ ସମୀକ୍ଷାର ବର୍ଷ ରୂପେ ଏ ଜାତିକୁ ଦିଗ୍‌ଦର୍ଶନ ଦେଉ, ଆଜିର ପୁଣ୍ୟ ଦିବସରେ ଏହା ହିଁ କାମନା ।

ଶରତ ଚନ୍ଦ୍ର ସାମନ୍ତରାୟ

# ଉତ୍କଳ ପ୍ରସଙ୍ଗ

୬୧ ଭାଗ | ୧ମ ସଂଖ୍ୟା | ଶ୍ରାବଣ-ଭାଦ୍ର | ଅଗଷ୍ଟ - ୨୦୦୪

**ସୁରେନ୍ଦ୍ରନାଥ ତ୍ରିପାଠୀ**
କମିଶନର ତଥା ଶାସନ ସଚିବ

**ବୈଷ୍ଣବ ପ୍ରସାଦ ମହାନ୍ତି**
ନିର୍ଦ୍ଦେଶକ

**ଶରତଚନ୍ଦ୍ର ସାମନ୍ତରାୟ**
କାର୍ଯ୍ୟ ନିର୍ବାହୀ ସମ୍ପାଦକ

ସମ୍ପାଦନା ସହଯୋଗୀ
**ଶୁଭଲକ୍ଷ୍ମୀ ମହାନ୍ତି**
**ଗୋବିନ୍ଦଚନ୍ଦ୍ର ମଲ୍ଲିକ**

ପ୍ରଚ୍ଛଦପଟ ଓ ଲେ-ଆଉଟ ଡ଼ିଜାଇନିଂ
**ମାନସ ନାୟକ**
ଫଟୋ : ସୂଚନା ଓ ଲୋକ ସଂପର୍କ ବିଭାଗ
ସୌଜନ୍ୟରୁ

କମ୍ପ୍ୟୁଟର ସେଟିଂ ଓ ଡ଼ିଜାଇନିଂ
**ମନୋଜ କୁମାର ପାତ୍ର**
**ହେମନ୍ତ କୁମାର ସାହୁ**

**ବାର୍ଷିକ ଦେୟ : ଟ.୫୦.୦୦**
**ପ୍ରତିଖଣ୍ଡ : ଟ.୫.୦୦**


---

ଉତ୍କଳ ପ୍ରସଙ୍ଗ ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସଂପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁ ସ୍ଥଳରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।


ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ - ୧୦ରେ ମୁଦ୍ରିତ ।



ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗ, ଲୋକ ସଂପର୍କ ଭବନ, ଭୁବନେଶ୍ୱର - ୭୫୧୦୦୧
*E-mail* : iprsec@ori.nic.in, ଫୋନ : ୨୪୦୪୫୧୩

# ସୂଚୀ

# ଆମ ଜାତୀୟତାର ପ୍ରତୀକ



ଜାତୀୟ ଫୁଲ - ପଦ୍ମଫୁଲ

ଜାତୀୟ ପଶୁ - ବ୍ୟାଘ୍ର





ଜାତୀୟ ପକ୍ଷୀ - ମୟୂର



ଭିନ୍ନ ଏକ ଉନ୍ମାଦନା : ସ୍ୱାଧୀନତା ଆନ୍ଦୋଳନ କାଳରେ ଆଜାଦ ହିନ୍ଦ୍ ଫୌଜର ଏକ ପ୍ୟାରେଡ଼ରେ
ନେତାଜୀ ସୁଭାଷ ଚନ୍ଦ୍ର ବୋଷ ।



ସେହି ଶୁଭ ମୁହୂର୍ତ୍ତ : ୧୯୪୭ ଅଗଷ୍ଟ ୧୫ ତାରିଖ ପ୍ରତ୍ୟୁଷରେ ଦିଲ୍ଲୀ ଲାଲକିଲାର ଏକ ଦୃଶ୍ୟ ।



# ୫୮ତମ ସ୍ୱାଧୀନତା ଦିବସ ଅବସରରେ
# ଓଡ଼ିଶାର ମାନ୍ୟବର ରାଜ୍ୟପାଳ
# ଶ୍ରୀ ଏମ୍.ଏମ୍. ରାଜେନ୍ଦ୍ରନ୍‌ଙ୍କ
# ବାର୍ତ୍ତା

ମୋର ପ୍ରିୟ ଭାଇ ଓ ଭଉଣୀମାନେ,

ଦେଶର ୫୮ତମ ପବିତ୍ର ସ୍ୱାଧୀନତା ଦିବସ ଅବସରରେ ମୁଁ ସମସ୍ତଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଓ ଶୁଭେଚ୍ଛା ଜଣାଉଛି ।

୨. ଯେଉଁ ଦେଶପ୍ରେମୀ, ସ୍ୱାଧୀନତା ସଂଗ୍ରାମୀ ଏବଂ ଇତିହାସରେ ନାମ ନଥିବା ଅଗଣିତ ନାୟକମାନେ ପ୍ରାଣବଳି ଦେଇ ଆମକୁ ଏକ ସ୍ୱତନ୍ତ୍ର ପରିଚୟ ପ୍ରଦାନ କରିଛନ୍ତି, ସେମାନଙ୍କୁ ଏ ପବିତ୍ର ଅବସରରେ ମୁଁ ଭକ୍ତିପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି । ଆଜିର ଦିବସ ହେଉଛି ଆନନ୍ଦ ତଥା ଆତ୍ମସମୀକ୍ଷାର ଏକ ଦିବସ । ଆମର ପୂର୍ବପୁରୁଷମାନେ ଏ ଜାତିକୁ ଗଠନ କରିବା ପାଇଁ ଯେଉଁ ସ୍ୱପ୍ନ ଦେଖିଥିଲେ, ଏହି ଅବିସ୍ମରଣୀୟ ମୁହୂର୍ତ୍ତରେ ସେହି ସ୍ୱପ୍ନକୁ ସାକାର କରିବା ପାଇଁ ଉତ୍ସର୍ଗୀକୃତ ମନୋଭାବ ନେଇ ଆମେ ଆଗେଇ ଆସିବା ଉଚିତ ।

୩. ବିଶ୍ୱ ଇତିହାସରେ ଭାରତର ସ୍ୱାଧୀନତା ସଂଗ୍ରାମ ଏକ ଅଭୂତପୂର୍ବ ଘଟଣା ଓ ଏହା ଦର୍ଶାଇ ଦେଲା ଯେ ମହାତ୍ମା ଗାନ୍ଧୀଙ୍କ ପ୍ରଦର୍ଶିତ ଅହିଂସାର ପଥ ଦ୍ୱାରା ସତରେ ସ୍ୱାଧୀନତା ଲାଭ ସମ୍ଭବ ହୋଇପାରେ । ଓଡ଼ିଶାର ଯେଉଁ ବରପୁତ୍ରମାନେ ସ୍ୱାଧୀନତା ପାଇଁ ଆତ୍ମୋତ୍ସର୍ଗ କରିଯାଇଛନ୍ତି, ସେମାନେ ହେଲେ - ଜୟୀ ରାଜଗୁରୁ, ବକ୍ସି ଜଗବନ୍ଧୁ, ବୀର ସୁରେନ୍ଦ୍ର ସାଏ, ବିର୍ସା ମୁଣ୍ଡା, ଲକ୍ଷ୍ମଣ ନାଏକ, ଉତ୍କଳଗୌରବ ମଧୁସୂଦନ ଦାସ, ଉତ୍କଳମଣି ଗୋପବନ୍ଧୁ ଦାସ ଓ ଅନ୍ୟାନ୍ୟ ଅନେକ ବୀର ସନ୍ତାନ । ଇତିହାସ ଏମାନଙ୍କ ଅବଦାନର ସାକ୍ଷୀ ।

୪. ବିଗତ କେତେ ବର୍ଷ ମଧ୍ୟରେ ଆମେ ଭୟଙ୍କର ପ୍ରାକୃତିକ ବିପର୍ଯ୍ୟୟର ସମ୍ମୁଖୀନ ହୋଇଛେ, କିନ୍ତୁ ଜନସାଧାରଣଙ୍କର ଦୃଢ଼ ସଂକଳ୍ପ ବଳରେ ଆମେ ସେସବୁର ଆହ୍ୱାନକୁ ସାହସର ସହିତ ସାମନା କରି ପୂର୍ବାପେକ୍ଷା ଅଧିକ ଶକ୍ତିଶାଳୀ ହୋଇ ଠିଆ ହୋଇଛେ ।

୫. ଏହି ରାଜ୍ୟ ଅମାପ ଖଣିଜ, ଜଳ, ଜଙ୍ଗଲ ଏବଂ ସାମୁଦ୍ରିକ ସମ୍ପଦରେ ପରିପୂର୍ଣ୍ଣ । କିନ୍ତୁ ଯେହେତୁ ଆମେ ସେସବୁର ସଦୁପଯୋଗ କରିପାରି ନାହେଁ, ସେ ହେତୁ ଆମର ଉତ୍କଟ ଦାରିଦ୍ର୍ୟ ଏବଂ ଶିଶୁ ମୃତ୍ୟୁହାର ମିଶି ସାମାଜିକ ଅର୍ଥନୈତିକ ବିକାଶ କ୍ଷେତ୍ରରେ ଆମର ସ୍ଥିତିକୁ ନିମ୍ନରେ ରଖିଛି । କୃଷି, ଖଣିଜ ପଦାର୍ଥ ଉପରେ ପର୍ଯ୍ୟବସିତ ଶିଳ୍ପ ଏବଂ ପର୍ଯ୍ୟଟନ ପରି ମୌଳିକ ଭାବେ ଦୃଢ଼ କ୍ଷେତ୍ରଗୁଡ଼ିକରେ ଆମର ପ୍ରଚେଷ୍ଟା ଦ୍ୱିଗୁଣିତ ହେବା ଏକାନ୍ତ ଆବଶ୍ୟକ । କୃଷି ହେଉଛି ଆମ ଅର୍ଥନୀତିର ମୂଳପିଣ୍ଡ । ପ୍ରାୟ ଶତକଡ଼ା ୮୦ ଭାଗ ଲୋକ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ନିଯୁକ୍ତି ପାଇଁ ଏହା ଉପରେ ନିର୍ଭର କରିଥାନ୍ତି, କିନ୍ତୁ ଆମର କୃଷି ଉତ୍ପାଦନ ଓ ଜମିର ବ୍ୟବହାର ଅଧିକ ବିକଶିତ ହେବାର ପର୍ଯ୍ୟାପ୍ତ ସୁଯୋଗ ରହିଛି । ହେକ୍ଟର ପିଛା ଆମର ଧାନ ଉତ୍ପାଦନ ଜାତୀୟ ହାର ଅପେକ୍ଷା ଯଥେଷ୍ଟ କମ୍ ଏବଂ ପଞ୍ଜାବ ଯାହା ଉତ୍ପାଦନ କରେ, ତା'ର ଅଧା ମାତ୍ର । ଅର୍ଥକରୀ ଫସଲ ଓ ଉଦ୍ୟାନ ଚାଷରେ ମଧ୍ୟ ଆମର ସଫଳତା ଉତ୍ସାହଜନକ ନୁହେଁ । ଏହା ସାଙ୍ଗକୁ ଜନସଂଖ୍ୟାରେ କ୍ରମାଗତ ବୃଦ୍ଧି ଓ ଏକ ପରିବାର ପାଇଁ ଆବଶ୍ୟକ ଚାଷ ଜମିର କ୍ରମାଗତ ହ୍ରାସ, ସମସ୍ୟାକୁ ଜଟିଳ କରିପକାଉଛି । ସତେ ଅବା ଏହା ଯେପରି ଏକ ନୀରବ ଟାଇମ୍‌ବମ୍ ପରି ଯେକୌଣସି ମୁହୂର୍ତ୍ତରେ ବିସ୍ଫୋରଣ ହେବା ପାଇଁ ଅପେକ୍ଷା କରିଛି ଏବଂ ଯଦି ଅତ୍ୟାଧୁନିକ ପ୍ରଣାଳୀର ବ୍ୟବହାର ଦ୍ୱାରା ଆମେ କୃଷି ଉତ୍ପାଦନରେ ଯଥେଷ୍ଟ ବୃଦ୍ଧି ନ ଘଟାଉ ତେବେ ଦିନେ ନା ଦିନେ ଏହାର ବିସ୍ଫୋରଣ ଘଟିବ । ଏସବୁର ଅନେକ କାରଣ ରହିଛି, କିନ୍ତୁ ପ୍ରଥମ କାରଣଟି ହେଉଛି ଜଳର ଯଥାଯଥ ସୁପରିଚାଳନା । ଆମେ ସର୍ବଦା ବର୍ଷାଜଳର ଶତକଡ଼ା ୮୦ ଭାଗ ସମୁଦ୍ରକୁ ବୋହି ଯିବାକୁ ଦେଇପାରିବା ନାହିଁ । ଆମର ହେକ୍ଟର ପିଛା ସାର ବ୍ୟବହାର ଜାତୀୟ ହାରଠାରୁ ବହୁତ କମ୍ । ସେହିପରି ମଧ୍ୟ ଚାରା ଓ ବୃକ୍ଷ ସୁରକ୍ଷା ଦିଗରେ ଆମର ପଦକ୍ଷେପ ଓ ଯତ୍ନ ଅତି ନଗଣ୍ୟ ଏବଂ ଦୂରଦୂରାନ୍ତ ଓ ଆଦିବାସୀ ଅଞ୍ଚଳର ଚାଷୀମାନଙ୍କର ସଚେତନତା ଅଭାବରୁ ସେମାନେ କେବଳ ବର୍ଷା ଉପରେ ନିର୍ଭର କରି ଉଚ୍ଚ ଜମିରେ ମଧ୍ୟ ଧାନ ଚାଷ କରିଥାନ୍ତି । ସେମାନେ ଜଳ ଉପରେ କମ୍ ନିର୍ଭର କରୁଥିବା କିଛି ଅର୍ଥକରୀ ଫସଲ କରନ୍ତି ନାହିଁ । କୃଷି ପ୍ରତି ଆମର ମାନସିକତା ବଦଳିବା ଜରୁରୀ ଏବଂ ଦୀର୍ଘମିଆଦୀ ଓ ଦୂରଦୃଷ୍ଟି ସମ୍ପନ୍ନ ଯୋଜନା ମାଧ୍ୟମରେ ଉତ୍ପାଦନ

ବଢ଼ାଇବା ପାଇଁ ଆମେ ସର୍ବାନ୍ତକରଣରେ ପ୍ରୟାସ କରିବା ଆବଶ୍ୟକ । ପାଣିପଞ୍ଚାୟତ ଓ ଜଳଛାୟା ପ୍ରକଳ୍ପ କାର୍ଯ୍ୟକ୍ରମଗୁଡ଼ିକ ଏ ଦିଗରେ ସଠିକ୍ ଓ ସକାରାତ୍ମକ ପଦକ୍ଷେପ, ତଥାପି ମଣ୍ଡଳ ଓ ଗ୍ରାମପଞ୍ଚାୟତ ସ୍ତରରେ ନିଷ୍ଠାପର ଉଦ୍ୟମ ସହ ଜନସାଧାରଣଙ୍କର ପୂର୍ଣ୍ଣ ସହଯୋଗ ହିଁ ଏହାପାଇଁ ଅତ୍ୟନ୍ତ ଜରୁରୀ । ପଶ୍ଚିମ ଓଡ଼ିଶାରେ ଉଚ୍ଚ ଜମି ପାଇଁ ଅଗ୍ରାଧିକାର ଭିତ୍ତିରେ ଜଳ ସଂରକ୍ଷଣ କରାଯିବା ନିମନ୍ତେ ପଦକ୍ଷେପ ନିଆଯିବା ଜରୁରୀ ।

୬. ଏସବୁ ଆଲୋଚନାରୁ ଦୁଇଟି କ୍ଷେତ୍ର କଥା ମୋ' ମନକୁ ଆସୁଛି, ଯେଉଁଥିରେ କି ଓଡ଼ିଶା ଖୁବ୍ ଲାଭବାନ୍ ହୋଇପାରିବ : ବିଭିନ୍ନ କିସମର ଫସଲ ଚାଷ ଏବଂ ଔଷଧୀୟ ବୃକ୍ଷଲତା ଚାଷ । ଆମେ ସଦାସର୍ବଦା ଏମିତି ଏକ ପରସ୍ପର ବିରୋଧୀ ପରିସ୍ଥିତି ମଧ୍ୟରେ ରହିବା ଅନୁଚିତ ଯେଉଁଥିରେ କି ରାଜ୍ୟର ଅନେକ ଅଞ୍ଚଳରେ ବିଭିନ୍ନ କିସମର ଫସଲଚାଷ ନିମନ୍ତେ ପର୍ଯ୍ୟାପ୍ତ ସୁଯୋଗ ରହିଥିଲେ ମଧ୍ୟ ସେହି ସବୁ ଅଞ୍ଚଳରେ ଧାନର ଅଭାବୀ ବିକ୍ରି ଲାଗି ରହିଛି । ଆମର ସଂପ୍ରସାରଣ ଅଧିକାରୀ ଓ ପଞ୍ଚାୟତମାନେ ବିଭିନ୍ନ ପଦକ୍ଷେପ ଦ୍ୱାରା ତୈଳବୀଜ, ଡାଲିଜାତୀୟ ଫସଲ ଏବଂ ଅଧିକ ଉତ୍ପାଦନକ୍ଷମ ଫଳ ଓ ପନିପରିବା ଚାଷକୁ ପ୍ରୋତ୍ସାହିତ କରିବା ଦରକାର । ଓଡ଼ିଶାରେ ପ୍ରାୟ ୨୫୦ କିସମର ଔଷଧୀୟ ବୃକ୍ଷଲତା ଦେଖିବାକୁ ମିଳେ । ଆମର ପ୍ରିୟ ରାଷ୍ଟ୍ରପତି ଏସବୁ ଉପରେ ଯଥେଷ୍ଟ ଗୁରୁତ୍ୱ ଦେଉଛନ୍ତି ଏବଂ ନିକଟରେ ସମ୍ବଲପୁର ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବରେ ଯୋଗଦେବା ପାଇଁ ଆସିଥିବାବେଳେ ସେ ଏକ ଔଷଧୀୟ ବୃକ୍ଷ ବଗିଚାକୁ ଉଦ୍‌ଘାଟନ କରିଥିଲେ । ମୁଁ ନିଶ୍ଚିତ ଯେ ତାଙ୍କର ଏହି ପ୍ରତୀକାତ୍ମକ ପଦକ୍ଷେପ ଏ କ୍ଷେତ୍ରରେ ଥିବା ସମ୍ଭାବନା ପ୍ରତି ନୀତି ନିର୍ଦ୍ଧାରଣକାରୀ, ପ୍ରଶାସକ ଓ ଶିଳ୍ପପତିମାନଙ୍କ ସମେତ ଓଡ଼ିଶାର ଜନସାଧାରଣଙ୍କ ଆଖି ଖୋଲି ଦେବ । ଔଷଧୀୟ ବୃକ୍ଷ ଓ ସୁଗନ୍ଧିଯୁକ୍ତ ବୃକ୍ଷରାଜି କ୍ଷେତ୍ରର ବିଶ୍ୱ ବଜାରର ଶତକଡ଼ା ୪୦ ଭାଗ ଚୀନ ନିୟନ୍ତ୍ରଣାଧୀନ ହୋଇଥିବାବେଳେ ଏ କ୍ଷେତ୍ରରେ ଆମର ଅଂଶ ହେଉଛି ମାତ୍ର ଶତକଡ଼ା ୨ ଭାଗ । ଏ କ୍ଷେତ୍ରର ଗୁରୁତ୍ୱ ବୁଝିବା ଏବେ ଆମ୍ଭମାନଙ୍କ ପାଇଁ ନିତାନ୍ତ ଜରୁରୀ ଏବଂ ସମ୍ମିଳିତ ଉଦ୍ୟମ ଦ୍ୱାରା ଔଷଧୀୟ ବୃକ୍ଷଲତା ଉତ୍ପାଦନ କ୍ଷେତ୍ରରେ ଓଡ଼ିଶାକୁ ଆମେ ପ୍ରଥମ ସ୍ଥାନରେ ରଖିବା ଆବଶ୍ୟକ । ଏହା କେବଳ ନିଯୁକ୍ତି କ୍ଷେତ୍ରରେ ସୁଯୋଗର ଦ୍ୱାର ଉନ୍ମୁକ୍ତ କରିବ ନାହିଁ, ବରଂ ତତ୍‌ସହିତ ଶତାବ୍ଦୀ ଶତାବ୍ଦୀ ଧରି ଔଷଧୀୟ ବୃକ୍ଷରାଜିର ସଂରକ୍ଷଣ ଓ ସୁରକ୍ଷା କରି ଆସିଥିବା ଆମର ଆଦିବାସୀ ଭାଇଭଉଣୀମାନଙ୍କର ଅର୍ଥନୈତିକ ବିକାଶ ଘଟାଇବାରେ ସହାୟକ ହେବ ।

୭. ଅନ୍ୟ ଏକ କ୍ଷେତ୍ରପ୍ରତି ଦୃଷ୍ଟି ଦିଆଯିବା ଜରୁରୀ । ତାହା ହେଉଛି, ପଶୁସମ୍ପଦର ବିକାଶ ଓ ଗୋପାଳନ । କୃଷି କ୍ଷେତ୍ରର ଏକ ଅବିଚ୍ଛେଦ୍ୟ ଅଙ୍ଗ ହେଉଛି ପଶୁପାଳନ ଏବଂ ଗ୍ରାମାଞ୍ଚଳର ଅର୍ଥନୀତିର ସନ୍ତୁଳିତ ବିକାଶ କେବଳ ଏ କ୍ଷେତ୍ରର ଉନ୍ନତି ଦ୍ୱାରା ହିଁ ସମ୍ଭବ ହୋଇପାରିବ । ଆମର ପ୍ରଚୁର ଜଳ ଓ ସବୁଜିମା ରହିଛି । ଏହା ସତ୍ତ୍ୱେ ଆମେ ଅନ୍ୟ ରାଜ୍ୟରୁ ଅଣ୍ଡା, ମାଛ, କୁକୁଡ଼ା ଓ ଛେଳି/ମେଣ୍ଢା ଆମଦାନୀ କରିବା ମୋତେ ବ୍ୟଥିତ କରୁଛି । ଏ କ୍ଷେତ୍ରରେ କ୍ଷୁଦ୍ର ଓ ବୃହତ୍ ଘରୋଇ ପୁଞ୍ଜି ଲଗାଣକାରୀମାନେ ଆଗେଇ ଆସିଲେ ରାଜ୍ୟର ଦୂରଦୂରାନ୍ତ ଓ ଅଗମ୍ୟ ଅଞ୍ଚଳର ଅସହାୟ ଓ ଦୁର୍ବଳ ଶ୍ରେଣୀର ଲୋକମାନଙ୍କ ପାଇଁ ନିଯୁକ୍ତିର ପର୍ଯ୍ୟାପ୍ତ ସୁଯୋଗ ସୃଷ୍ଟି ହେବ ।

୮. ସୌଭାଗ୍ୟର କଥା ଯେ, ଓଡ଼ିଶାରେ କେନ୍ଦ୍ରୀୟ ମଧୁରଜଳ ମାଛ ଚାଷ ପ୍ରତିଷ୍ଠାନ (CIFA), କେନ୍ଦ୍ରୀୟ ଧାନ ଗବେଷଣା ପ୍ରତିଷ୍ଠାନ (CRRI), କେନ୍ଦ୍ରୀୟ ଉଦ୍ୟାନ ଗବେଷଣା ପ୍ରତିଷ୍ଠାନ (CHES), ନଡ଼ିଆ ଚାଷ ବିକାଶ ବୋର୍ଡ଼ (CDB) ଏବଂ କେନ୍ଦ୍ରୀୟ କୁକ୍କୁଟ ବିକାଶ ସଂଗଠନ (CPDO) ପରି ଜାତୀୟ ଅନୁଷ୍ଠାନମାନ ରହିଅଛି । କୃଷି, ଉଦ୍ୟାନ ଚାଷ, ମାଛ ଚାଷ ଏବଂ ପଶୁସମ୍ପଳ ବିକାଶ କ୍ଷେତ୍ରରେ ଆମର ଉତ୍ପାଦନ ବୃଦ୍ଧି କରିବାକୁ ହେଲେ ଏହିସବୁ ସଂଗଠନଗୁଡ଼ିକ ସହ ସମନ୍ୱୟ ରକ୍ଷା କରାଯାଇ ନୀତି ପ୍ରଣୟନ ହେବା ଦରକାର, ଯାହାକି ନିଶ୍ଚିତ ଭାବରେ ସକାରାତ୍ମକ ଫଳ ପ୍ରଦାନ କରିବ ।

୯. ସୂଚନା ପ୍ରଯୁକ୍ତି ବିଜ୍ଞାନ ଏବଂ ଜୈବ ପ୍ରଯୁକ୍ତି ବିଜ୍ଞାନ ପରି ନବ ବିକଶିତ କ୍ଷେତ୍ରରେ ପୁଞ୍ଜି ବିନିଯୋଗକୁ ଆକର୍ଷିତ ଓ ପ୍ରୋତ୍ସାହିତ କରିବା ପାଇଁ ଆମେ ପଛରେ ପଡ଼ିଯିବା ଉଚିତ ନୁହେଁ । ଶିକ୍ଷିତ ବେକାରମାନଙ୍କ ପାଇଁ ନିଯୁକ୍ତି ସୁଯୋଗ ସୃଷ୍ଟି କରିବା ଦିଗରେ ଏ କ୍ଷେତ୍ର ଦ୍ୱୟର ସାମର୍ଥ୍ୟ ରହିଛି । ରାଜ୍ୟ ସରକାର ସୂଚନା ପ୍ରଯୁକ୍ତି ବିଜ୍ଞାନ କ୍ଷେତ୍ରରେ ପୁଞ୍ଜି ଆକର୍ଷଣ କରିବା ପାଇଁ ପଦକ୍ଷେପ ସ୍ୱରୂପ ରାଜ୍ୟର ଶକ୍ତି ସାମର୍ଥ୍ୟ ଓ ସୁଯୋଗକୁ ବେଶ୍ ପ୍ରଚାରିତ କରିଛନ୍ତି ଅର୍ଥାତ୍ ଉଚ୍ଚମାନର କର୍ମ କ୍ଷେତ୍ର, ସୂଚନା ବିଜ୍ଞାନରେ ତାଲିମ ପ୍ରାପ୍ତ ମାନବସମ୍ବଳ, ବିଦ୍ୟୁତ୍ ଶକ୍ତି ଓ ଯୋଗାଯୋଗ ଇତ୍ୟାଦିର ସୁବିଧା ରହିଛି । ବିଦ୍ୟାଳୟମାନଙ୍କରେ କମ୍ପ୍ୟୁଟର ଶିକ୍ଷା ପ୍ରଦାନରୁ ସୁନିୟନ୍ତ୍ରିତ କରାଯିବା ଆବଶ୍ୟକ ଏବଂ ଗ୍ରାମାଞ୍ଚଳର ଛାତ୍ରମାନଙ୍କ ନିମନ୍ତେ କମ୍ପ୍ୟୁଟର ଶିକ୍ଷାକୁ ଆକର୍ଷଣୀୟ କରାଯିବା ଉଚିତ । ରାଜ୍ୟ ସରକାରଙ୍କର ସୂଚନା ପ୍ରଦାନ କିଓସ୍କ ପ୍ରତିଷ୍ଠା କରିବା କାର୍ଯ୍ୟକ୍ରମଟି ଯୁବକମାନଙ୍କୁ ନିଯୁକ୍ତି ଯୋଗାଇ ଦେବା ବ୍ୟତୀତ ବିକାଶ ସମ୍ପର୍କିତ ଗୁରୁତ୍ୱପୂର୍ଣ୍ଣ ସୂଚନା ଜନସାଧାରଣଙ୍କ ନିକଟରେ ପହଞ୍ଚାଇବା ପାଇଁ ବ୍ୟବହୃତ ହେବା ଉଚିତ । ଏତଦ୍‌ଭିନ୍ନ କୃଷି, ସାମୁଦ୍ରିକ ଓ ଔଷଧୀୟ ବୃକ୍ଷ ଚାଷ କ୍ଷେତ୍ରରେ ମଧ୍ୟ ଜୈବ ପ୍ରଯୁକ୍ତି ବିଜ୍ଞାନର ବିକାଶ ପାଇଁ ସୁଯୋଗ ରହିଛି ।

୧୦. ଆମ ଜନ ସଂଖ୍ୟାର ଅର୍ଦ୍ଧାଂଶ ମହିଳା ହେଉଥିବାରୁ ଏମାନଙ୍କୁ ସାମ୍ୟତା ଭିତ୍ତିରେ ସମସ୍ତ କ୍ଷେତ୍ରରେ ଅଂଶ ଗ୍ରହଣ କରିବାର ପୂର୍ଣ୍ଣ ସୁଯୋଗ ନ ଦିଆଗଲେ ସେମାନେ ଆଗେଇ ପାରିବେ ନାହିଁ । ଏ ଦିଗରେ ସ୍ୱୟଂ ସହାୟକ ଗୋଷ୍ଠୀ ଗଠନ ଏକ ଅଗ୍ରଣୀ ପଦକ୍ଷେପ । ରାଜ୍ୟରେ ମହିଳାମାନଙ୍କ ପାଇଁ ନୂତନ ଭାବେ ୮୩୯୩୯ ଗୋଟି ସ୍ୱୟଂ ସହାୟକ ଗୋଷ୍ଠୀ ଗଠନ କରାଯାଇଛି । ଏହାଦ୍ୱାରା ଗ୍ରାମାଞ୍ଚଳର ଦରିଦ୍ରମାନଙ୍କ ମଧ୍ୟରେ ସଞ୍ଚୟ ବୃଦ୍ଧି କରାଯାଇପାରିବ

ତଥା ଏଗୁଡ଼ିକରୁ କେତେକଙ୍କର ଋଣ ପାଇବାର ସୁଯୋଗ ରହିଛି ଓ ସେମାନଙ୍କ ମଧ୍ୟରୁ ଅଳ୍ପ ସଂଖ୍ୟକ ଅର୍ଥନୈତିକ କାର୍ଯ୍ୟକ୍ରମରେ ମଧ୍ୟ ନିୟୋଜିତ ଅଛନ୍ତି । ଯଦି ସ୍ୱୟଂ ସହାୟକ ଗୋଷ୍ଠୀଗୁଡ଼ିକୁ ଅଧିକରୁ ଅଧିକ ଅର୍ଥନୈତିକ କାର୍ଯ୍ୟକ୍ରମରେ ସମ୍ପୃକ୍ତ କରାଯାଏ ଓ ସେମାନଙ୍କ ଦ୍ୱାରା ପ୍ରସ୍ତୁତ ପଦାର୍ଥଗୁଡ଼ିକୁ ସଠିକ୍ ଭାବେ ବିପଣନର ବ୍ୟବସ୍ଥା କରାଯାଏ, ତେବେ ଏଗୁଡ଼ିକର ସ୍ଥିତି ସୁଦୃଢ଼ ହେବ ।

୧୧. ଗ୍ରାମ୍ୟ ବିକାଶର ପରିବର୍ତ୍ତିତ ଗତି ଏବଂ ଗ୍ରାମ୍ୟ ଜନତାଙ୍କର ପରିବର୍ଦ୍ଧିତ ଆବଶ୍ୟକତାକୁ ଦେଖିଲେ ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକୁ ସୁଦୃଢ଼ କରିବା ଜରୁରୀ । ଏପରିକି ସ୍ୱାଧୀନତାର ୫୭ ବର୍ଷ ପରେ ମଧ୍ୟ ଗ୍ରାମ୍ୟ ବିକାଶ ପାଇଁ ଗାନ୍ଧିଜୀଙ୍କ ଆହ୍ୱାନର ପ୍ରାସଙ୍ଗିକତା ରହିଛି । ଏହା ନୁହେଁ ଯେ କିଛି ପ୍ରଗତି ହୋଇନାହିଁ, କିନ୍ତୁ ଆମର ସଫଳତାର ବେଗ ଓ ପରିମାଣ ଆଶାନୁରୂପ ହୋଇନାହିଁ । ଗାନ୍ଧିଜୀଙ୍କ ଗ୍ରାମ୍ୟ ସ୍ୱରାଜର ସ୍ୱପ୍ନକୁ ସାକାର କରିବାକୁ ହେଲେ ଏହା ଏକାନ୍ତ ଜରୁରୀ ଯେ ଆମେ ପଞ୍ଚାୟତକୁ ସ୍ୱାୟତ୍ତ ଶାସନର ଗୋଟିଏ ଗୋଟିଏ ସ୍ୱୟଂ ସମ୍ପୂର୍ଣ୍ଣ ଇଲାକା ଭାବେ ଗଢ଼ି ତୋଳିବାକୁ ପଡ଼ିବ, ଯଦ୍ୱାରାକି କ୍ଷମତାର ବାସ୍ତବ ବିକେନ୍ଦ୍ରୀକରଣ ହୋଇପାରିବ ।

୧୨. ଆମ ଦେଶରେ ଉପଲବ୍ଧ ଥିବା ସମସ୍ତ ମାଧ୍ୟମମାନଙ୍କ ମଧ୍ୟରେ ବିକାଶ ପାଇଁ ଶିକ୍ଷାବୋଧ ହୁଏ ସବୁଠାରୁ ଶକ୍ତିଶାଳୀ ଆୟୁଧ । ଯଦିଓ ଏ କ୍ଷେତ୍ରରେ ଆମେ କିଛି ଅଗ୍ରଗତି କରିଛେ, ସାକ୍ଷରତା ହାର ବିଶେଷତଃ ଆଦିବାସୀ ଓ ଅଗମ୍ୟ ଅଞ୍ଚଳରେ ମହିଳାମାନଙ୍କର ସାକ୍ଷରତା ହାର ଅତି ନିରାଶଜନକ ଭାବେ କମ୍ । ଶିକ୍ଷାର ଯେଉଁ କେତେକ ଦିଗ ପ୍ରତି ଗୁରୁତର ସହ ଦୃଷ୍ଟି ଦିଆଯିବା ଉଚିତ, ସେଗୁଡ଼ିକ ହେଲା - ସ୍ଥାନୀୟ ସଂସ୍କୃତିକୁ ଯଥାଯଥ ଭାବେ ଗୁରୁତ୍ୱ ଦେଇ ଆଦିବାସୀମାନଙ୍କ ପାଇଁ ବିଦ୍ୟାଳୟ ପାଠ୍ୟକ୍ରମ ପୁନଃପ୍ରସ୍ତୁତ କରିବା, ସେମାନଙ୍କର ଆବଶ୍ୟକତା ଓ ଚାହିଦାର ପ୍ରାସଙ୍ଗିକତାକୁ ଦୃଷ୍ଟିରେ ରଖି ଶିକ୍ଷାଦାନ କରାଯିବା, ଦୂର ଅଗମ୍ୟ ଅଞ୍ଚଳରେ ଛାତ୍ରଛାତ୍ରୀମାନଙ୍କ ପାଇଁ ଗମନାଗମନର ସୁବିଧା ସହ ସହଜରେ ବିଦ୍ୟାଳୟ ଉପଲବ୍ଧ କରାଇବା, ବିଦ୍ୟାଳୟର ସମୟ ନିର୍ଘଣ୍ଟ ଏପରି ନିର୍ଦ୍ଧାରଣ କରାଯିବା ଆବଶ୍ୟକ ଯେ ପିଲାମାନେ ପାରିବାରିକ କାର୍ଯ୍ୟରେ ଭାଗନେଇ ପରିବାରର ଆୟବୃଦ୍ଧିରେ ସହାୟକ ହୋଇପାରିବେ ଏବଂ ସ୍ଥାନୀୟ ଶିକ୍ଷକମାନଙ୍କୁ ନିଯୁକ୍ତି ଦିଆଯିବା ଯଦ୍ୱାରାକି ବିଦ୍ୟାଳୟଗୁଡ଼ିକରେ ଶିକ୍ଷକମାନେ ଅନୁପସ୍ଥିତ ରହିବେ ନାହିଁ ଇତ୍ୟାଦି ଇତ୍ୟାଦି ।

୧୩. ଏବେ ଆମେ ଜଗତୀକରଣ ଅର୍ଥନୀତି ମଧ୍ୟ ଦେଇ ଗତି କରୁଛେ, ଯେଉଁଥିରେ କି ବିଶ୍ୱର ଯାହାକିଛି ସର୍ବୋତ୍ତମ ଓ ସର୍ବଶ୍ରେଷ୍ଠ, ସେସବୁ ସହ ଆମକୁ ପ୍ରତିଦ୍ୱନ୍ଦିତା କରିବାକୁ ପଡୁଛି । ଏହା ଆମ୍ଭମାନଙ୍କ ମଧ୍ୟରେ ଥିବା ସର୍ବୋତ୍ତମ ଓ ସର୍ବୋତ୍କୃଷ୍ଟ ବ୍ୟକ୍ତିକୁ ବିଶ୍ୱର ଅନ୍ୟତ୍ର ଥିବା ସର୍ବୋତ୍କୃଷ୍ଟ ବ୍ୟକ୍ତି ସହ ପ୍ରତିଦ୍ୱନ୍ଦିତା କରିବାର ସୁଯୋଗ ଦେଇଛି । ଏହା ବାସ୍ତବରେ ସତକୁ ସତ ସମ୍ଭବ ହେବ, ଯଦି ଆମେ ଶିକ୍ଷା କ୍ଷେତ୍ରରେ ବିଶେଷତଃ ଉଚ୍ଚଶିକ୍ଷା କ୍ଷେତ୍ରରେ ସର୍ବୋଚ୍ଚମାନ ବଜାୟ ରଖିପାରିବା । ଓଡ଼ିଶାରେ ମୋର ସାଢ଼େ ଚାରିବର୍ଷରୁ ଊର୍ଦ୍ଧ୍ୱ ରହଣୀକାଳ ମଧ୍ୟରେ ତଥା କେ.ବି.କେ. ଜିଲ୍ଲା ସମେତ ଅନ୍ୟାନ୍ୟ ଅଞ୍ଚଳରେ ଥିବା ବିଦ୍ୟାଳୟ / ମହାବିଦ୍ୟାଳୟଗୁଡ଼ିକୁ ନିୟମିତ ପରିଦର୍ଶନରେ ଯିବା ପରେ ମୋର ସ୍ୱୀକାର କରିବାରେ ଦ୍ୱିଧା ନାହିଁ ଯେ ଉଚ୍ଚଶିକ୍ଷାର ମାନ ବିଶେଷତଃ ବିଜ୍ଞାନ ଶିକ୍ଷାର ମାନ ଦେଶର ଅନ୍ୟ ପ୍ରାନ୍ତର ଶିକ୍ଷାରମାନ ସହ ସମକକ୍ଷ ନୁହେଁ । ଆମକୁ ସର୍ବୋଚ୍ଚ ଭାବେ ଉଚ୍ଚଶିକ୍ଷାର ମାନ ବଜାୟ ରଖିବାକୁ ପଡ଼ିବ ଯଦ୍ୱାରାକି ଏହାର ପ୍ରଭାବ ଶିକ୍ଷାର ବିଭିନ୍ନ ସ୍ତର ଉପରେ କ୍ରମଶଃ ପ୍ରତିଫଳିତ ହେବ । ଏ ଲକ୍ଷ୍ୟ ହାସଲ କରିବାକୁ ହେଲେ ଆମକୁ ପାଠ୍ୟକ୍ରମର ମାନ ସଦା ସର୍ବଦା ଉଚ୍ଚସ୍ତରକୁ ନେବାକୁ ପଡ଼ିବ ଏବଂ ଶିକ୍ଷକମାନଙ୍କୁ ସର୍ବାଧୁନିକ ଜ୍ଞାନକୌଶଳ ସମ୍ପର୍କରେ ତାଲିମ୍ ଦେବାକୁ ପଡ଼ିବ ।

୧୪. ରାଜ୍ୟର ସ୍ୱାସ୍ଥ୍ୟ କ୍ଷେତ୍ରର ଅବସ୍ଥା ଆମ ସମସ୍ତଙ୍କ ପାଇଁ ଚିନ୍ତାର କାରଣ । ଶିଶୁ ମୃତ୍ୟୁହାର ଏବଂ ମାତୃ ମୃତ୍ୟୁହାର ଯଥେଷ୍ଟ କମାଇବାକୁ ପଡ଼ିବ ଏବଂ ଏ କ୍ଷେତ୍ରରେ ଯେଉଁସବୁ ଯୋଜନା ଓ କାର୍ଯ୍ୟକ୍ରମଗୁଡ଼ିକ ହାତକୁ ନିଆଯାଇଛି, ସେସବୁକୁ ତ୍ୱରାନ୍ୱିତ କରିବାକୁ ପଡ଼ିବ । ଆଦିବାସୀ ଓ ଗ୍ରାମାଞ୍ଚଳରେ ସ୍ୱାସ୍ଥ୍ୟସେବା ଓ ଶିକ୍ଷା ବ୍ୟବସ୍ଥା ସୁଚାରୁ ରୂପେ ଯୋଗାଇ ଦେବା କ୍ଷେତ୍ରରେ ଏକ ପ୍ରଧାନ ପ୍ରତିବନ୍ଧକ ରହିଛି । ତାହା ହେଉଛି ସରକାରୀ କର୍ମଚାରୀମାନଙ୍କର ବିଶେଷତଃ ଶିକ୍ଷକ ଓ ଡାକ୍ତରମାନଙ୍କର କେ.ବି.କେ. ଜିଲ୍ଲା ତଥା ଅନ୍ୟ ଦୁର୍ଗମ ଅଞ୍ଚଳକୁ ଯିବାରେ ଅନିଚ୍ଛୁକତା ପ୍ରକାଶ କରିବା, ମୋର ପରାମର୍ଶ ଏହି ଯେ ଶିକ୍ଷକ ଓ ଡାକ୍ତରମାନଙ୍କୁ ନେଇ ଏକ ସ୍ୱତନ୍ତ୍ର କ୍ୟାଡ଼ର ପ୍ରସ୍ତୁତ କରିବା ଏବଂ ସେଭଳି କର୍ମଚାରୀଙ୍କୁ ତୁରନ୍ତ ପଦୋନ୍ନତି, ବର୍ଦ୍ଧିତ ଦରମା, ଉଚ୍ଚଶିକ୍ଷା କ୍ଷେତ୍ରରେ ସୁଯୋଗ ଓ ସେମାନଙ୍କର ମୂଳ ସ୍ଥାନକୁ ଫେରିବାର ସୁବନ୍ଦୋବସ୍ତ କରାଯିବା ଜରୁରୀ ।

୧୫. ହସ୍ତଶିଳ୍ପ, ହସ୍ତତନ୍ତ ଏବଂ ଅନ୍ୟାନ୍ୟ ଅନେକ କଳାରେ ଏ ରାଜ୍ୟ ଭରପୂର । କିନ୍ତୁ ଅଧିକାଂଶ କାରିଗର ଓ ଶିଳ୍ପୀ ଏବେ ବି ପୁରାତନ ପ୍ରଣାଳୀରେ କାର୍ଯ୍ୟ କରୁଛନ୍ତି ଏବଂ ଏହା ଦ୍ୱାରା ସେମାନଙ୍କର ନିଜର ତ କ୍ଷତି ହେଉଛି ଓ ଗ୍ରାମ୍ୟ ଅର୍ଥନୀତି ଉପରେ ଏହାର ପ୍ରତିକୂଳ ପ୍ରଭାବ ପଡୁଛି । ଫଳସ୍ୱରୂପ ସେମାନେ ଯାନ୍ତ୍ରିକ ଉପାୟରେ ଉତ୍ପାଦିତ ସାମଗ୍ରୀ ସହ ପ୍ରତିଦ୍ୱନ୍ଦିତା କରିବାରେ ବିଫଳ ହେଉଛନ୍ତି । ତେଣୁ ନୂତନ ଜ୍ଞାନକୌଶଳ ସହ ଆମର କାରିଗର ଓ ଶିଳ୍ପୀମାନଙ୍କୁ ପ୍ରସ୍ତୁତ କରାଇବାକୁ ପଡ଼ିବ ଏବଂ ସେମାନଙ୍କ ଦ୍ୱାରା ଉତ୍ପାଦିତ ସାମଗ୍ରୀ ପାଇଁ ଉପଯୁକ୍ତ ତାଲିମ୍ ଓ ଯଥାଯଥ ବିପଣନ ସୁବିଧା ଯୋଗାଇ ଦେବାକୁ ପଡ଼ିବ । ହଜାର ହଜାର ବର୍ଷ ଧରି ପରମ୍ପରାକ୍ରମେ ଗଢ଼ି ଆସୁଥିବା ଏହିସବୁ ସୂକ୍ଷ୍ମ ଧାରାକୁ ସଂରକ୍ଷଣ କରିବା ଓ ଏହାକୁ ବିଲୁପ୍ତିରୁ ରକ୍ଷା କରିବା

ପାଇଁ ପଦକ୍ଷେପ ନିଆଯିବା ଆବଶ୍ୟକ । ବଜାରରେ ଏସବୁ ପଦାର୍ଥଗୁଡ଼ିକୁ ଉପସ୍ଥାପନ କରିବା ଓ ପ୍ରତିଦ୍ୱନ୍ଦିତାମୂଳକ କରାଇବା କ୍ଷେତ୍ରରେ ସୂଚନା ପ୍ରଯୁକ୍ତି ବିଜ୍ଞାନ ମଧ୍ୟ ସହାୟକ ହୋଇପାରିବ ।

୧୬. ଓଡ଼ିଶାରେ ପର୍ଯ୍ୟଟନର ବିକାଶ ଓ ଅଭିବୃଦ୍ଧି ପାଇଁ ପର୍ଯ୍ୟାପ୍ତ କ୍ଷେତ୍ର ରହିଛି । ଏହାର ଗୁରୁତ୍ୱ ଲୋକମାନେ ହୃଦୟଙ୍ଗମ ନକରିବା ମୋତେ ଅନେକ ସମୟରେ ବିସ୍ମିତ କରିଥାଏ । ମାଲେସିଆ ଓ ଥାଇଲ୍ୟାଣ୍ଡ ପରି କ୍ଷୁଦ୍ର କ୍ଷୁଦ୍ର ଦେଶମାନେ ସେମାନଙ୍କ ଅର୍ଥନୀତିକୁ ବଞ୍ଚାଇ ରଖିବା ପାଇଁ ପର୍ଯ୍ୟଟନ କ୍ଷେତ୍ର ଉପରେ ଯଥେଷ୍ଟ ନିର୍ଭର କରିଥାନ୍ତି, ଅଥଚ ଆମର ଏଠି ସବୁକିଛି ଥିଲେ ମଧ୍ୟ ଆମେ ସେଥିରୁ ଫାଇଦା ଉଠାଇ ପାରୁନାହୁଁ । ଓଡ଼ିଶାରେ ଯେପରି ଜୈବ ବିବିଧତା ରହିଛି ତାହା ଇକୋଟୁରିଜିମ୍ ପାଇଁ ଏକ ସୁଦୃଢ଼ ଭିତ୍ତି ଯୋଗାଇ ଦେଇପାରିବ । ବୌଦ୍ଧ ଓ ଜୈନ କୀର୍ତ୍ତିରାଜି ଏବଂ କାରୁକାର୍ଯ୍ୟ ସମୃଦ୍ଧ ଆମର ସ୍ଥାପତ୍ୟ ବହୁ ଦେଶରୁ ପର୍ଯ୍ୟଟକମାନଙ୍କୁ ଆକର୍ଷିତ କରିବା ପାଇଁ ଯଥେଷ୍ଟ । ସୂଚନା ପ୍ରଯୁକ୍ତି ବିଜ୍ଞାନରେ ଅଗ୍ରଗତି ଏବଂ ଗମନାଗମନର ସୁବିଧା ଦ୍ୱାରା ଅତ୍ୟନ୍ତ ନିଭୃତ ଅଞ୍ଚଳରେ ଥିବା ପର୍ଯ୍ୟଟନସ୍ଥଳୀଗୁଡ଼ିକ ପ୍ରତି ପର୍ଯ୍ୟଟକମାନଙ୍କର ଦୃଷ୍ଟି ସହଜରେ ଆକର୍ଷଣ କରିହେବ । ଭୁବନେଶ୍ୱର ବିମାନବନ୍ଦର ରନ୍‌ୱେର ସଂପ୍ରସାରଣ ଦ୍ୱାରା ପର୍ଯ୍ୟଟନ କ୍ଷେତ୍ରର ଅଭିବୃଦ୍ଧି ଘଟିବ ଏବଂ ଆନ୍ତର୍ଜାତିକ ପର୍ଯ୍ୟଟକମାନେ ଏଠାକୁ ଆସିବା ପାଇଁ ଆକର୍ଷିତ ହେବେ ।

୧୭. ସରକାରଙ୍କର ନୀତି ଓ କାର୍ଯ୍ୟକ୍ରମଗୁଡ଼ିକର ରୂପାୟନ ଦାୟିତ୍ୱ ଏହାର କର୍ମଚାରୀମାନଙ୍କ ହାତରେ, ଯେଉଁମାନେ କି ପ୍ରତ୍ୟକ୍ଷ ଓ ଗୁରୁତ୍ୱପୂର୍ଣ୍ଣ ଭାବେ ଜନସାଧାରଣଙ୍କ ସଂସ୍ପର୍ଶରେ ଆସୁଛନ୍ତି । ସରକାରର ପ୍ରତ୍ୟେକ ସ୍ତରରେ ଥିବା ମୋର ସମସ୍ତ ସହକର୍ମୀମାନଙ୍କୁ ଏତିକି ନିବେଦନ କରିବି, ଆମେ ସର୍ବଦା ସ୍ମରଣ ରଖିବା ଉଚିତ ଯେ ଜନତା ହିଁ ଆମର ପ୍ରଭୁ ଏବଂ ଆମେ କେବଳ ନିଷ୍ଠା ଓ ଦାୟିତ୍ୱର ସହିତ ସେମାନଙ୍କର ସେବା କରିବା ପାଇଁ ବିଭିନ୍ନ ପଦପଦବୀରେ ରହିଛେ । ଯଦି ଏପରି ଏକ କର୍ମ ସଂସ୍କୃତି ବିକଶିତ ହେବ, ମୁଁ ନିଶ୍ଚିତ ଯେ ଓଡ଼ିଶା ଏକ ସମୃଦ୍ଧ - ଭବିଷ୍ୟତ ପଥରେ ଆଗେଇ ଯିବ ।

୧୮. ଏହା ମୋତେ ଶେଷରେ ଓଡ଼ିଶାର ଶିଳ୍ପ ସମ୍ପର୍କରେ କେଇପଦ କହିବାକୁ ଉଦ୍‌ପ୍ରେରିତ କରୁଛି । ଅବଶ୍ୟ ଏଥିରେ ବିସ୍ମିତ ହେବାର କିଛି ନାହିଁ ଯେ ଯେଉଁ ଶିଳ୍ପ ବିପ୍ଳବର ହାଓ୍ୱା ୟୁରୋପ ଏବଂ ଆମେରିକାରେ ପ୍ରବାହିତ ହୋଇଥିଲା ଭାରତ ତାହାର ସୁଯୋଗ ନେଇପାରି ନଥିଲା, କାରଣ ଭାରତ ସେତେବେଳେ ଇଂରେଜ ଶାସନାଧୀନ ଥିଲା । ଯାହା ଜଣାପଡୁଛି ଠିକ୍ ଏକାଭଳି ଓଡ଼ିଶା ଖଣିଜ ସମ୍ପଦରେ ମୂଲ୍ୟ ଯୋଗ କରିବା ଏବଂ ଆମର ପର୍ଯ୍ୟାପ୍ତ ଜଳ ଓ କୋଇଲା ସମ୍ପଦର ସୁବିନିଯୋଗ କରିବା କ୍ଷେତ୍ରରେ ଥିବା ସମସ୍ତ ସୁଯୋଗ ମଧ୍ୟ ହରାଇବ । ପ୍ରଚୁର ଓ ବିଭିନ୍ନ ପ୍ରକାରର ଖଣିଜ ସମ୍ପଦ ଥାଇ ମଧ୍ୟ କାହିଁକି ଯେ ଓଡ଼ିଶା ପରି ଏକ ରାଜ୍ୟ ପୁଞ୍ଜିନିବେଶକାରୀମାନଙ୍କୁ ଆକୃଷ୍ଟ କରିପାରୁ ନାହିଁ, ତାହା ଏବେ ମଧ୍ୟ ମୋ ପାଇଁ ଏକ ରହସ୍ୟମୟ ପ୍ରଶ୍ନବାଚୀ ହୋଇ ରହିଛି । ଆମର ଲୁହାପଥର, ବକ୍ସାଇଟ୍, କ୍ରୋମ୍, ମାଙ୍ଗାନିଜ ଏବଂ କୋଇଲା ଅଛି, ତଥାପି ପୁଞ୍ଜି ନିବେଶକାରୀମାନେ ଆମ ନିକଟରୁ ଦୂରେଇ ଯାଇଛନ୍ତି । ଏହାର କାରଣ ସତରେ କ'ଣ ହୋଇପାରେ ? ଅବଶ୍ୟ ଏ ଅବସରରେ କାହାପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିବା ଅନୁଚିତ, କିନ୍ତୁ ମୁଁ ଏଠାରେ କହିବାକୁ ଚାହେଁ ଯେ ଓଡ଼ିଶା ମିଳିଥିବା ସୁଯୋଗର ସଦୁପଯୋଗ କରିପାରି ନାହିଁ ଏବଂ ଆମଠାରୁ ସ୍ୱଳ୍ପ ଖଣିଜ ସମ୍ପଦ ଥିବା ରାଜ୍ୟମାନେ ଆମକୁ ଅତିକ୍ରମ କରି ଆଗେଇ ଯାଇଛନ୍ତି । ଯାହାହେଉ ଏବେବି ସମୟ ଅତିକ୍ରାନ୍ତ ହୋଇନାହିଁ । ଆଜିର ଏ ପବିତ୍ର ଦିବସରେ ମୁଁ ସମସ୍ତଙ୍କୁ ଆହ୍ୱାନ କରୁଛି ଯେ ଆସନ୍ତୁ ସମସ୍ତେ ଏକାଠି ହେବା ଏବଂ ବାସ୍ତବବାଦୀ ଓ ଯଥୋଚିତ ଯୋଜନା ତଥା ପୁଞ୍ଜି ବିନିଯୋଗକାରୀମାନଙ୍କ ପାଇଁ ଏକ ବନ୍ଧୁତ୍ୱପୂର୍ଣ୍ଣ ବାତାବରଣ ସୃଷ୍ଟି କରିବା ଦ୍ୱାରା ଓଡ଼ିଶାକୁ ଏକ ଶିଳ୍ପ ସମୃଦ୍ଧ ରାଜ୍ୟରେ ପରିଣତ କରିବା । ମୁଁ ସର୍ବଦା ଜଣେ ଆଶାବାଦୀ ଏବଂ ମୁଁ ଦୃଢ଼ ଭାବରେ ବିଶ୍ୱାସ କରେ ଯେ ଯଦି ଏହି ରାଜ୍ୟର ଜନସାଧାରଣ ସଂକଳ୍ପବଦ୍ଧ ହେବେ, ତେବେ ୨୦୨୦ ମସିହା ସୁଦ୍ଧା ସେମାନେ ନିଶ୍ଚିତ ଭାବରେ ଓଡ଼ିଶାକୁ ଏକ ବିକଶିତ ରାଜ୍ୟରେ ପରିଣତ କରିପାରିବେ । ଏହା ହିଁ ଆଜି ଦିନରେ ଆମ ସମସ୍ତଙ୍କର ଶପଥ ହେଉ ।

ଜୟହିନ୍ଦ୍



# ୫୮ତମ ସ୍ୱାଧୀନତା ଦିବସ ଅବସରରେ ଓଡ଼ିଶାବାସୀଙ୍କୁ ମାନ୍ୟବର ମୁଖ୍ୟମନ୍ତ୍ରୀ **ଶ୍ରୀ ନବୀନ ପଟ୍ଟନାୟକଙ୍କ** ବାର୍ତ୍ତା

ପ୍ରିୟ ଭାଇ ଓ ଭଉଣୀମାନେ,

ପବିତ୍ର ସ୍ୱାଧୀନତା ଦିବସ ପାଳନ ଅବସରରେ ଆପଣମାନଙ୍କୁ ମୋର ଆନ୍ତରିକ ଶୁଭେଚ୍ଛା ଓ ଅଭିନନ୍ଦନ ଜଣାଉଛି ।

ସ୍ୱାଧୀନତା ଦିବସ ଆମ ସମସ୍ତଙ୍କ ପାଇଁ ଏକ ମହାନ୍ ଦିବସ । ଏହି ଦିନ ଆମ ଦେଶ ବ୍ରିଟିଶ ଶାସନରୁ ମୁକ୍ତ ହୋଇଥିଲା । ସ୍ୱାଧୀନତା ହାସଲ ପାଇଁ ଆମର ଅନେକ ଦେଶପ୍ରେମୀ ଶହୀଦ ହୋଇଛନ୍ତି । ମୁଁ ସେମାନଙ୍କ ପ୍ରତି ମୋର ଗଭୀର ଶ୍ରଦ୍ଧାଞ୍ଜଳି ଜଣାଉଛି ।

ସ୍ୱାଧୀନତା ପରେ ଆମ ଦେଶର ଗଣତନ୍ତ୍ର ମଜବୁତ୍ ହୋଇଛି । ଆମ ଦେଶ ବିଭିନ୍ନ କ୍ଷେତ୍ରରେ ପ୍ରଗତି କରିଛି । ଓଡ଼ିଶାକୁ ଉପରକୁ ଉଠାଇବା ପାଇଁ ଉଦ୍ୟମ ଜାରି ରହିଛି ।

ଆପଣମାନଙ୍କ ଆଶୀର୍ବାଦ ମୋ ସରକାର ଚାରି ବର୍ଷ ଧରି ଓଡ଼ିଶାର ଜନସାଧାରଣଙ୍କ ସେବା କରିଛି । ଆପଣମାନେ ପୁଣି ଥରେ ଆମକୁ ଏହି ସେବା ପାଇଁ ସୁଯୋଗ ଦେଇଛନ୍ତି । ସେଥିପାଇଁ ଆମେ ଆପଣମାନଙ୍କଠାରେ ଋଣୀ ।

ଓଡ଼ିଶାର ଉନ୍ନତି ମୋର ଏକମାତ୍ର ଲକ୍ଷ୍ୟ । ଓଡ଼ିଶାର ଗରିବ ଲୋକ, ଚାଷୀ, ମୂଲିଆ, ଆଦିବାସୀ, ହରିଜନ ଓ ମହିଳାମାନଙ୍କୁ ଉପରକୁ ଉଠାଇବା ପାଇଁ ଆମେ ଅନେକ କାର୍ଯ୍ୟକ୍ରମ ଗ୍ରହଣ କରିଛୁ । କୃଷି, ଶିଳ୍ପ, ଗ୍ରାମାଞ୍ଚଳର ଉନ୍ନତି, ଜଳସେଚନ, ସ୍ୱାସ୍ଥ୍ୟ, ଶିକ୍ଷା ଆଦି ବିଭିନ୍ନ କ୍ଷେତ୍ରରେ ନୂଆ କାର୍ଯ୍ୟକ୍ରମ ଦ୍ୱାରା ବିକାଶର ଧାରା ଜାରି ରହିଛି ।

ଓଡ଼ିଶାରେ ପ୍ରଚୁର ସମ୍ପଦ ଭରି ରହିଛି । ଏହି ସମ୍ପଦକୁ ବ୍ୟବହାର କରି ନିଯୁକ୍ତି ସୃଷ୍ଟି କରିବା ଓ ମୁଣ୍ଡପିଛା ରୋଜଗାର ବଢ଼ାଇବାକୁ ଆମେ ଉଦ୍ୟମ କରୁଛୁ । ଇସ୍ପାତ, ଆଲୁମିନିୟମ୍, ଶକ୍ତି ଆଦି ବିଭିନ୍ନ କ୍ଷେତ୍ରରେ ଅନେକ ନୂଆ ପ୍ରକଳ୍ପ ପ୍ରତିଷ୍ଠା ହେବାକୁ ଯାଉଛି । ଆମ ରାଜ୍ୟରେ ୪୫,୦୦୦ କୋଟି ଟଙ୍କାରୁ ବେଶି ପରିମାଣର ଘରୋଇ ପୁଞ୍ଜି ଲଗାଣ ପାଇଁ ସୁଯୋଗ ସୃଷ୍ଟି ହୋଇଛି । ଓଡ଼ିଶା ଶିଳ୍ପ ବିକାଶର କେନ୍ଦ୍ର ଭାବରେ ଗଢ଼ି ଉଠୁଛି । ଏହାଦ୍ୱାରା ରାଜ୍ୟର ସମ୍ବଳ ଓ ନିଯୁକ୍ତି ସୁଯୋଗ ବୃଦ୍ଧି ପାଇଛି ।

ବ୍ଲକ୍, ତହସିଲ ଓ ଥାନାଗୁଡ଼ିକୁ ଅଧିକ କ୍ରିୟାଶୀଳ ଓ ଲୋକାଭିମୁଖୀ କରାଯିବ । ଏହି ସବୁ ଅଫିସର କାର୍ଯ୍ୟଧାରାରେ ଉନ୍ନତି ଆଣିବା ପାଇଁ ଏକ ପ୍ରତିଷ୍ଠିତ ଅନୁଷ୍ଠାନ ଦ୍ୱାରା ଅନୁଧ୍ୟାନ କରାଯିବ ।

ଆମ ରାଜ୍ୟର ଲୋକେ ଚାଷ ଉପରେ ନିର୍ଭର କରନ୍ତି । କୃଷି ଓ ଜଳସେଚନର ଉନ୍ନତି ଉପରେ ଆମେ ଜୋର୍ ଦେଇଛୁ । ଆଗାମୀ ଦିନରେ ଚାଷ ଓ ଚାଷୀର ଉନ୍ନତି ଓ ଜଳସେଚନର ବିକାଶ ଉପରେ ଆମେ ବେଶି ଜୋର୍ ଦେବୁ । ଆମ ରାଜ୍ୟର ଶିକ୍ଷିତ ଯୁବକ ଓ ଯୁବତୀଙ୍କୁ ରୋଜଗାର ଯୋଗାଇ ଦେବା ଉପରେ ମୁଁ ସବୁବେଳେ ଗୁରୁତ୍ୱ ଦେଇଛି । ସେଥିପାଇଁ ଆମେ ଆତ୍ମନିଯୁକ୍ତି କାର୍ଯ୍ୟକ୍ରମ ଆରମ୍ଭ କରିଛୁ । ଏହି କାର୍ଯ୍ୟକ୍ରମକୁ ଆହୁରି ଅଧିକ ଆଗେଇ ନେଇ ବିପୁଳ ଆତ୍ମନିଯୁକ୍ତି ସୁଯୋଗ ସୃଷ୍ଟି କରାଯିବ ।

ଏକ ସମୃଦ୍ଧ ଓଡ଼ିଶା ଗଠନ ପାଇଁ ଆସନ୍ତୁ, ଆଜି ଏ ପବିତ୍ର ଦିବସରେ ଆମେ ଆଉ ଥରେ ସଂକଳ୍ପ ନେବା ।

ଜୟହିନ୍ଦ୍



# ୫୮ତମ ସ୍ୱାଧୀନତା ଦିବସ ଅବସରରେ
# ମାନ୍ୟବର ସୂଚନା ଓ ଲୋକ ସଂପର୍କ ମନ୍ତ୍ରୀ
# ଶ୍ରୀ ଦେବାଶିଷ ନାୟକଙ୍କ
# ବାର୍ତ୍ତା

୫୮ତମ ସ୍ୱାଧୀନତା ଦିବସ ଉପଲକ୍ଷେ ଓଡ଼ିଶାବାସୀ ପ୍ରିୟ ଭାଇ ଓ ଭଉଣୀମାନଙ୍କୁ ମୁଁ ଆନ୍ତରିକ ଅଭିନନ୍ଦନ ଓ ଶୁଭେଚ୍ଛା ଜଣାଉଛି ।

ସ୍ୱାଧୀନ ଭାରତର ଜନ୍ମ ତିଥି ଅଗଷ୍ଟ **୧୫** ତାରିଖ । କେବଳ ଭାରତବାସୀଙ୍କ ପାଇଁ ନୁହେଁ, ସମଗ୍ର ବିଶ୍ୱ ପକ୍ଷେ ଏହା ଏକ ସ୍ମରଣୀୟ ଦିବସ । ଦୀର୍ଘ ବର୍ଷର ପରାଧୀନତା ପରେ ବିଦେଶୀ ଶାସନର ଶୃଙ୍ଖଳ ଛିନ୍ନ କରି **୧୯୪୭** ମସିହାର ଏହି ପବିତ୍ର ଦିନରେ ଦେଶ ସ୍ୱାଧୀନ ହୋଇଥିଲା । ଦେଶବାସୀଙ୍କ ଅସୀମ ତ୍ୟାଗ, ନିଷ୍ଠାପର ଉଦ୍ୟମ ତଥା ଐକାନ୍ତିକ ପ୍ରଚେଷ୍ଟା ଫଳରେ ସ୍ୱାଧୀନତା ପ୍ରାପ୍ତି ସମ୍ଭବ ହୋଇଥିଲା । ଜାତୀୟ ଆନ୍ଦୋଳନର କର୍ଣ୍ଣଧାର ଜାତିର ଜନକ ମହାତ୍ମା ଗାନ୍ଧୀ ସତ୍ୟ ଓ ଅହିଂସା ମାର୍ଗ ଅନୁସରଣ କରିବାକୁ ଆମକୁ ଉଦ୍‌ବୁଦ୍ଧ କରିଥିଲେ । ତାଙ୍କ ପ୍ରତି ଆମେ ପ୍ରତିମୁହୂର୍ତ୍ତରେ ଆମର ଭକ୍ତିପୂତ ପ୍ରଣତି ଜ୍ଞାପନ କରିବା ଉଚିତ । ଦେଶର ସ୍ୱାଧୀନତା ସଂଗ୍ରାମରେ ଉତ୍କଳମଣି ଗୋପବନ୍ଧୁ ଦାସ, ଆଚାର୍ଯ୍ୟ ହରିହର ଦାସ, ଶ୍ରୀମତୀ ରମାଦେବୀ, ଶହୀଦ ଲକ୍ଷ୍ମଣ ନାୟକ ପ୍ରମୁଖ ଓଡ଼ିଶାର ବିଶିଷ୍ଟ ନେତୃବୃନ୍ଦଙ୍କର ମହାନ୍ ଅବଦାନ ଆମର ଯାତ୍ରାପଥକୁ ସବୁବେଳେ ଆଲୋକମୟ କରି ଆମକୁ ଦିଗ୍‌ଦର୍ଶନ ଦେବ । ସେହି ମହାନ ଆତ୍ମାଙ୍କ ପ୍ରତି ଆମେ ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିବା ଆବଶ୍ୟକ । ଜାତୀୟ ଆନ୍ଦୋଳନର ସେହିସବୁ ମହାନ ନେତୃବୃନ୍ଦଙ୍କ ପ୍ରତି ଏ ଜାତି ଚିର କୃତଜ୍ଞ ।

ସ୍ୱର୍ଣ୍ଣପ୍ରସୂ ଭାରତବର୍ଷ - ମହାନ ଐତିହ୍ୟ ଓ ପରମ୍ପରା ଏ ଜାତିକୁ ସର୍ବଦା ଉଦ୍‌ବୁଦ୍ଧ କରିଆସିଛି । ଏହାର ପ୍ରତି ଧୂଳିକଣା ଆମ ପାଇଁ ପବିତ୍ର । ଭାରତ ମାଟିରେ ଜନ୍ମ ଗ୍ରହଣ କରି ପ୍ରତ୍ୟେକ ଭାରତବାସୀ ଏହି ଗର୍ବ ଓ ଗୌରବର ଅଧିକାରୀ ।

ଆଜି ପବିତ୍ର ସ୍ୱାଧୀନତା ଦିବସ ପାଳନ ଅବସରରେ ରାଜ୍ୟର ଭାଇ ଓ ଭଉଣୀମାନଙ୍କୁ ନିବେଦନ, ଆସନ୍ତୁ, ସମସ୍ତେ ସାମିଲ ହୋଇ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ନେତୃତ୍ୱରେ ଓଡ଼ିଶାର ପ୍ରଗତିର ରଥକୁ ଆଗେଇ ନେବା ।

ଜୟହିନ୍ଦ୍